

# ଉତ୍କଳ ପ୍ରସଙ୍ଗ

ମଇ-ଜୁନ୍, ୧୯୯୭



ଭୁବନେଶ୍ୱର ଶ୍ରୀଜିଲ୍—ଶ୍ରୀ ପ୍ରଦର୍ଶନୀ ପଡ଼ିଆଠାରେ ଆୟୋଜିତ ଜାତୀୟଗୋଷ୍ଠୀ ଉତ୍କଳ ଦିବସ ପାଳନ ଉତ୍ସବକୁ ମହାମହିମ ରାଜ୍ୟପାଳ ଶ୍ରୀ ଗୋପାଳ ରାମାନୁଜମ୍ ଉଦ୍‌ଘାଟନ କରୁଛନ୍ତି । ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଉପସ୍ଥିତ ଅଛନ୍ତି



ଖୋର୍ଦ୍ଧା ଜିଲ୍ଲାର ବେଗୁନିଆଠାରେ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଯୁବକ ଓ ଲୋକସମ୍ପର୍କ ବିଭାଗର ଯୁବକ କେନ୍ଦ୍ର ଏକ ପାଠାଗାର ଉଦ୍‌ଘାଟନ କରୁଛନ୍ତି । ଲୋକସମ୍ପର୍କ ବିଭାଗ ମନ୍ତ୍ରୀ ଶ୍ରୀ ଜେତ୍ରାନନ୍ଦ ମଲ୍ଲିକ ଉପସ୍ଥିତ ଅଛନ୍ତି

# ଉତ୍କଳ ପ୍ରସଙ୍ଗ

୫୩ ଭାଗ ୧୦/୧୧ ସଂଖ୍ୟା ଜ୍ୟେଷ୍ଠ-ଆଷାଢ଼ ୧୯୧୯ ଶକାବ୍ଦ ମେ-ଜୁନ ୧୯୯୭



"ଉତ୍କଳ ପ୍ରସଙ୍ଗ" ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗ ତରଫରୁ ପ୍ରକାଶ ପାଉଥିଲେ ସୁଦ୍ଧା ଏହି ପତ୍ରିକାରେ ପ୍ରକାଶିତ ମତାମତ ଓ ଚିନ୍ତାଧାରା ସବୁ ସ୍ଥଳରେ ଓଡ଼ିଶା ସରକାରଙ୍କର ବୋଲି ବୁଝିବାକୁ ହେବ ନାହିଁ ।

ଓଡ଼ିଶା ସରକାରଙ୍କର ସୂଚନା ଓ ଲୋକ ସମ୍ପର୍କ ବିଭାଗ ଦ୍ୱାରା ପ୍ରକାଶିତ ଏବଂ ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ - ୧୦ ରେ ମୁଦ୍ରିତ ।

**ବାର୍ଷିକ ଦେୟ : ଟ ୨୦.୦୦**

**ପ୍ରତିଖଣ୍ଡ : ଟ ୨.୦୦**

# ସୂଚୀ

# ଅସାଧାରଣ ବ୍ୟକ୍ତିତ୍ୱ

ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ

ଆମର ସଂସ୍କୃତିରେ ଦିବଙ୍ଗତ ଆତ୍ମାପ୍ରତି ଶ୍ରଦ୍ଧାଞ୍ଜଳି ଜ୍ଞାପନ କରାଯାଏ । ବିଜୁବାବୁ ଓଡ଼ିଶାର ଜନସାଧାରଣଙ୍କର ହୃଦୟ ମଧ୍ୟରେ ଥିଲେ । ସଂସ୍କୃତିରେ ଅଛିଯେ, ଯେଉଁ ଆତ୍ମୀୟ ସ୍ୱଜନଙ୍କୁ ଦୀପଦାନ ଦିଆଯାଏ, ସେମାନଙ୍କୁ ବଡ଼ବଡ଼ିଆ ବୋଲି କୁହାଯାଏ । ଦିବଙ୍ଗତ ନେତା ହେଉଛନ୍ତି ଏ ଜାତିର ବଡ଼ବଡ଼ିଆ ।

ବିଜୁବାବୁ ଥିଲେ ଏକ ଅସାଧାରଣ ବ୍ୟକ୍ତିତ୍ୱ । ସାଧାରଣ କ୍ଷେତ୍ରରେ ଥିଲେ ମଧ୍ୟ ତାଙ୍କର ଅସାଧାରଣତ୍ୱ ସବୁବେଳେ ପ୍ରକଟିତ ହେଉଥିଲା । ଛାତ୍ର ଥିଲେ କିନ୍ତୁ ସବୁବେଳେ ଏଡ଼ ଅନାଗତର ଅନ୍ୱେଷଣରେ ତାଙ୍କର ପ୍ରାଣ ବ୍ୟାକୁଳ ହେଉଥିଲା । ଯେତେବେଳେ ବୈମାନିକ ହେଲେ, ପୃଥିବୀର ବହୁ ଦେଶକୁ ଯାତ୍ରା କରିଛନ୍ତି । ବହୁ ଅଜଣା ସ୍ଥାନରେ ଓହ୍ଲେଇଛନ୍ତି । ଓଡ଼ିଶାରେ ସ୍କୁଲପଡ଼ିଆଠାରୁ ଆରମ୍ଭ କରି ଇଣ୍ଡୋନେସିଆର ନିଷିଦ୍ଧ ବିମାନବନ୍ଦରରେ ସେ ଓହ୍ଲେଇଛନ୍ତି । ସେ ଦୁଇଟି ସ୍ୱାଧୀନତା ସଂଗ୍ରାମରେ ନିଜକୁ ଝାସ ଦେଇଥିଲେ । ଭାରତବର୍ଷର ସ୍ୱାଧୀନତା ସଂଗ୍ରାମ ଏବଂ ଇଣ୍ଡୋନେସିଆର ସ୍ୱାଧୀନତା ସଂଗ୍ରାମ । ଯେତେବେଳେ ସାଧାରଣ କ୍ଷେତ୍ରକୁ ଆସିଲେ, ସେତେବେଳେ ସାଧାରଣ ଏମ୍.ଏଲ୍.ଏ. ଥିଲେ ମଧ୍ୟ ତାଙ୍କର କଥାରେ, ବକ୍ତୃତାରେ, କାର୍ଯ୍ୟରେ ସବୁବେଳେ ଏକ ନୂତନତ୍ୱ ଥିଲା । ଶିଳ୍ପପତି ହୋଇଥିଲେ, କିନ୍ତୁ ଏ ଶିଳ୍ପର ଲାଭରେ ସେ ଆନ୍ତର୍ଜାତିକ ଅନୁଷ୍ଠାନ ପ୍ରତିଷ୍ଠା କଲେ ? ବିଜ୍ଞାନର ଉନ୍ନତି ପାଇଁ, କଳିଙ୍ଗ ପୁରସ୍କାର ପ୍ରବର୍ତ୍ତନ କଲେ । ପୃଥିବୀର କେତେଜଣ ଶିଳ୍ପପତି ଏପରି ଏକ ଅନୁଷ୍ଠାନ ପ୍ରତିଷ୍ଠା କରିଛନ୍ତି । ଯେତେଦିନ ପର୍ଯ୍ୟନ୍ତ ପୁରସ୍କାର ଅଛି ସେତେଦିନ ପର୍ଯ୍ୟନ୍ତ ବିଜୁପଟ୍ଟନାୟକ ଅଛନ୍ତି ଏବଂ କଳିଙ୍ଗ ରହିଛି । ଯେତେବେଳେ ସେ ମୁଖ୍ୟମନ୍ତ୍ରୀ ହୋଇଛନ୍ତି, କେନ୍ଦ୍ରମନ୍ତ୍ରୀ ହୋଇଛନ୍ତି ସେତେବେଳେ ଯେଉଁସବୁ କାର୍ଯ୍ୟ ସେ କରିଯାଇଛନ୍ତି, ସେଥିପାଇଁ ସେ ଅବିସ୍ମରଣୀୟ ହୋଇ ରହିବେ ।

ଆଜି ଯେତେବେଳେ ଆମେ ତାଙ୍କୁ ସ୍ମରଣ କରୁଛେ ସେତେବେଳେ କଳିଙ୍ଗର ଜଣେ ବୀର ସନ୍ତାନ ପ୍ରତି ଆମ ହୃଦୟର ଶ୍ରଦ୍ଧାଞ୍ଜଳି ଜ୍ଞାପନ କରୁଛେ । ସେ ଓଡ଼ିଶାକୁ ଅତ୍ୟନ୍ତ ଭଲପାଉଥିଲେ । ତେଣୁ ଓଡ଼ିଶାକୁ କଳିଙ୍ଗ ନାମରେ ଡାକିବାକୁ ତାଙ୍କୁ ଭଲ ଲାଗୁଥିଲା । କାରଣ କଳିଙ୍ଗ ଥିଲା ଓଡ଼ିଶାର ଗୌରବମୟ ନାମ । ଇତିହାସରେ, ପୁରାଣରେ କଳିଙ୍ଗ ପ୍ରସିଦ୍ଧି ଲାଭ କରିଥିଲା ତାର ସାହସିକତା ପାଇଁ । ତାର ବୀରତ୍ୱ ପାଇଁ, ଭାରତୀୟ ନୌଯାତ୍ରାରେ ଯେଉଁ କଳିଙ୍ଗ ପ୍ରଥମସ୍ଥାନ ଅଧିକାର କରିଥିଲା, ସେହି କଳିଙ୍ଗର ନାମ ତାଙ୍କୁ ଆକୃଷ୍ଟ କରିଥିଲା । ହଜାର ହଜାର ବର୍ଷର ବ୍ୟବଧାନରେ ସେ ସେହି କଳିଙ୍ଗର ସ୍ୱରୂପକୁ ଦେଖି ପାରୁଥିଲେ । ସେଥିପାଇଁ ସେ ଓଡ଼ିଶାକୁ କଳିଙ୍ଗ ନାମରେ ଡାକୁଥିଲେ ଏବଂ ଏଥିପାଇଁ ସେ ତାଙ୍କର ସମସ୍ତ ଜୀବନ ଉତ୍ସର୍ଗ କରିଥିଲେ । ସେ ବୁଝିଥିଲେ ଯେ କଳିଙ୍ଗର ଗୌରବ ପୁନରୁଦ୍ଧାର କରିବାକୁ ହେଲେ କୌଣସି ନେତାର ନେତୃତ୍ୱ ଓଡ଼ିଶାର କ୍ଷେତ୍ରରେ ସୀମାବଦ୍ଧ ରହିବା ଉଚିତ ନୁହେଁ । ସେଥିପାଇଁ ଭାରତୀୟ କ୍ଷେତ୍ରରେ ସେ ତାଙ୍କର କର୍ମ କ୍ଷେତ୍ରକୁ ବିସ୍ତାରିତ କରିଥିଲେ । ଓଡ଼ିଶାରେ ପାରାଦୀପ ବନ୍ଦର, ମିଗ୍ କାରଖାନା, ଏକ୍ସପ୍ରେସ ହାଇୱେ ଅତିକ୍ରାନ୍ତ ଥିଲା ଏକ ସମୟରେ । ଯେତେବେଳେ ସେ ଏସବୁ କଲେ ସେତେବେଳେ ଭାରତବର୍ଷର ନେତୃତ୍ୱ ସାଙ୍ଗରେ ସେ ତାଙ୍କର ଅବିଚ୍ଛେଦ୍ୟ ସମ୍ପର୍କ ଓ ଅନନ୍ୟ ବିଶ୍ୱାସ ସ୍ଥାପନ କରିଥିଲେ । ପଣ୍ଡିତ ଜବାହରଲାଲ ନେହେରୁଙ୍କର ତାଙ୍କ ପ୍ରତି ଯେଉଁ ବିଶ୍ୱାସ ଥିଲା, ଯେଉଁ ଆଶୀର୍ବାଦ ଥିଲା, ସେହି ଆଶୀର୍ବାଦର ସଂପୂର୍ଣ୍ଣ ଉପଯୋଗ କରି ଓଡ଼ିଶାର ସର୍ବବିଧ ଉନ୍ନତି ପାଇଁ ସେ ନିଜକୁ ନିୟୋଜିତ କରିଥିଲେ । ଜବାହାରଲାଲ ନେହେରୁଙ୍କ ପରେ ସେ ନିଜର ବ୍ୟକ୍ତିତ୍ୱ ବଳରେ ଗୋଟିଏ ଶକ୍ତି, ଗୋଟିଏ ଦଳ ଠିଆ କରିଦେଲେ । ସେ ପ୍ରମାଣ କରିଦେଲେ ଯେ ତାଙ୍କର ନିଜର ବ୍ୟକ୍ତିତ୍ୱ ଅଛି, ତାଙ୍କର ନିଜର ଶକ୍ତି ଅଛି । ପରେ ପରେ ଆମେ ଦେଖିଲେ ଭାରତୀୟ କ୍ଷେତ୍ରରେ ଯେତେବେଳେ ଗୋଟିଏ ନୂଆ ଶକ୍ତିର ଅଭ୍ୟୁଦୟ ହେଲା, ତାହା ସାମ୍ମୁଖ୍ୟ ବା ଜନତା ଦଳ ନାମରେ କଥିତ ହେଲା । ସେଥିରେ ତାଙ୍କର ଅବଦାନ ଯଥେଷ୍ଟ ରହିଥିଲା ସେ ଦଳର ବିଜୟରେ ବିଜୁପଟ୍ଟନାୟକଙ୍କର ବିଶେଷ ଭୂମିକା ରହିଥିଲା । ଅବଶ୍ୟ ସେ ବିଜୟର ସେ ବିଶେଷ ଭାଗୀଦାର ହୋଇନାହାନ୍ତି । ସେଥିପାଇଁ ସେ ବିବ୍ରତ ନଥିଲେ । କ୍ଷମତା ନୁହେଁ ବ୍ୟକ୍ତିତ୍ୱ ତାଙ୍କ ନିକଟରେ ଥିଲା ସବୁଠାରୁ ବଡ଼, ନେତୃତ୍ୱ ଥିଲା ସବୁଠାରୁ ବଡ଼ । ବ୍ୟକ୍ତିର ଅଭିମାନ, ଜାତିର ଅଭିମାନ ତାଙ୍କୁ ସବୁବେଳେ ଆନ୍ଦୋଳିତ କରିଥିଲା । ଯେତେବେଳେ ତାଙ୍କ କଥା ଆମେ ସ୍ମରଣ କରୁ ସେତେବେଳେ ଉତ୍କଳଗୌରବ ମଧୁସୂଦନ ଦାସଙ୍କର ଗୋଟିଏ କଥା ମନେ ପଡ଼େ ।

"କୋଟିଏ ସନ୍ତାନ ମାଗୋ ଧରିଅଛ କୋଳେ,
ଗୋଟିଏ ସନ୍ତାନ ମାତ୍ର ନଦେଖିଲି ତୋଳେ ।"

ବିଜୁବାବୁ ଗୋଟିଏ ସନ୍ତାନ କିନ୍ତୁ ଏକଶହ ସମୋହନ୍ତି ପରି ଓଡ଼ିଶାର ଆକାଶରେ ସେ ଥିଲେ ଦୀପ୍ତିମାନ ଚନ୍ଦ୍ରମା । ସମଗ୍ର ଓଡ଼ିଆଜାତିକୁ ସେ ଆଲୋକିତ କରିଛନ୍ତି ।

ତାଙ୍କର ବ୍ୟକ୍ତିତ୍ୱର କଥା ଚିନ୍ତା କଲାବେଳେ କବି ଓ୍ୱାର୍ଡସ୍‌ୱର୍ଥଙ୍କ କଥା ମନେ ପଡ଼େ । ଆକାଶର ବିହଙ୍ଗମ ଏବଂ ପୃଥିବୀ ପୁତ୍ର । "ଦି କିନ୍‌ଡ୍ରେଡ୍ସ ସିରିନ୍ ବିଟୁଇନ୍ ହେଭେନ୍ ଆଣ୍ଡ ହୋମ୍" । ସେ ସେଇଆ ଥିଲେ ।

ଆଜି ତାଙ୍କ ପ୍ରତି ଯେଉଁ ଶ୍ରଦ୍ଧାଞ୍ଜଳି ଆମେ ଜ୍ଞାପନ କରୁଚେ ସେ ଶ୍ରଦ୍ଧାଞ୍ଜଳି ଜ୍ଞାପନରେ ଓଡ଼ିଆ ଜାତି ଗୌରବାନ୍ୱିତ । ଆମେ ଆମର ଅଭିମାନକୁ, ନିଜର ବ୍ୟକ୍ତିତ୍ୱକୁ ଯେତେବେଳେ ପ୍ରତିପାଦିତ କରିବା ପାଇଁ ଯାଉଚେ ତାଙ୍କୁ ସ୍ମରଣ କରିବାକୁ ହେବ । ଓଡ଼ିଆ ଜାତିକୁ ଭାରତରେ ପ୍ରତିଷ୍ଠିତ କରିବା ପାଇଁ ବିଜୁପଟ୍ଟନାୟକଙ୍କର ବୀରତ୍ୱପୂର୍ଣ୍ଣ କାର୍ଯ୍ୟ ଆମକୁ ସବୁଦିନ ପାଇଁ ଅନୁପ୍ରାଣିତ କରୁଥିବ ।

# କିମ୍ବଦନ୍ତୀ ପୁରୁଷ ବିଜୟାନନ୍ଦ

*ଶ୍ରୀ ନରସିଂହ ପ୍ରସାଦ ଜଗଦେବ*

ମୃତ୍ୟୁପରେ ସମସ୍ତଙ୍କର ସ୍ମୃତି ଧାରଣ କରାଯାଏ କିନ୍ତୁ ଜୀବିତାବସ୍ଥାରେ କିମ୍ବଦନ୍ତୀ ବ୍ୟକ୍ତିତ୍ୱ ହୋଇ ଅଳ୍ପ ବୟସରୁ ଜାତୀୟ ତଥା ଆନ୍ତର୍ଜାତୀୟ ସ୍ତରରେ ଖ୍ୟାତି ଅର୍ଜନ କରିବା ଯେଉଁ ଅଳ୍ପ ବ୍ୟକ୍ତିଙ୍କ ମଧ୍ୟରେ ଜୁଟିଛି ସେମାନଙ୍କ ମଧ୍ୟରେ ବିଜୟାନନ୍ଦ ପଟ୍ଟନାୟକ ଅନ୍ୟତମ । ପଣ୍ଡିତ ନେହେରୁଙ୍କର ସେ ଥିଲେ ପ୍ରିୟ ''ବିଜୁ'' ।

ସେ ସମୟରେ ଜବାହରଲାଲଙ୍କ ସାଙ୍ଗରେ କଥାବାର୍ତ୍ତା କରିବା ଭଳି ଲୋକଥିଲେ ଭାରତରେ ୫/୬ ଜଣ । ସେମାନଙ୍କ ମଧ୍ୟରେ ଜଣେ ଥିଲେ ବଙ୍ଗଳାର ତତ୍କାଳୀନ ମୁଖ୍ୟମନ୍ତ୍ରୀ ଡାକ୍ତର ବିଧାନ ଚନ୍ଦ୍ର ରାୟ । ସେ ଥରେ ବିଧାନ ବାବୁଙ୍କୁ ପଚାରି ଥିଲେ - Have you ever met a young man called Biju Pattanayak. ବିଧାନରାୟ ଉତ୍ତର ଦେଇଥିଲେ, I have heard about him but not yet met. ନେହେରୁ କହିଲେ - Meet him some times, I like such forward looking brave people. The only difficulty is that some times you don't know where he will land you.

ଏଥିରୁ ଜଣାପଡ଼େ ନେହେରୁଙ୍କର ମାନସ ପଟରେ ''ବିଜୁ''ଙ୍କର ସ୍ଥାନ କେଉଁଠି ଥିଲା । ସେତେବେଳକୁ ତାଙ୍କର ବୟସ ପ୍ରାୟ ୩୦ ବର୍ଷ ।

ବିଜୁବାବୁଙ୍କର ସବୁଠାରୁ ବଡ଼ ଗୁଣ ଥିଲା ହୀନମନ୍ୟତା ତାଙ୍କୁ ସ୍ପର୍ଶ କରିନଥିଲା । କିନ୍ତୁ ହୀନମନ୍ୟତାର ଶିକାର ହୋଇଥିଲେ । ତାଙ୍କର ସ୍ୱାଭିମାନ ଓ ଆତ୍ମବିଶ୍ୱାସ ମଧ୍ୟରେ ଏସବୁ ଲୀନ ହୋଇ ଯାଉଥିଲା । ଯୁବ ସମାଜ ପ୍ରତି ତାଙ୍କର ଉପଦେଶ ଥିଲା ଏ ହୀନମନ୍ୟତାକୁ ପିଙ୍ଗି ଦେଇ ସବୁ ସମୟରେ ଉଚ୍ଚା ଭିଳାଷୀ ହୁଅ, ବଡ଼ ହେବାକୁ ଚେଷ୍ଟା କର ଓ ନିଜର ଶକ୍ତିରେ ବିଶ୍ୱାସ କର । ମୃତ୍ୟୁ ପର୍ଯ୍ୟନ୍ତ ରାଜନୀତିର କଠୋର ସଂଗ୍ରାମରେ ତାଙ୍କର ଉକ୍ତି ହୋଇଛନ୍ତି । ଶତ୍ରୁମାନଙ୍କର ମୁକାବିଲା ପ୍ରତି ଭ୍ରୁକ୍ଷେପ ନଥାଏ । ଯଦି ସତୁରୀ ଦଶକର ପ୍ରାରମ୍ଭରେ ସେ ଇନ୍ଦିରା ଗାନ୍ଧୀଙ୍କ ନିକଟସ୍ଥ ହୋଇପାରି ଥାଆନ୍ତେ ତେବେ ଭାରତର ରାଜନୀତି ଏକ ଅନ୍ୟମୋଡ଼ ନେଇ ଥାଆନ୍ତା । ପରାଜୟକୁ ସ୍ୱୀକାର ନକରି ସେ ବିଜୟ ଲାଭ କରିବା ପାଇଁ ମୃତ୍ୟୁ ପର୍ଯ୍ୟନ୍ତ ଚେଷ୍ଟିତ ଥିଲେ ।

ଓଡ଼ିଶାରେ ଦୁଃସାହସର ଅନ୍ୟ ନାମ ''ବିଜୁ ପଟ୍ଟନାୟକ'' । ଖାଲି ଓଡ଼ିଶା କାହିଁକି, ସାରା ଭାରତରେ ତାଙ୍କ ପରି ବହୁମୁଖୀ ବ୍ୟକ୍ତିତ୍ୱର ଅଧିକାରୀ କେହି ଜଣେ ହେଲେ ନାହାନ୍ତି । ଅସମ୍ଭବ ଗୋଟିଏ ଶବ୍ଦ ତାଙ୍କ ନିକଟରେ ସ୍ଥାନ ପାଇ ନଥିଲା । ପିଲାଟି ଦିନରୁ ଅନେକ ଘାତ ପ୍ରତିଘାତ ଦେଇ ତାଙ୍କ ଜୀବନ ଗଢ଼ା ହୋଇଥିଲା । ୧୯୨୬ ମସିହାରେ ଯେତେବେଳେ ୧୦ ବର୍ଷର ପିଲା, ସ୍ୱରାଜ ଆଶ୍ରମକୁ ଯାଉଥିଲେ ମହାତ୍ମା ଗାନ୍ଧୀଙ୍କ ଦର୍ଶନ ପାଇଁ । ଗନ୍ଦି ଟ୍ରେନ୍ ଭିତରକୁ ଧସାଇ ପଶିବା ସମୟରେ ଗୋରା ପୋଲିସ ସାହେବର ଲାଠି ମାଡ଼ରେ ମୁଣ୍ଡ ଫାଟି ଯାଇଥିଲା । ମୁଣ୍ଡରୁ ରକ୍ତ ପୋଛି ନିର୍ଭୟରେ ଗାନ୍ଧିଜୀଙ୍କ ସମ୍ମୁଖରେ ଶପଥ ନେଇଥିଲେ ଇଂରେଜ ସରକାରଙ୍କ ବିରୁଦ୍ଧରେ ପ୍ରତିଶୋଧ ନେବେ । ସେ ଦିନ ଠାରୁ ଏହି ୧୦ ବର୍ଷର ବାଳକର କାର୍ଯ୍ୟକଳାପ ମହାତ୍ମାଙ୍କର ସ୍ମୃତି ପଟରୁ ଲିଭିନଥିଲା ।

କଟକ ରେଭେନ୍ସା କଲେଜର ପ୍ରତିବର୍ଷର ଆଥେଲେଟିକ୍ ଚମ୍ପିଆନ ''ବିଜୁବାବୁ'' ଉଡ଼ାଜାହାଜ ଦେଖା ଛୁଇଁ, ପୁଲିସଠାରୁ ମାଡ଼ ଖାଇ ପ୍ରତିଜ୍ଞା କରିଥିଲେ ଜଣେ ପାଇଲଟ ହେବେ ବୋଲି । କେବଳ ବିମାନଚାଳକ କର୍ମ ହିଁ ତାଙ୍କୁ ବିଶ୍ୱ ବିଖ୍ୟାତ କରିଥିଲା । ଯାହା ଫଳରେ ନିଜର ଦେଶ ତଥା ବିଶ୍ୱର ଅନେକ ବିରାଟ ବ୍ୟକ୍ତିଙ୍କ ସଂସର୍ଶରେ ଆସି ସେମାନଙ୍କ ନିକଟରେ ଶ୍ରଦ୍ଧା ଭାଜନ ହୋଇଛନ୍ତି । ଫିରିଙ୍ଗି ସରକାରଙ୍କ ଅଧୀନରେ ଚାକିରି କରିବାର ପ୍ରଥମ ଅବସ୍ଥାରେ ୧୯୪୦ ମସିହାରେ ସେ ଜୟ ପ୍ରକାଶ ନାରାୟଣଙ୍କ ସହ ଆକସ୍ମିକ ଭାବରେ ସାକ୍ଷାତ ହେବା ଠାରୁ ତାଙ୍କୁ ପ୍ରଥମ ରାଜନୈତିକ ଗୁରୁ ଭାବରେ ଗ୍ରହଣ କରିଥିଲେ । ସେତେବେଳେ ''ବିଜୁବାବୁ'' ଭାରତର ବଡ଼ଲାଟ ଲର୍ଡ଼ ୱାଭେଲଙ୍କର ପାଇଲଟ ଥିଲେ । ଏପରି ସୁଯୋଗ ବିଶ୍ୱରେ କେତେଜଣଙ୍କୁ ଜୁଟିଥାଏ ? କିନ୍ତୁ ''ସଂସର୍ଗଜା ଦୋଷା ଗୁଣା ଭବନ୍ତି'' ନ୍ୟାୟରେ ବିଜୁବାବୁ ଜୟପ୍ରକାଶଙ୍କ ଉପଦେଶ ଦ୍ୱାରା ବଡ଼ଲାଟଙ୍କର ସମସ୍ତ କାଗଜପତ୍ର ମହାତ୍ମାଙ୍କ ନିକଟରେ ପହଞ୍ଚାଇ ଦେବା ଫଳରେ ସ୍ୱାଧୀନତା ଆନ୍ଦୋଳନର ପଟପରିବର୍ତ୍ତନ ହେଲା । ଜୟପ୍ରକାଶ ନାରାୟଣ ପ୍ରଭୃତିଙ୍କ ଦ୍ୱାରା ଅନୁପ୍ରାଣିତ ହୋଇ ସ୍ୱାଧୀନତା ସଂଗ୍ରାମରେ ସକ୍ରିୟ ଅଂଶ ଗ୍ରହଣ କରିଥିବା ''ବିଜୁ'' ୧୯୪୩ ଜାନୁଆରୀ ୧୩ ତାରିଖରେ ଇଂରେଜ ସରକାର ଦ୍ୱାରା ଦିଲ୍ଲୀଠାରେ ଗିରଫ ହୋଇଥିଲେ ।

ପଣ୍ଡିତ ନେହେରୁଙ୍କ ନିର୍ଦ୍ଦେଶରେ ନିଜେ ଭାରତରୁ ଉଡ଼ାଜାହାଜ ନେଇ ଇଣ୍ଡୋନେସିଆରେ ଡଚ୍ ସାମ୍ରାଜ୍ୟବାଦୀମାନଙ୍କର ନଜର, ସନ ଓ

## ବିଜୁ ପଟ୍ଟନାୟକ



ବିଜୁ ପଟ୍ଟନାୟକ — ମହାନ୍ ଜନନାୟକଙ୍କ ପରଲୋକ





ଦିଶା ଓ ଚେତନା ତରଫରୁ ମହାନ୍ ଜନନାୟକ ବିଜୁ ପଟ୍ଟନାୟକଙ୍କ ସ୍ମୃତି ଉଦ୍ଦେଶ୍ୟରେ ଆୟୋଜିତ ଏ ସାଧାରଣ ପ୍ରାର୍ଥନା ସଭାରେ ଶ୍ରୀ ପ୍ରସନ୍ନ କୁମାର ପାଟସାହାଣୀ, ଶ୍ରୀମତୀ ନନ୍ଦିନୀ ଶତପଥୀ, ଶ୍ରୀ ସହଦେବ ଓ ଶ୍ରୀ ଶ୍ରୀକାନ୍ତ ରାୟ । ତଳ ଧାଡ଼ିରେ ମହାନ୍ ନେତା ବିଜୁ ପଟ୍ଟନାୟକଙ୍କ ଫଟୋଚିତ୍ର




ରାଜ୍ୟ ରାଜଧାନୀ ଭୁବନେଶ୍ୱରର ୟୁନିଟ୍—୩ ପ୍ରଦର୍ଶନୀ ପଡ଼ିଆରେ ଅନୁଷ୍ଠିତ ଏକ ବିରାଟ ଜନସମାବେଶରେ ଭାରତର ପ୍ରଧାନମନ୍ତ୍ରୀ ଶ୍ରୀ ଆଇ. କେ. ଗୁଜରାଲ, ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ, ବିରୋଧୀ ଦଳ ନେତା ଶ୍ରୀ ଅଶୋକ ଦାସ ଏବଂ ମାନ୍ୟଗଣ୍ୟ ବ୍ୟକ୍ତିମାନେ ଦିବଙ୍ଗତ ମହାନ୍ ନେତା ବିଜୁ ପଟ୍ଟନାୟକଙ୍କ ଅମର ଆତ୍ମା ପ୍ରତି ଶ୍ରଦ୍ଧାଞ୍ଜଳି ଜ୍ଞାପନ କରନ୍ତି



ସହର ଉପକଣ୍ଠରେ ମହାନ ନେତା ବିଜୁ ପଟ୍ଟନାୟକଙ୍କ ସ୍ମୃତି ଉଦ୍ଦେଶ୍ୟରେ ଆୟୋଜିତ ସର୍ବଧର୍ମ ପ୍ରାର୍ଥନା ସଭାରେ



ପୁରୀ ସ୍ୱର୍ଗଦ୍ୱାରଠାରେ ମହାନ୍ ନେତା ଶ୍ରୀ ବିଜୁ ପଟ୍ଟନାୟକଙ୍କ ମରଶରୀରରେ ତାଙ୍କ ଜ୍ୟେଷ୍ଠପୁତ୍ର ଶ୍ରୀ ପ୍ରେମ ପଟ୍ଟନାୟକ ଚିତାଗ୍ନି ସଂଯୋଗ କରୁଛନ୍ତି । ମହାନ୍ ଦିବଙ୍ଗତ ଆତ୍ମା ପ୍ରତି କେନ୍ଦ୍ରମନ୍ତ୍ରୀ ଶ୍ରୀ ଏସ୍. ଆର୍. ବୋମାଇ, ପୂର୍ବତନ ପ୍ରଧାନମନ୍ତ୍ରୀ ଶ୍ରୀ ଅଟଳ ବିହାରୀ ବାଜପେୟୀ, ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ, ପ୍ରଧାନମନ୍ତ୍ରୀ ଶ୍ରୀ ଏଚ୍. ଡି. ଦେବେଗୌଡ଼ା, ପୂର୍ବତନ ପ୍ରଧାନମନ୍ତ୍ରୀ ଶ୍ରୀ ଚନ୍ଦ୍ରଶେଖର, ଶ୍ରୀ ଏଲ୍. କେ. ଆଡଭାନୀ, ଆନ୍ଧ୍ରପ୍ରଦେଶ ରାଜ୍ୟପାଳ ଶ୍ରୀ କୃଷ୍ଣକାନ୍ତ, ବିହାର ମୁଖ୍ୟମନ୍ତ୍ରୀ ଶ୍ରୀ ଲାଲୁ ପ୍ରସାଦ ଯାଦବ, ଶ୍ରୀ ଦେବୀଲାଲ ଓ ବହୁ ମାନ୍ୟଗଣ୍ୟ ବ୍ୟକ୍ତି ଶୋକ ସନ୍ତାପ ଜଣାଉଛନ୍ତି



ମହାନ୍ ଜନନାୟକ ବିଜୁ ପଟ୍ଟନାୟକଙ୍କ ମରଶରୀରକୁ [illegible] ନିଆଯାଉଛି



[illegible] ପ୍ରଧାନମନ୍ତ୍ରୀ ଆଇ. କେ. ଗୁଜରାଲ, ପୂର୍ବତନ ପ୍ରଧାନମନ୍ତ୍ରୀ ଶ୍ରୀ ଏଚ୍. ଡି. ଦେବେଗୌଡ଼ା ଓ ଦିଲ୍ଲୀ ମୁଖ୍ୟମନ୍ତ୍ରୀଙ୍କ [illegible] ବିଜୁ ପଟ୍ଟନାୟକଙ୍କ [illegible]

# ଆଧୁନିକ ଓଡ଼ିଶାର ନିର୍ମାତା - ବିଜୁବାବୁ

ଡଃ. ଲକ୍ଷ୍ମୀଧର ମିଶ୍ର

ଜନସାଧାରଣଙ୍କ ଅତି ଆଦରର ଶ୍ରୀ ବିଜୁ ବାବୁ ଆଉ ଇହଧାମରେ ନାହାନ୍ତି । ଆଧୁନିକ ଓଡ଼ିଶାର ନିର୍ମାତା ଆମ ମଧ୍ୟରୁ ଅନ୍ତର୍ହିତ ହୋଇଗଲେ । ତାଙ୍କର ଜୀବନ ଶୈଳୀ ଥିଲା ଅନନ୍ୟସାଧାରଣ । ସେ ଯେତେବେଳେ କିଛି କହିବାକୁ ଉଠନ୍ତି, ତାଙ୍କର ବଜ୍ରଗମ୍ଭୀର ତଥା ସାହସିକ ଶବ୍ଦ ଉଚ୍ଚାରଣ ପ୍ରତ୍ୟେକ ବର୍ଗର ଲୋକମାନଙ୍କ ମେରୁଦଣ୍ଡରେ ପ୍ରକମ୍ପନ ସୃଷ୍ଟି କରିବା ସମୟରେ ତାଙ୍କର ବାଣୀ ଗରିବ, ନିଷ୍ପେଷିତ ଓ ଅସହାୟ ଲୋକମାନଙ୍କ ମଧ୍ୟରେ ଅନେକ ଆଶା ଓ ବିଶ୍ୱାସର ନିର୍ଝରିଣୀ ସୃଷ୍ଟି କରିଥାଏ । ଓଡ଼ିଶାର ଜନସାଧାରଣ ତଥା ଦେଶବାସୀ ଯେତେବେଳେ ତାଙ୍କଠାରୁ ବହୁ ଅବଦାନ ଆଶା କରୁଥିଲେ, ସେତେବେଳେ ମୃତ୍ୟୁର ନିଷ୍ଠୁର ହସ୍ତ ତାଙ୍କୁ କୋଳାଗ୍ରତ କଲା ।

ବିଜୁବାବୁଙ୍କ ଭଳି ଜଣେ ସୁଦୃଢ଼ମନା ତଥା ଉତ୍ତୁଙ୍ଗ ବ୍ୟକ୍ତିତ୍ୱ ଏସବୁ ସୁଗୁଣର ଏକତ୍ର ସମିଶ୍ରଣରେ ଜୀବନରେ ଯାହାସବୁ କରିଯାଇଛନ୍ତି ବାସ୍ତବିକ ସେଗୁଡ଼ିକ କୃତିତ୍ୱ ଅନ୍ୟାନ୍ୟ ଲୋକମାନଙ୍କ କ୍ଷେତ୍ରରେ ବିରଳ ପ୍ରତୀୟମାନ ହୁଏ । ଏହା ବିଶ୍ୱାସଯୋଗ୍ୟ ନହେଲେ ମଧ୍ୟ ଏକାନ୍ତ ସତ୍ୟ । ତାଙ୍କର ସମ୍ମୁଖ ଦୃଷ୍ଟିକୋଣ, ତାଙ୍କର ମନୋନିବେଶ, ହଠାତ୍ କିଛି ଘଟଣା ଘଟିବାର ପୂର୍ବାନୁମାନ, ବୋଧଶକ୍ତି ଓ ଘଟଣାକ୍ରମ ସଂପର୍କରେ ସଠିକ ଆକଳନ ଓ ଲୋକମାନଙ୍କ ଉପକାର ପାଇଁ ଭବିଷ୍ୟ ଉନ୍ନୟନମୂଳକ ପ୍ରକଳ୍ପଗୁଡ଼ିକ ଆଗେଇ ନେବା ଦିଗରେ ତାଙ୍କର ଅଭୂତପୂର୍ବ ନିଷ୍ଠା ଓ ଅସାଧାରଣ ଦୃଢ଼ତା ବାସ୍ତବିକ ପ୍ରଣିଧାନଯୋଗ୍ୟ । ଦେଶପ୍ରେମ ଓ ମାତୃଭୂମି ପ୍ରତି ଉତ୍ସର୍ଗୀକୃତ ଉତ୍କଳ ଗୌରବ ମଧୁସୂଦନଙ୍କ ମୃତ୍ୟୁର ବହୁକାଳ ପରେ ବିଜୁବାବୁଙ୍କ ସକାଶେ ଭାରତ ମାନଚିତ୍ରରେ ଓଡ଼ିଶାର ଗୌରବ ବୃଦ୍ଧି ପାଇଥିଲା । ମଧୁବାବୁ ଓଡ଼ିଶାର ସମ୍ମାନ ଅକ୍ଷୁଣ୍ଣ ରଖିବା ପାଇଁ ଉତ୍କଳ ଚମଡ଼ା କାରଖାନାର ଗୁଣାତ୍ମକମାନ ଉନ୍ନତ ରଖିବାରେ ଗୌରବ ଅନୁଭବ କରୁଥିଲେ । ତାଙ୍କର ଐକାନ୍ତିକ ଉଦ୍ୟମରେ ଏବଂ ତାଙ୍କର ମୃତ୍ୟୁର ୨ ବର୍ଷ ପରେ ବିଚ୍ଛିନ୍ନ ଓଡ଼ିଶାକୁ ଏକତ୍ର କରାଯାଇ ଏପ୍ରିଲ ପହିଲା ୧୯୩୬ ମସିହାରେ ଆଧୁନିକ ଓଡ଼ିଶା ଜନ୍ମ ନେଲା । ମଧୁବାବୁଙ୍କ ଠିକ୍ ପରେ ପରେ ବିଜୁବାବୁ ଓଡ଼ିଶା ପାଇଁ ଯାହାସବୁ କରିଯାଇଛନ୍ତି, ତାହା ହୁଏତ ଅନ୍ୟ କିଏ ଏପରି କରି ପାରିନଥାନ୍ତେ । ବିଜୁବାବୁଙ୍କ ଉଦ୍ୟମରେ ପାରାଦ୍ୱୀପ ବନ୍ଦର, ସୁନାବେଡ଼ା ମିଗ କାରଖାନା, ତିରୁବାଲିର ଫେରୋସିଲିକନ୍ କାରଖାନା, ବାଲିମେଳା ଜଳବିଦ୍ୟୁତ ପ୍ରକଳ୍ପ, ତାଳଚେର ତାପଜ ବିଦ୍ୟୁତ ଶକ୍ତି ପ୍ରକଳ୍ପ, ବୁର୍ଲା ଇଂଜିନିୟରିଂ ଓ ଭେଷଜ ମହାବିଦ୍ୟାଳୟ, ରାଉରକେଲା ଇଂଜିନିୟରିଂ କଲେଜ, ଦୈତାରୀ-ପାରାଦ୍ୱୀପ ଦ୍ରୁତ ରାଜମାର୍ଗ, ଭୁବନେଶ୍ୱର ସୈନିକ ବିଦ୍ୟାଳୟ, ବହୁମୁଖୀ ପ୍ରଦର୍ଶନ ସ୍କୁଲ, ଆଂଚଳିକ ଶିକ୍ଷା ମହାବିଦ୍ୟାଳୟ, ଆଂଚଳିକ ଗବେଷଣା ପ୍ରୟୋଗଶାଳା ଓ ଓଡ଼ିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟ ଆଦି ପ୍ରତିଷ୍ଠା ତାଙ୍କର ଅନବଦ୍ୟ କୃତିତ୍ୱର ପରିଚାୟକ ।

ଉପରୋକ୍ତ ଯୁଗାନ୍ତକାରୀ ପ୍ରକଳ୍ପଗୁଡ଼ିକର ବହୁଆଗରୁ ଗୁରୁତ୍ୱପୂର୍ଣ୍ଣ ହୀରାକୁଦ ନଦୀବନ୍ଧ ଯୋଜନା, ମାଛକୁଣ୍ଡ ଜଳବିଦ୍ୟୁତ୍ ଯୋଜନା, ରାଉରକେଲା ଇସ୍ପାତ କାରଖାନା, ବହୁ ଔଦ୍ୟୋଗିକ ପ୍ରତିଷ୍ଠାନ, ଓ ଶିକ୍ଷାୟତନ ଆଦି ବିଗତ ପଚାଶ ଓ ଷାଠିଏ ଦଶକରୁ ସେ ଆରମ୍ଭ କରିଥିଲେ । ବିଜୁବାବୁ ହିଁ ମର୍ଯ୍ୟାଦାସଂପନ୍ନ କଳିଙ୍ଗ ପୁରସ୍କାର ସ୍ଥାପନ କରିଥିଲେ, ଯାହା ବହୁ ବର୍ଷ ଧରି ଜାତିସଂଘ ଶିକ୍ଷା, ସାମାଜିକ ଓ ସାଂସ୍କୃତିକ ସଂଗଠନ (ୟୁନେସ୍କୋ) ଦ୍ୱାରା ପରିଚାଳିତ ହେଉଛି । ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟା କ୍ଷେତ୍ରରେ ମୌଳିକ ଗବେଷଣା ଲାଗି ଏହି ପୁରସ୍କାର ପ୍ରଦାନ କରାଯାଉଛି । ବୈଜ୍ଞାନିକ ଦକ୍ଷତା ତଥା ଜନମାନସରେ ଏହାର ସ୍ୱୀକୃତି ଲାଗି କଳିଙ୍ଗ ପୁରସ୍କାର ସ୍ଥାପନା ବିଜୁବାବୁଙ୍କର ଅପରିସୀମ ମର୍ଯ୍ୟାଦାର ପରିଚାୟକ । ଏସବୁ ପ୍ରକଳ୍ପରେ ବିଜୁବାବୁଙ୍କ ଥିଲା ଗୋଟିଏ ସ୍ୱପ୍ନ, ଗୋଟିଏ ନିର୍ଦ୍ଦେଶ ଓ ଏକମାତ୍ର ଲକ୍ଷ୍ୟ- ତାହା ହେଉଛି ଓଡ଼ିଶାର ଲୋକମାନେ କିପରି ଦାରିଦ୍ର୍ୟର ଅନ୍ଧକାର ତଥା ନିଷ୍ପେଷଣରୁ ମୁକ୍ତି ଲାଭ କରି ଦେଶର ଅନ୍ୟାନ୍ୟ ଅଂଚଳ ଲୋକମାନଙ୍କ ସହିତ ସମତାଳରେ ସମ୍ମାନର ସହିତ ଅଗ୍ରଗତି କରିବେ । ଓଡ଼ିଶାବାସୀଙ୍କ ପକ୍ଷରେ ଗର୍ବ ଓ ଗୌରବର ବିଷୟ ହେଉଛି, ଏତେ କମ ସମୟ ମଧ୍ୟରେ ବିଜୁବାବୁ ନିଜର ନିସ୍ୱାର୍ଥପର କର୍ମ ମାଧ୍ୟମରେ ଏତେ ଗୁଡ଼ିଏ କାର୍ଯ୍ୟ ଲୋକମାନଙ୍କ କଲ୍ୟାଣ ଲାଗି କରିଯାଇଛନ୍ତି । ସାର ଆଟେନବର୍ଗଙ୍କ ଦ୍ୱାରା ନିର୍ମିତ ଗାନ୍ଧୀ ଚଳଚ୍ଚିତ୍ରରେ ଆଣ୍ଠୁ ଦିଶୁଥିବା ଧୋବାଘରର ମହିଳାଙ୍କୁ ଦେଖି ମହାତ୍ମାଗାନ୍ଧୀ ଯେଭଳି ମ୍ରିୟମାଣ ହୋଇଥିଲେ, ଠିକ ସେହିପରି ସୁନ୍ଦରଗଡ଼ ଜିଲ୍ଲାର ଆଣ୍ଠୁ ଲୁଚୁନଥିବା ଆଦିବାସୀ ମହିଳାଙ୍କ ଦୁରବସ୍ଥା ଦେଖି ବିଜୁବାବୁ ରାଜ୍ୟରେ ତୁରନ୍ତ ଶ୍ରମିକମାନଙ୍କ ସର୍ବନିମ୍ନ ଦୈନିକ ମଜୁରୀ ୨୫ ଟଙ୍କା ହେବ ବୋଲି ନିଷ୍ପତ୍ତି ନେଇ ସରକାରୀ ଅଧିସୂଚନା ଜାରି କରିଥିଲେ । ସେ ସମୟରେ ସର୍ବନିମ୍ନ ମଜୁରୀ ଅତି ନଗଣ୍ୟ ଥିଲା ।

ବିଜୁବାବୁଙ୍କ ତିରୋଧାନରେ ଦେଶ ଜଣେ ଦୂରଦ୍ରଷ୍ଟା ତଥା କ୍ରିୟାଶୀଳ ବ୍ୟକ୍ତିତ୍ୱକୁ ହରାଇଲା । ସେ ରାଜ୍ୟ ଓ ଦେଶବାସୀଙ୍କ ଉତ୍ଥାନ ସକାଶେ ବିଶ୍ୱକବି ରବୀନ୍ଦ୍ରନାଥଙ୍କ ସ୍ୱପ୍ନ ଭଳି ଅବିରତ ନିରଳସ କାର୍ଯ୍ୟ କରିଯାଇଛନ୍ତି । ଆଜି ବିଜୁବାବୁଙ୍କ ତିରୋଧାନ ପରେ ସୁଦୂର କଳାହାଣ୍ଡି ଓ ସୁନ୍ଦରଗଡ଼ର ଗରିବ ଆଦିବାସୀ ମହିଳା, ଦରିଦ୍ର କର୍ମନିଯୁକ୍ତି ବିହୀନ ଯୁବ ସମାଜ, ଭୁବନେଶ୍ୱରର ରିକ୍ସା ଚାଳକ, ଶିକ୍ଷକ, ଛାତ୍ର, ମହିଳା ଓ ସବୁ ସ୍ତରର ଲୋକେ ମର୍ମାନ୍ତିକ ଦୁଃଖର ସହିତ ତାଙ୍କର ସ୍ମୃତିଚାରଣ କରୁଛନ୍ତି । ଦେଶର ଲକ୍ଷ-କୋଟି ଜନମାନସରେ ଯେଉଁ ଦାରୁଣ ଦୁଃଖର ବହ୍ନି ସୃଷ୍ଟି ହୋଇଛି, ତାହା ସହଜରେ ନିର୍ବାପିତ ହୋଇପାରିବ ନାହିଁ । ଏପରିକି ଇଣ୍ଡୋନେସିଆ ଦେଶବାସୀ ନିଜର ''ଭୂମିପୁତ୍ର'' ୪୦ ଦଶକରେ ଯେଉଁ ଚରମ ସାହସିକତା ପ୍ରଦର୍ଶନ କରି ସେ ଦେଶର ଜନନେତାମାନଙ୍କୁ ରାଷ୍ଟ୍ରୀୟ ଦୁର୍ବିପାକ ସମୟରେ ରକ୍ଷା କରିଛନ୍ତି- ତାହା ଚିରକାଳ ସ୍ମରଣ କରିବେ ।

ସଚିବ, କେନ୍ଦ୍ର ଶ୍ରମ ମନ୍ତ୍ରଣାଳୟ,
ନୂଆଦିଲ୍ଲୀ

# ସେ ଚିର ଅମର ମରଣଜୟୀ

ଶ୍ରୀ ରବୀନ୍ଦ୍ରନାଥ ଦାସ

ମୁକୁଟବିହୀନ କଳିଙ୍ଗ ସମ୍ରାଟ ପାରେ ନାହିଁ କେବେ ଶୋଇ
ଯାତ୍ରା ସରିନି, ରାତ୍ରିସରିନି
କଳିଙ୍ଗରଥ ଅଟକିଲା କାହାପାଇଁ ?
ତମେ ଥିଲପରା ଝଡ଼ର ଈଗଲ, ମାଟିର ମୂର୍ତ୍ତିକାର
ଚିର ସ୍ୱାଭିମାନୀ, ଶାଳପାଂଶୁ ଯୋଦ୍ଧା ସ୍ୱପ୍ନ ତୁମ ଦୁର୍ନିବାର
କିମ୍ବଦନ୍ତୀର ନାୟକ ତୁମେ ହେ    ଲେଖିଗଲ ନୂଆ ଇତିହାସ
ଇଣ୍ଡୋନେସିଆର ଭୂମିପୁତ୍ର ତୁମେ ଚକିତ ହୋଇଛି ବିଶ୍ୱ
ହେ ଜନ ନାୟକ
ଏ ଜନ ସମୁଦ୍ର କୁହ ଆଜି କାହାପାଇଁ ?
କଥାଟିଏ କୁହେ ନାହିଁ
ଧୀର ଧୀର ଖାଲି ଲୁହ ଯାଉଅଛି ବହି
ନବକଳିଙ୍ଗର ନବନିର୍ମାତା ସେ
ନୀରବେ ଯାଉଛି ଶୋଇ ।୧।
ପାରାଦ୍ୱୀପ କାନ୍ଦେ    ସୁନାବେଡ଼ା କାନ୍ଦେ    କାନ୍ଦୁଛି ବାଲିମେଳା ।
କେଉଁ ଅଭିମାନେ    ସ୍ୱପ୍ନ ଅଧାକରି    ଶଳାପୁତ୍ର ନ ବାହୁଡ଼ିଲା ।
ଅସମ୍ଭବ ଯିଏ    ସମ୍ଭବ କରିଲା    ପରାଜୟ ଯିଏ ଜାଣେ ନାହିଁ ।
ମୃତ୍ୟୁ ଯାହାକୁ    ଛୁଇଁ ପାରିବନି    ସେଥିଲା ମରଣଜୟୀ ।

କିଏ ସାକ୍ଷୀ ତାର ଜନମ ଭୂଇଁ
ମୁକୁଟ ବିହୀନ କଳିଙ୍ଗ ସମ୍ରାଟ ସତେକି ଫେରିବ ନାହିଁ ?
ସ୍ୱପ୍ନରାଜ୍ୟର ସଉଦାଗର ହେ
ଏ ଜାତି ତୁମକୁ ଚିହ୍ନିଲା ନାହିଁ
ମହାକାଳ ଆଜି ମଥାନତ କରି
ଅଶ୍ରୁ ଝରାଏ ତୁମରି ପାଇଁ
ଆସ ଆସ ବୀରେ ସଂଗ୍ରାମ ସରିନି
ସେନାପତି କେବେ ପାରେନା ଶୋଇ
ସାରା ଏ ଭାରତ ଆକୁଳେ ଡାକୁଛି
କଳିଙ୍ଗ ସମ୍ରାଟ ଉଠିବ ଚେଇଁ
ସେ ଚିର ଅମର ମରଣଜୟୀ
ଶେଷ ଇତିହାସ ପୃଷ୍ଠା
ଲେଖିବ ବେଳ ନାହିଁ ବେଳନାହିଁ
କଳିଙ୍ଗ ସମ୍ରାଟ ପାରେନା ଶୋଇ ।

ଉପଶାସନ ସଚିବ
ଗ୍ରାମ୍ୟ ଉନ୍ନୟନ ବିଭାଗ

# ଓଡ଼ିଆ ଜାତିର ସ୍ୱପ୍ନ

ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ

ଉତ୍କଳ ଦିବସ ପ୍ରତିବର୍ଷ ଆମେ ସମାରୋହରେ ପାଳନ କରିଆସିଛେ । ଏହିଦିନ ବହୁ ଦିନର ସ୍ୱପ୍ନ ଓଡ଼ିଶାବାସୀଙ୍କର ସାର୍ଥକ ହୋଇଥିଲା । ଓଡ଼ିଶା ଏକ ସ୍ୱତନ୍ତ୍ର ପ୍ରଦେଶ ହୋଇଥିଲା । ଆମେ ଆଜି କଳ୍ପନା କରି ପାରିବା ନାହିଁ କିପରି ଭାବରେ ଆମେ ଏକ ଅଭିଶପ୍ତ ଜାତି ହିସାବରେ ରହିଥିଲେ । ବାଦଲୁଆର ଶୁଣିପିଣ୍ଡା ବୋଲି ଯାହାକୁ କୁହାଯାଏ, ସେହିଭଳି ଥିଲା ଓଡ଼ିଶାର ଅବସ୍ଥା । ମଧ୍ୟ ପ୍ରଦେଶରେ ସମ୍ବଲପୁରଜିଲ୍ଲା, ଗଞ୍ଜାମ କୋରାପୁଟ ଜିଲ୍ଲା ମାନ୍ଦ୍ରାଜରେ । ଆମର ମେଦିନାପୁର ଜିଲ୍ଲା ବର୍ତ୍ତମାନ ଅବଶ୍ୟ ଓଡ଼ିଶାରେ ରହିଲା ନାହିଁ । ରହିଗଲା ବଙ୍ଗ ଦେଶରେ । ସେହିପରି ଭାବରେ ଓଡ଼ିଶା ଏକ ବିଚ୍ଛିନ୍ନ ଅବସ୍ଥା ହୋଇକରି ରହିଲା । ଓଡ଼ିଶାର ନିଜ୍ଜ ନିଜସ୍ୱ ନଥିଲା, ସ୍ୱାତନ୍ତ୍ର୍ୟ ନଥିଲା ।

ଫକୀରମୋହନ ସେନାପତି ଅତି ଦୁଃଖରେ କବିତା ଲେଖିଥିଲେ -

''କୁକୁର ଗୋଟିଏ ବନାଇବ ଘର
ବାଟି ବୁଲେ ବାରଦ୍ୱାର ଅଇଁଠା ପତର ।

ଯେଉଁମାନେ ଜୀବନ ବ୍ୟାପୀ ସଂଗ୍ରାମ କରିଥିଲେ ସମସ୍ତ କ୍ଷେତ୍ରରେ- ରାଜନୀତି କ୍ଷେତ୍ରରେ, ସାମାଜିକ କ୍ଷେତ୍ରରେ, ସାହିତ୍ୟ କ୍ଷେତ୍ରରେ, , ଭାଷାର କ୍ଷେତ୍ରରେ ଆଜି ସେମାନେ ସମସ୍ତେ ଆମର ସ୍ମରଣୀୟ, ସମସ୍ତେ ଆମର ପୂଜ୍ୟ । ଓଡ଼ିଶାକୁ ଏକ ସ୍ୱତନ୍ତ୍ର ରାଜ୍ୟରେ ପରିଣତ କରିବା ପାଇଁ ରାଜାଠାରୁ ଆରମ୍ଭ କରି ରଙ୍କ ପର୍ଯ୍ୟନ୍ତ, ସାଧାରଣ ପ୍ରଜାଠାରୁ ଆରମ୍ଭ କରି ନେତା ପର୍ଯ୍ୟନ୍ତ, ସମଗ୍ର ଓଡ଼ିଆ ଜାତି ଲଢ଼ିଛି । ବହୁ ପରିଶ୍ରମରେ, ବହୁ ସଂଗ୍ରାମରେ ଓଡ଼ିଆ ଜାତି ଏକ ସ୍ୱତନ୍ତ୍ର ପ୍ରଦେଶରେ ପରିଣତ ହୋଇଛି ୧୯୩୬ ମସିହାରେ । ଆଜି ୬୧ ବର୍ଷ ହୋଇଗଲା । ଆମେ ସିଂହାବଲୋକନ କରିବାର କଥା କ'ଣ ଆମେ କରିପାରିଛେ, କ'ଣ କରିବା ପାଇଁ ବାକି ଅଛି ? ଯେଉଁମାନେ ଏ ଜାତିକୁ ଗଠନ କରିବାରେ ସାହାଯ୍ୟ କରିଛନ୍ତି-ମଧୁସୂଦନ ଦାସ, ଗୋପବନ୍ଧୁ ଦାସ, ହରେକୃଷ୍ଣ ମହତାବ୍, ପାରଳାଖେମୁଣ୍ଡିର ଗଜପତି, ଗୋଦାବରୀଶ ମିଶ୍ର, ନୀଳକଣ୍ଠ ଦାସ, ଯେଉଁମାନେ ଆମ ଭାଷା ଓ ସାହିତ୍ୟକୁ ଭୂଷିମନ୍ତ କରିଛନ୍ତି- ଗଙ୍ଗାଧର ମେହେର, ରାଧାନାଥ ରାୟ, ଫକୀର ମୋହନ ସେନାପତି, ମଧୁସୂଦନ ରାଓ ସମସ୍ତଙ୍କୁ ଆଜି ବିଶେଷ ଭାବରେ ସ୍ମରଣ କରିବାର ଦିନ ।

ତା' ସଙ୍ଗେ ସଙ୍ଗେ ସ୍ୱପ୍ନ ଦେଖିବାର ଦିନ । ଖାଲି ସ୍ୱପ୍ନ ଦେଖି କିଛି ଲାଭ ନାହିଁ । ସେ ସ୍ୱପ୍ନକୁ ସାକାର କରିବାକୁ ହେବ । ସେ ସ୍ୱପ୍ନ ହେଉଛି ଆମେ ଓଡ଼ିଶାକୁ ଭାରତର ଶ୍ରେଷ୍ଠ ରାଜ୍ୟରେ ପରିଣତ କରିବା । ଓଡ଼ିଆଜାତିକୁ ଭାରତବର୍ଷର ଏକ ଗୌରବମୟ ଜାତିରେ ପରିଣତ କରିବା । ସ୍ୱପ୍ନ ନଦେଖିଲେ କେବେହେଲେ ସ୍ୱପ୍ନକୁ ସାକାର କରିବା ପାଇଁ ସଂକଳ୍ପ ଆସେ ନାହିଁ । ସେଥିପାଇଁ ଆଜିର ଦିନରେ ମୁଁ ଆପଣମାନଙ୍କୁ ବିଶେଷ ଭାବରେ ନବଯୁବକମାନଙ୍କୁ ଆହ୍ୱାନ କରିବା ପାଇଁ ଚାହେଁ । ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶରେ ପରିଣତ ହୋଇଛି । ଆଜି ଅନ୍ୟତମ ସ୍ୱପ୍ନ ଆମକୁ ସାର୍ଥକ କରିବା ପାଇଁ ହେବ ଏବଂ ଓଡ଼ିଶାକୁ ଭାରତର ଶ୍ରେଷ୍ଠ ରାଜ୍ୟରେ ପରିଣତ କରିବା ପାଇଁ ପଡ଼ିବ । ସେଥିପାଇଁ ଯାହାକିଛି ଉପାଦାନ ଦରକାର, ସବୁ ଓଡ଼ିଶାରେ ଅଛି । ଓଡ଼ିଶାରେ ମାଟିତଳେ ବିପୁଳ ବିଭବ ରହିଛି । ଖଣିଜ ପଦାର୍ଥ ରହିଛି, ବିସ୍ତୀର୍ଣ୍ଣ ବେଳାଭୂମି ରହିଛି, ଶାନ୍ତିପ୍ରିୟ ପରିଶ୍ରମୀ, ଲୋକଶକ୍ତି ଆମର ରହିଛି । ଓଡ଼ିଶାରେ ସବୁ କିଛି ଅଛି । ଯାହା ଭାରତରେ ଅଛି । ସେଥିପାଇଁ ଆମେ ଏକ ନୂତନ କାର୍ଯ୍ୟକ୍ରମ ପ୍ରସ୍ତୁତ କରି ଓଡ଼ିଶାକୁ ଗଢ଼ିବା ପାଇଁ ଚେଷ୍ଟା କରିବା ଏବଂ ନିଶ୍ଚିତ ଭାବରେ ସଫଳ ହେବା ।

ପୁଞ୍ଜି ବିନିଯୋଗ କରିବା ପାଇଁ ଆଜି ଯେଉଁମାନେ ଭାରତ ବର୍ଷକୁ ଆସୁଛନ୍ତି, ମହାରାଷ୍ଟ୍ର, ଗୁଜୁରାଟ, କର୍ଣ୍ଣାଟକ, ମାନ୍ଦ୍ରାସ ଆଦି ୪/୫ ଟି ରାଜ୍ୟ ଭିତରେ ଓଡ଼ିଶାକୁ ଏକ ଅଗ୍ରଗାମୀ ରାଜ୍ୟ ରୂପରେ ଗଣନା କରାଯାଉଛି । ଅଳ୍ପ କେତେଦିନ ପରେ ଓଡ଼ିଶା ତା ଭିତରେ ପ୍ରଥମ ଶ୍ରେଣୀ ରାଜ୍ୟରେ ପରିଣତ ହେବ । ଏହି ଗତ ସପ୍ତାହ ଭିତରେ ୨ଟି ବଡ଼ କାର୍ଯ୍ୟ ଆମର ସାଧନ କରାଯାଇଛି । ଗୋଟିଏ ହେଉଛି ଯେ ଧାମରାରେ ଏକ ପ୍ରଥମ ଶ୍ରେଣୀର ବନ୍ଦର ସ୍ଥାପନ କରାଯିବ । ଧାମରା ବାଲେଶ୍ୱରରେ ଏକ ଉପାନ୍ତ ଭାବରେ ପଡ଼ିରହିଥିଲା । ଧାମରା ପାଖରୁ ଭଦ୍ରକ ପର୍ଯ୍ୟନ୍ତ ଏକ ବିସ୍ତୀର୍ଣ୍ଣ ରାଜପଥ ନିର୍ମାଣ କରାଯିବ, ଯେଉଁ ରାଜପଥ ଏକ୍ସପ୍ରେସ ହାଇୱେର ତୁଲ୍ୟ ଗୁଣ ହେବ । ଏକ ରେଳପଥ ଭଦ୍ରକ ପର୍ଯ୍ୟନ୍ତ ନିର୍ମାଣ କରାଯିବ । ଧାମରାରେ ଯେଉଁ ବନ୍ଦର କରାଯିବ । ସେ ବନ୍ଦରରେ ୧୨ ନିୟୁତ ଟନର ଜିନିଷପତ୍ର ଯା ଆସ କରିପାରିବ ସେ କାର୍ଯ୍ୟକ୍ରମ ପାଇଁ ଅଷ୍ଟ୍ରେଲିଆର ଏକ ପୁଞ୍ଜିବିନିଯୋଗ ଦଳ ଆସି ଓଡ଼ିଶା ସରକାରଙ୍କ ସହିତ ଏକ ଚୁକ୍ତି ସ୍ୱାକ୍ଷର କରିଛନ୍ତି । ଏ ବନ୍ଦରକୁ ୩ ବର୍ଷ ଭିତରେ ସେମାନେ କାର୍ଯ୍ୟକାରୀ କରିବା ପାଇଁ ଯାଉଛନ୍ତି ।

ସେହିପରି ଭାବରେ ଗୋପାଳପୁର ବନ୍ଦର । ଗୋପାଳପୁର ବିଜନ ପ୍ରାଚୀନ କଳିଙ୍ଗର ରାଜଧାନୀ ଥିଲା, ଯାହାକୁ ଦନ୍ତପୁର କୁହାଯାଏ । ସେ ଦନ୍ତପୁର ଗୋପାଳପୁରର ନିକଟବର୍ତ୍ତୀ । ସେହି ଗୋପାଳପୁରରେ ଆଜି ଏସିଆର ବୃହତ୍ତମ ବନ୍ଦର ନିର୍ମିତ ହେବାପାଇଁ ଯାଉଛି । ଏଠାରେ ୨୮ ନିୟୁତ ଟନର ଜିନିଷପତ୍ର ଆମଦାନୀ ରପ୍ତାନୀ ହୋଇପାରିବ । ଭବିଷ୍ୟତରେ ତାହା ବଢ଼ି ୩୬ ନିୟୁତ ଟନ ହୋଇପାରିବ । ଗୋପାଳପୁର ବନ୍ଦର ନିର୍ମାଣ କରିବା ପାଇଁ ପୃଥିବୀର ୨୨ ଟି ପ୍ରଧାନ ବନ୍ଦର ନିର୍ମାଣକାରୀ ପୁଞ୍ଜି ବିନିଯୋଗ ସଂସ୍ଥା ବର୍ତ୍ତମାନ ଆମ ପାଖେ ଆସି ପହଞ୍ଚିଛନ୍ତି । ସେମାନଙ୍କ ଭିତରୁ ଯାହାକୁ ବଛାଯିବ ସେମାନେ ୩/୪ ବର୍ଷ ଭିତରେ ଏକ ସର୍ବୋତ୍କୃଷ୍ଟ ବନ୍ଦର ସେଠାରେ ନିର୍ମାଣ କରିବେ । ଏ ଦୁଇଟି ବନ୍ଦର ଛଡ଼ା ପାରାଦୀପ ବନ୍ଦରର ସମସ୍ତ ପ୍ରକାର ଉନ୍ନତି କରିବା ପାଇଁ ଏବଂ ସେଠାରେ ବିଭିନ୍ନ କଳକାରଖାନା ସ୍ଥାପନ କରିବା ପାଇଁ ଉଦ୍ୟମ କରାଯାଉଛି । ଗୋପାଳପୁରରେ ଦୁଇଟି ଇସ୍ପାତ କାରଖାନା ହେବାକୁ ଯାଉଛି । ତାକୁ କେହି ଅଟକାଇ ପାରିବେ ନାହିଁ । ମଝିରେ ମଝିରେ କେତେକ ଲୋକ ସନ୍ଦେହ ପ୍ରକାଶ କରୁଛନ୍ତି, ଟାଟାର ଇସ୍ପାତ କାରଖାନା ଗୋପାଳପୁରରେ କେବେହେଲେ ହୋଇପାରିବ ନାହିଁ । ମୁଁ ସେମାନଙ୍କୁ ଭରସା ଦେବା ପାଇଁ ଚାହେଁ ଟାଟାର ଇସ୍ପାତ କାରଖାନା ଗୋପାଳପୁରରେ ନିଶ୍ଚିତ ଭାବରେ ୪ ବର୍ଷ ଭିତରେ ହେବ । ତା'ପରେ ପରେ ଏଲ୍ ଆଣ୍ଡଟି ସଂସ୍ଥା ଅନ୍ୟ ଏକ ଇସ୍ପାତ କାରଖାନା ସେଠି ନିର୍ମାଣ କରିବ । ଯେଉଁ ସୁକିନ୍ଦା ଅଞ୍ଚଳ ଲୁହାପଥର ପାଇଁ ପ୍ରସିଦ୍ଧ, ସେଠାରେ ୨ ଟି ବଡ଼ ଇସ୍ପାତ କାରଖାନା ହେବାପାଇଁ ଯାଉଛି । ଗୋଟିଏ ମେସ୍କୋ, ଆଉ ଗୋଟିଏ ନୀଳାଚଳ ଇସ୍ପାତ ନିଗମ କରିବ । ତା' ଛଡ଼ା ଆହୁରି ଅନେକ ଇସ୍ପାତ କାରଖାନା ଏହି ୨/୩ ବର୍ଷ ଭିତରେ ଗୋଟିଏ ପରେ ଗୋଟିଏ କାର୍ଯ୍ୟକାରୀ ହେବା ପାଇଁ ଯାଉଛି । ଅନୁଗୁଳ ଏବଂ ଦାମନଯୋଡ଼ିରେ ଯେଉଁ ଆଲୁମିନିୟମ ଓ ଆଲୁମିନା କାରଖାନା ଅଛି, ସେହିପରି ଆଲୁମିନିୟମ ଏବଂ ଆଲୁମିନା କାରଖାନା କରିବାକୁ ଉଣ୍ଡାଲ, ଆଦିତ୍ୟ ବିଡ଼ଳା ଗ୍ରୁପ୍ ଓଡ଼ିଶା ସରକାରଙ୍କ ସହିତ ଚୁକ୍ତି କରିଛନ୍ତି । ଦୁଇଟି ବଡ଼ ବଡ଼ କାରଖାନା ୮୦୦୦ କୋଟି ଟଙ୍କା ବିନିମୟରେ ନିର୍ମାଣ କରାଯିବ । ସେହିପରି ଆଉ ତିନୋଟି ଆଲୁମିନିୟମ ଏବଂ ଆଲୁମିନା କାରଖାନା କାର୍ଯ୍ୟକାରୀ ହେବା ପାଇଁ ଯାଉଛି । ଖୁବ୍ ନିକଟରେ ସେ ସମ୍ପର୍କରେ ମଧ୍ୟ ଚୁକ୍ତିନାମା ସ୍ୱାକ୍ଷରିତ ହେବ । ତୈଳବିଶୋଧନଗାର ପାଇଁ ଗୁଜୁରାଟ ଏବଂ ବମ୍ବେ ଆଜି ଭାରତରେ ପ୍ରସିଦ୍ଧ ହୋଇ ଉଠିଛନ୍ତି । ସେମାନଙ୍କର ସମୃଦ୍ଧି ବଢ଼ିଛି । ସେହିପରି ତିନୋଟି ତୈଳବିଶୋଧନାଗାର ଓଡ଼ିଶାରେ ହେବା ପାଇଁ ଯାଉଛି । ଗୋଟିଏ ପାରାଦ୍ୱୀପଠାରେ, ଗୋଟିଏ ଦଇତାରିପୁରଠାରେ, ଆଉ ଗୋଟିଏ ମଧ୍ୟ ପାରାଦ୍ୱୀପ ନିକଟରେ ହେବା ପାଇଁ ଯାଉଛି । ଆମେ ଯେତେବେଳେ ସିଙ୍ଗାପୁର, ବ୍ୟାଙ୍କକ୍ ଯାଇଥିଲୁ ସେଠାରେ ଦେଖିଥିଲୁ ସେ ବନ୍ଦର ପାଖରେ ଅନେକ ବଡ଼ ବଡ଼ କଳକାରଖାନାକୁ ନେଇ ସେମାନେ ଏକ ଶିଳ୍ପନଗରୀ (Industrial Park) କରିଛନ୍ତି । ସେହିପରି ଇଣ୍ଡଷ୍ଟ୍ରିଆଲ୍ ପାର୍କ ଆମ ଓଡ଼ିଶାରେ ପାରାଦୀପ, ଗୋପାଳପୁର ଏବଂ ଧାମରାଠାରେ କରାଯିବ ।

ସବୁଠାରୁ ପ୍ରଧାନ କଥା ହେଉଛି କୃଷିର ବିସ୍ତାର । କୃଷି କ୍ଷେତ୍ରରେ ଆମେ ଏକ ବିପ୍ଳବ ଆଣିବା ପାଇଁ ଯାଉଚେ । ଓଡ଼ିଶାରେ ଯେତିକି କୃଷି ଉତ୍ପାଦନ ହେଉଛି ଏ ୪/୫ ବର୍ଷ ସମୟ ଭିତରେ ତାର ଦୁଇ ଗୁଣ ଉତ୍ପାଦନ ହେବ । ସେଥିପାଇଁ ଉତ୍କୃଷ୍ଟ ଧରଣର ବିହନ ଦରକାର । ତାହା ସଂଗୃହୀତ ହୋଇ ସାରିଲାଣି ଏବଂ ସେ ବିହନର ପ୍ରୟୋଗ ମଧ୍ୟ ଆରମ୍ଭ ହେଲାଣି । ଖାଲି ଧାନ ନୁହେଁ । ଚିନାବାଦାମ, କପା ଆଳୁ, କୋବି, ବିଲାତି ବାଇଗଣ ସବୁ କ୍ଷେତ୍ରରେ ବିଭିନ୍ନ ପ୍ରକାର ଖାଦ୍ୟଶସ୍ୟ ପ୍ରଚୁର ପରିମାଣରେ ଆମେ ଉତ୍ପାଦନ କରିବା । ଲଜ୍ଜାର କଥା ଯେ ଓଡ଼ିଶା ପଶ୍ଚିମବଙ୍ଗ ଉପରେ ନିର୍ଭର କରୁଛି ଆଳୁପାଇଁ । ପିଆଜ ପାଇଁ ନିର୍ଭର କରୁଛି ମହାରାଷ୍ଟ୍ରଉପରେ ପନିପରିବା ଉପରେ ନିର୍ଭର କରୁଛି ଆନ୍ଧ୍ର ଉପରେ । ସେ ଅବସ୍ଥାକୁ ଶୀଘ୍ର ଦୂରକରିବା ପାଇଁ ପଡ଼ିବ । ଆମର ଏଠୁ ସେସବୁ ରାଜ୍ୟକୁ ପନିପରିବା ଯିବା ଦରକାର । ଆମେ ନିଜେ ସ୍ୱାବଲମ୍ବୀ ହୋଇ ଯଥେଷ୍ଟ ପରିମାଣରେ ଫଳ,ଫୁଲ ସେ ସବୁ ରାଜ୍ୟକୁ ପଠେଇ ପାରିବା । ସେଥିପାଇଁ ବିପୁଳ ଉଦ୍ୟମ ଆରମ୍ଭ ହୋଇଛି ।

କୃଷି, ଶିଳ୍ପ, ପର୍ଯ୍ୟଟନ କ୍ଷେତ୍ରରେ ଓଡ଼ିଶାରେ ଯେଉଁସବୁ ସୁବିଧା ଅଛି ଖୁବ୍ କମ ରାଜ୍ୟରେ ସେ ସୁବିଧା ଅଛି । ଏପରି ସୁନ୍ଦର ସମୁଦ୍ର ଖୁବ୍ କମ ଜାଗାରେ ଅଛି । ତେଣୁ ପୁରୀ, କୋଣାର୍କ ଆଦି ଅଞ୍ଚଳକୁ ନେଇ ଓଡ଼ିଶାକୁ ଏକ ପର୍ଯ୍ୟଟନ କେନ୍ଦ୍ରରେ ଆମେ ପରିଣତ କରିବା ପାଇଁ ଯାଉଛେ ।

ଏହାଛଡ଼ା ଜଳସେଚନ ଦୁଇଗୁଣ ବଢ଼ିବା ପାଇଁ ଯାଉଛି । ଦୁଇବର୍ଷ ଭିତରେ ମରୁଡ଼ିକୁ ଆମେ ଓଡ଼ିଶାରୁ ଦୂରକରିବା । ମରୁଡ଼ି ଏକ ଅତୀତର ବିଷୟ ହୋଇପାରିବ । ଆମେ ଏଭଳି ଭାବରେ ଜଳସେଚନ ବ୍ୟବସ୍ଥା କରିବା, ଶସ୍ୟ ଉତ୍ପାଦନ କାର୍ଯ୍ୟକ୍ରମ ପ୍ରସ୍ତୁତ କରିବା ଯାହା ଫଳରେ ଚାଷୀମାନଙ୍କୁ ଆଉ ମରୁଡ଼ି ବାଧିବ ନାହିଁ । ସେ କାର୍ଯ୍ୟକ୍ରମ ମଧ୍ୟ ଏ ବର୍ଷଠାରୁ ଆରମ୍ଭ କରାଯାଉଛି । ସମସ୍ତ କ୍ଷେତ୍ରରେ ଓଡ଼ିଶାକୁ ଉଠେଇବା ପାଇଁ ବିପୁଳ କାର୍ଯ୍ୟକ୍ରମ ଗ୍ରହଣ କରାଯାଉଛି । ଏ କାର୍ଯ୍ୟକ୍ରମ କୌଣସି ସରକାର କରିପାରିବ ନାହିଁ, ଯଦି ଜନସାଧାରଣଙ୍କର ସହଯୋଗ ନ ରହିବ ।

ଓଡ଼ିଶାକୁ ସ୍ୱତନ୍ତ୍ର ପ୍ରଦେଶ କରିବା ପାଇଁ ଯେପରି ଭାବରେ ସାରା ଓଡ଼ିଶା ଜାଗରିତ ହୋଇଥିଲା ଆଜି ସେହିପରି ଓଡ଼ିଶାକୁ ଭାରତର ସମୃଦ୍ଧିଶାଳୀ ରାଜ୍ୟରେ ପରିଣତ କରିବା ପାଇଁ ଯଦି ସମଗ୍ର ଓଡ଼ିଆଜାତି ସ୍ୱପ୍ନାତୁର ନହୁଏ ତା' ହେଲେ ତା' କାର୍ଯ୍ୟକାରୀ ହେବନାହିଁ । ନିଶ୍ଚିତ ଭାବରେ ଆଗାମୀ ୩/୪ ବର୍ଷ ମଧ୍ୟରେ ଏ ସ୍ୱପ୍ନ ସାକାର ହେବ । ସେଥିପାଇଁ ଏ ସରକାର ପ୍ରତିଜ୍ଞାବଦ୍ଧ । ମୋର ବିଶ୍ୱାସ ସମଗ୍ର ଓଡ଼ିଆ ଜାତି ସରକାର ପଛରେ ରହିବ ଏବଂ ତାକୁ କାର୍ଯ୍ୟକାରୀ କରିବ ।

(୧୯୯୭ ଏପ୍ରିଲ ୧ ଭୁବନେଶ୍ୱର ପ୍ରଦର୍ଶନୀ ପଡ଼ିଆଠାରେ ଉତ୍କଳ ଦିବସ ଉପଲକ୍ଷେ ମୁଖ୍ୟମନ୍ତ୍ରୀଙ୍କ ପ୍ରଦତ୍ତ ଅଭିଭାଷଣରୁ)

# ମହାକବି ଜୟଦେବ ଓ ଗୀତଗୋବିନ୍ଦ

ଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ତ୍ରିପାଠୀ

ସପ୍ତମ ଶତାବ୍ଦୀ ପୂର୍ବରୁ ଗଙ୍ଗବଂଶୀୟ ରାଜାମାନେ କଳିଙ୍ଗରେ ରାଜତ୍ୱ କରୁଥିଲେ । ଦକ୍ଷିଣରେ ସିଂହାଚଳଠାରୁ ଉତ୍ତରରେ ଋଷିକୁଲ୍ୟା ନଦୀ ମଧ୍ୟରେ ସେମାନଙ୍କର ରାଜ୍ୟ ସୀମିତ ହୋଇଥିଲା । ତାଙ୍କ ରାଜ୍ୟର କେନ୍ଦ୍ରରେ ଥିଲା ବିଶାଳ ମହେନ୍ଦ୍ର ପର୍ବତମାଳା । ମହେନ୍ଦ୍ର ଶିଖର ଦେଶରେ ସେହି ଗଙ୍ଗ ରାଜାମାନଙ୍କର ଇଷ୍ଟ ଦେବତା ଗୋକର୍ଣ୍ଣେଶ୍ୱର ଶିବଙ୍କର ମନ୍ଦିର ପ୍ରତିଷ୍ଠା ଲାଭ କରିଥିଲା । ଗୁପ୍ତ ଯୁଗରେ କଳିଙ୍ଗ ସାମ୍ରାଜ୍ୟରେ ଆଧିପତ୍ୟ ବିସ୍ତାର କରିଥିବା ମାଠର ବଂଶୀୟ ରାଜାମାନେ ତାହା ନିର୍ମାଣ କରିଥିଲେ । ସେମାନଙ୍କର ରାଜଧାନୀର ନାମ ଥିଲା ସିଂହପୁର ।

ମାଠର ରାଜବଂଶର ପତନ ପରେ କଳିଙ୍ଗର ପ୍ରାଚୀନ ଗଙ୍ଗବଂଶୀୟ ରାଜାମାନେ ବଂଶଧାରା ତଟବର୍ତ୍ତୀ କଳିଙ୍ଗନଗରରେ ତାଙ୍କର ରାଜଧାନୀ ସ୍ଥାପନ କଲେ । ଅଦ୍ୟାପି ତାହା ଆନ୍ଧ୍ରପ୍ରଦେଶର ଶ୍ରୀକାକୁଲମ୍ ଜିଲ୍ଲାର 'ନଗରୀ କଟକ' ନାମରେ ଅଭିହିତ ହେଉଛି । ସେହି ଗ୍ରାମକୁ ଲାଗି ମୁଖଲିଙ୍ଗମ୍ ନାମକ ଅନ୍ୟ ଏକ ଗ୍ରାମରେ ମଧୁକେଶ୍ୱର ଶିବ ମନ୍ଦିର ଖ୍ରୀ: ଦଶମ ଶତାବ୍ଦୀରେ ଗଙ୍ଗବଂଶୀୟ ମହାରାଜା ମଧୁ କାମାର୍ଣ୍ଣବଙ୍କ ରାଜତ୍ୱ କାଳରେ ନିର୍ମିତ ହୋଇଥିଲା । କଳିଙ୍ଗ ନଗର ନିକଟରେ ସେହି ମନ୍ଦିର ରହିଥିବାରୁ ସେଥିରେ ସେବକମାନେ କାଦିମ୍ବୀ ଜାତିରୁ ନିଯୁକ୍ତ ହୋଇଥିଲେ । ସେମାନେ ପ୍ରାଚୀନ କଳିଙ୍ଗର ବ୍ରାହ୍ମଣ ବୋଲି ଦାବୀ କରନ୍ତି ।

ମଧୁକେଶ୍ୱର ମନ୍ଦିର ଗଠିତ ହେଲାପରେ ରାଜା ମଧୁକାମାର୍ଣ୍ଣବଙ୍କ ପୁତ୍ର ବଜ୍ରହସ୍ତ ଦେବ ସେହି ଶୈବପୀଠର ବିଭିନ୍ନ ଉନ୍ନତିକର କାର୍ଯ୍ୟ ସମ୍ପାଦନ କରିବାକୁ ଯାଇ ମଧୁକେଶ୍ୱର ମନ୍ଦିରର ସମସ୍ତ ନୀତି ନିୟନ୍ତ୍ରଣ କରିଥିଲେ । ତାଙ୍କର ମାତୁଳାଳୟ ଦକ୍ଷିଣ ଭାରତର ବୈଦୁମ୍ବ ରାଜ ପରିବାରରେ ହୋଇଥିବାରୁ ସେ ଅଞ୍ଚଳର କେତେକ ନର୍ତ୍ତକ ନର୍ତ୍ତକୀଙ୍କୁ ଅଣାଇ କଳିଙ୍ଗରେ ସେମାନଙ୍କୁ ଗ୍ରାମଦାନ କରିଥିବା ପ୍ରସଙ୍ଗ ତାଙ୍କ ତାମ୍ର ଶାସନମାନଙ୍କରୁ ଉପଲବ୍ଧ ହୁଏ । କ୍ରମେ ସେହି ନର୍ତ୍ତକୀମାନଙ୍କର ବଂଶ ବୃଦ୍ଧି ଲାଭ କରି କଳିଙ୍ଗ ନଗରଠାରୁ ପ୍ରାୟ ୧୨ ମାଇଲ୍ ଦୂରସ୍ଥ ସିନ୍ଧୁ ତଟରେ ଅବସ୍ଥିତ ଶ୍ରୀ କୂର୍ମପାଟକ ଗ୍ରାମରେ ସେହି ନର୍ତ୍ତକୀମାନଙ୍କ ପାଇଁ ବସ୍ତି ନିର୍ମାଣ କରାଯାଇଥିଲା । ସେଠାରେ ଶ୍ରୀ କୂର୍ମ ଅବତାର ବିଷ୍ଣୁ ମନ୍ଦିର ମଧ୍ୟ ଅବସ୍ଥିତ । ତେଣୁ ଦକ୍ଷିଣ ଭାରତରୁ ଉଠି ଆସିଥିବା ଶ୍ରୀବୈଷ୍ଣବ ସମ୍ପ୍ରଦାୟ ସେହି ମନ୍ଦିରରେ ରହି ଛାତ୍ରମାନଙ୍କୁ ସଂସ୍କୃତ, ସାହିତ୍ୟ ଓ ଧର୍ମଶାସ୍ତ୍ର ଶିକ୍ଷା ଦେଉଥିଲେ । 'ସାନି' ବା ନର୍ତ୍ତକୀମାନଙ୍କ ଶିକ୍ଷା ପାଇଁ ମଧ୍ୟ ସେଠାରେ ଏକ ସଙ୍ଗୀତ ଶାଳାର ବ୍ୟବସ୍ଥା ହୋଇଥିଲା ।

ନୃତ୍ୟ ସଂଗୀତ ପଞ୍ଚମ ବେଦ ରୂପେ ଗଣ୍ୟ ହେଉଥିଲା ଏବଂ ସେଥିପାଇଁ ଉପଯୁକ୍ତ ଗୁରୁମାନେ ସେଥିରେ ନିଯୁକ୍ତ ହୋଇଥିଲେ । ପ୍ରାଚୀନ ଗଙ୍ଗବଂଶୀୟ ରାଜାମାନେ କଳିଙ୍ଗରେ ଦୀର୍ଘ ବର୍ଷ ଧରି ରାଜତ୍ୱ କଲା ପରେ ସେହି ବଂଶରେ ବଜ୍ରହସ୍ତଙ୍କ ପୌତ୍ର ପ୍ରବଳ ପରାକ୍ରାନ୍ତ ଚୋଡ଼ଗଙ୍ଗ ଦେବ ଜନ୍ମଲାଭ କଲେ ।

ଯୌବନରେ ପଦାର୍ପଣ କଲାପରେ ଚୋଡଗଙ୍ଗ ଦେବ ପ୍ରଥମେ କଳିଙ୍ଗର ପୂର୍ବ ଦିଗରେ ଅବସ୍ଥିତ ଉତ୍କଳ ରାଜ୍ୟ ଆକ୍ରମଣ କରି ସେଠାରେ ରାଜଧାନୀ ମହାନଦୀ କୂଳରେ ଥିବା ଯଯାତି ନଗରକୁ ଅଧିକାର କଲେ । ଉତ୍କଳ ରାଜ୍ୟ ସେତେବେଳେ ସୋମବଂଶୀ ରାଜା କର୍ଣ୍ଣଦେବଙ୍କ ଅଧୀନରେ ଥିଲା । ଯୁଦ୍ଧରେ ସୋମବଂଶ ବା ତଥାକଥିତ କେଶରୀ ବଂଶ ନିଶ୍ଚିହ୍ନ ହୋଇଗଲା । ଉତ୍କଳ ଜୟ କଲାପରେ କଳିଙ୍ଗର ପଶ୍ଚିମ ଦିଗରେ ଅବସ୍ଥିତ ବେଙ୍ଗିର ଚାଲୁକ୍ୟ ବଂଶୀୟ ରାଜାଙ୍କୁ ପରାସ୍ତ କରି ତାଙ୍କ ରାଜ୍ୟ କଳିଙ୍ଗରେ ମିଶାଇ ଦେବାରୁ ପୂର୍ବରେ ଗଙ୍ଗା ନଦୀଠାରୁ ପଶ୍ଚିମରେ ଗୋଦାବରୀ ପର୍ଯ୍ୟନ୍ତ ସମସ୍ତ ସାମ୍ରାଜ୍ୟ କଳିଙ୍ଗର ଅନ୍ତର୍ଭୁକ୍ତ ହେଲା । ୧୧୧୨ ଖ୍ରୀଷ୍ଟାବ୍ଦରେ ଚୋଡ଼ଗଙ୍ଗଙ୍କ ସାମ୍ରାଜ୍ୟ ପ୍ରସାରିତ ହେବାରୁ ସେ ନିଜ ରାଜଧାନୀ ବଂଶଧାରା ତଟରୁ ଉଠାଇ ଆଣି ମହାନଦୀ ତଟରେ ସ୍ଥାପନ କଲେ ଓ ସେଥିର ନାମ ଦେଲେ ''ବାରାଣସୀ କଟକ'' ।

ଚୋଡ଼ଗଙ୍ଗ ଉତ୍କଳ ଓ ବଙ୍ଗ ଜୟ କରି ତାଙ୍କ ରାଜ୍ୟ ଗଙ୍ଗାନଦୀ ପର୍ଯ୍ୟନ୍ତ ବିସ୍ତାର କରିଥିଲେ ସୁଦ୍ଧା, ଅଧିକୃତ ଅଞ୍ଚଳରେ ଶାନ୍ତି ଓ ସ୍ଥିରତା କିଛି କାଳ ପର୍ଯ୍ୟନ୍ତ ପ୍ରତିଷ୍ଠା ହୋଇପାରିନଥିଲା । ତେଣୁ ମହାନଦୀ ତଟସ୍ଥିତ ବାରାଣସୀ କଟକରେ କଳିଙ୍ଗର କେତେକ ସୈନିକଙ୍କୁ ରଖାଇ ସେ ନିଜେ ସପରିବାର କଳିଙ୍ଗ ନଗରସ୍ଥ ପୈତୃକ ରାଜଧାନୀରେ ୧୧୨୬ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ବାସ କରିଥିବା ଅନୁମିତ ହୁଏ । ଚୋଡ଼ଗଙ୍ଗ ନିଜେ 'ପରମ ମାହେଶ୍ୱର' 'ପରମ ବୈଷ୍ଣବ' ଓ 'ପରମ ବ୍ରାହ୍ମଣ୍ୟ' ଉପାଧି ବ୍ୟବହାର କରିଥିବାରୁ ସେ ଶୈବ, ବୈଷ୍ଣବ ଓ ଶାକ୍ତ ଗୁରୁମାନଙ୍କ ଠାରୁ ମନ୍ତ୍ର ଦୀକ୍ଷା ଗ୍ରହଣ କରିଥିଲେ । ରାଜ୍ୟରେ ଶାନ୍ତି ଓ ସ୍ଥିରତା ଦେଖା ଦେବା ପରେ ୧୧୨୬ ଖ୍ରୀଷ୍ଟାବ୍ଦରେ ପ୍ରଥମେ ଉତ୍କଳର ବାରାଣସୀ କଟକସ୍ଥ

ରାଜପ୍ରାସାଦରେ ବାସ କରିଥିବା ସମ୍ଭବ । ୧୧୨୮ ଖ୍ରୀଷ୍ଟାବ୍ଦରେ ତାଙ୍କର ଶ୍ରୀକ୍ଷେତ୍ର (ପୁରୀ)ରେ ଶ୍ରୀପୁରୁଷୋତ୍ତମଙ୍କ ସମ୍ମୁଖରେ ପ୍ରଥମ ଅଙ୍କ ପ୍ରଚଳିତ ହେଲା । ୧୧୩୯ ଖ୍ରୀଷ୍ଟାବ୍ଦ ପୂର୍ବରୁ ତାଙ୍କର ବଙ୍ଗ ବିଜୟ ସମ୍ପୂର୍ଣ୍ଣ ହୋଇଥିଲା ।

ମହାରାଜା ଚୋଡ଼ଗଙ୍ଗ ତାଙ୍କର ସେହି ମହାନ୍ କୀର୍ତ୍ତିକୁ ଅଧିକ ଜନପ୍ରିୟ କରିବା ସକାଶେ ଗୋଟିଏ ବିଶାଳ ପ୍ରାସାଦ ଶ୍ରୀକ୍ଷେତ୍ରରେ ଗଠନ କଲେ । ଉପଯୁକ୍ତ ଶିଳ୍ପୀ ତଥା କର୍ମକାରମାନଙ୍କୁ ନବନିର୍ମିତ ମନ୍ଦିର ଗଠନ କାର୍ଯ୍ୟରେ ନିଯୁକ୍ତ କରି ନିଜେ ସେଥିର ତଦାରଖ ପାଇଁ ଶ୍ରୀକ୍ଷେତ୍ରସ୍ଥ ରାଜପ୍ରାସାଦରେ ରହି ଶେଷ ଜୀବନ କଟାଇବାକୁ ସ୍ଥିର କଲେ । ତେଣୁ ସେ ବୃଦ୍ଧ ବୟସରେ ରାଜ୍ୟର ଶାସନଭାର ପୁତ୍ର ହସ୍ତରେ ଛାଡ଼ି ଦେବାକୁ ସ୍ଥିର କରିଥିବା ସୁବିଦିତ । ସେ ଏକ ଦାନପତ୍ର (ତାମ୍ର ଶାସନ) ରେ ୧୦୬୪ ଶକାବ୍ଦ ଅର୍ଥାତ୍ ୧୧୪୨ ମସିହା ଧନୁ ମାସରେ ତାଙ୍କ ଜ୍ୟେଷ୍ଠପୁତ୍ର କାମାର୍ଣ୍ଣବ ଦେବଙ୍କର ମୂର୍ଦ୍ଧାଭିଷେକ ଶ୍ରୀ ପୁରୁଷୋତ୍ତମ (ପୁରୀ)ରେ କରାଇଥିବା ସୂଚନା ମିଳେ ।

ଚୋଡ଼ଗଙ୍ଗଦେବ ପୁରୀରେ ପୂର୍ବରୁ ଥିବା ଏକ ଜୀର୍ଣ୍ଣ ଦେଉଳକୁ ସଂସ୍କାର କରିବାକୁ ଯାଇ ଜଗନ୍ନାଥଙ୍କର ନୂତନ ପ୍ରାସାଦ ନିର୍ମାଣ କଲେ । ଏହି ପ୍ରାସାଦର ଗର୍ଭ ଗୃହ ପ୍ରତିଷ୍ଠା ବେଳେ ଚୋଡ଼ଗଙ୍ଗଦେବ ଜ୍ୟେଷ୍ଠପୁତ୍ର କାମାର୍ଣ୍ଣବଦେବଙ୍କୁ ଯୁବରାଜ ପଦରେ ଅଭିଷିକ୍ତ କଲେ । ଏହି ଦୁଇଟି ଉତ୍ସବ ଏକ ସଙ୍ଗରେ ଅନୁଷ୍ଠିତ ହେଲା । ଏହି ଉତ୍ସବରେ ପ୍ରଥମ ଥର ପାଇଁ ନାମ ସଂକୀର୍ତ୍ତନର ପ୍ରଚଳନ କରାଯାଇଥିବା ବିଷୟ କବି ମାଧବ ପଟ୍ଟନାୟକ ତାଙ୍କ ରଚିତ ବୈଷ୍ଣବ ଲୀଳାମୃତ ଗ୍ରନ୍ଥରେ ଉଲ୍ଲେଖ କରିଅଛନ୍ତି । ଚୋଡ଼ଗଙ୍ଗଦେବ ଗୋଦାବରୀ ନଦୀକୂଳରୁ ମୃତ୍ତିକା ଅଣାଇ ସେଥିରେ ମୃଦଙ୍ଗ ନିର୍ମାଣ କରାଇଲେ ଏବଂ ସେହି ମୃଦଙ୍ଗ ବ୍ୟବହାରରେ ଶ୍ରୀମନ୍ଦିରରେ ପ୍ରଥମେ ନାମସଂକୀର୍ତ୍ତନ ପ୍ରଚଳିତ ହେଲା । ହରି ଲୀଳା ଗାନ କରିବା ପାଇଁ ଚୋଡ଼ଗଙ୍ଗଦେବ କାହ୍ନୁଣୀ ମାହାରୀମାନଙ୍କୁ ନିଯୁକ୍ତ କଲେ । ଏହି କାହ୍ନୁଣୀ ମାହାରୀମାନଙ୍କ ନୃତ୍ୟକୁ କବି 'ରାହାସନୃତ୍ୟ' ଆଖ୍ୟା ପ୍ରଦାନ କରିଅଛନ୍ତି । 'ଗୀତଗୋବିନ୍ଦକାର ଜୟଦେବଙ୍କ ପ୍ରସଙ୍ଗ ଉଲ୍ଲେଖ କରି ଗୀତଗୋବିନ୍ଦକୁ ଏବଂ ସେହି ଗୀତର ତାଳେ ତାଳେ ନୃତ୍ୟ କରୁଥିବା ପଦ୍ମାବତୀଙ୍କର ସଂଯୋଗକୁ କବି 'ରାହାସ' ନାମରେ ନାମିତ କରିଅଛନ୍ତି । ପରବର୍ତ୍ତୀ ସମୟରେ 'ଗୀତଗୋବିନ୍ଦ' ଗାନ ଏକ ନିର୍ଦ୍ଦିଷ୍ଟ ସେବାରୂପେ ଶ୍ରୀମନ୍ଦିରରେ ପ୍ରଚଳିତ ହୋଇଥିବା ବିଷୟ ମଧ୍ୟ ଉଲ୍ଲେଖ କରାଯାଇଅଛି । ଶ୍ରୀମନ୍ଦିରରେ ରାହାସ ନୃତ୍ୟ ଲାଗି 'ଗୀତଗୋବିନ୍ଦ' ଗାନ ନୃତ୍ୟ ଏକ ନିର୍ଦ୍ଦିଷ୍ଟ ସେବାରୂପେ ଅନଙ୍ଗ ଭୀମଦେବ ପ୍ରବର୍ତ୍ତନ କଲେ ଏବଂ ଏହି ଗାନ ଓ ନୃତ୍ୟର ସୁବିଧାଦୃଷ୍ଟି ଲାଗି ସେ ନାଟ ମନ୍ଦିର ନିର୍ମାଣ କରିଥିବା ବିଷୟ କବି ଲେଖିଛନ୍ତି । ଏଥିରୁ ଅନୁମାନ କରାଯାଏ ଯେ ଚୋଡ଼ଗଙ୍ଗ ଦେବ ଶ୍ରୀମନ୍ଦିରର ଗର୍ଭଗୃହ (ବିମାନ) ଓ ଜଗମୋହନ ଅଂଶର ନିର୍ମାଣ କାର୍ଯ୍ୟ ସମ୍ପୂର୍ଣ୍ଣ କରି ପ୍ରତିଷ୍ଠା କରିଥିଲେ । ପରେ ଅନଙ୍ଗଭୀମଦେବ ନାଟମନ୍ଦିର ନିର୍ମାଣ କଲେ । ଏହି ତଥ୍ୟ ଗଙ୍ଗବଂଶୀୟ ଅଭିଲେଖ ଦ୍ୱାରା ସମର୍ଥିତ ହୋଇଅଛି ଏବଂ ମାଦଳାପାଞ୍ଜିର ବିବରଣୀ ସହିତ ମଧ୍ୟ ଏହାର କୌଣସି ବିରୋଧ ନଥିବା ଲକ୍ଷ୍ୟ କରାଯାଉଅଛି ।

ଚୋଡ଼ଗଙ୍ଗଦେବ ବାର୍ଦ୍ଧକ୍ୟରେ ଉପନୀତ ହେବାରୁ ତାଙ୍କ ଜ୍ୟେଷ୍ଠପୁତ୍ର କାମାର୍ଣ୍ଣବ ଦେବଙ୍କୁ ଉତ୍ତରାଧିକାରୀ ରୂପେ ଯୌବରାଜ୍ୟ ଅର୍ପଣ କଲେ । କାମାର୍ଣ୍ଣବଦେବଙ୍କୁ ଯୁବରାଜ ପଦରେ ଅଭିଷେକ ଓ ଶ୍ରୀମନ୍ଦିର ପ୍ରତିଷ୍ଠା - ଏ ଦୁଇଟି ଉତ୍ସବ ଏକ ସଙ୍ଗରେ ପୁରୀ ମନ୍ଦିରରେ ସଂପନ୍ନ ହୋଇଥିବା କବି ବର୍ଣ୍ଣନା କରିଛନ୍ତି । ଖ୍ରୀ: ୧୧୪୨ର ଦୁଇ ଚାରିବର୍ଷ ପୂର୍ବରୁ ଏହି ଉତ୍ସବ ଆୟୋଜିତ ହୋଇଥାଇପାରେ । ଏଥିରୁ ପୁରୀ ମନ୍ଦିରର ନିର୍ମାଣକାଳ ସମ୍ପର୍କରେ ଏକ ନିର୍ଦ୍ଦିଷ୍ଟ ଧାରଣା ମିଳେ । ଏହି ଦୁଇଟି ଉତ୍ସବ ଏକ ସଙ୍ଗରେ ଅନୁଷ୍ଠିତ ହେଲାବେଳେ ଗୋଦାବରୀ ନଦୀକୂଳରୁ ମୃତ୍ତିକା ଅଣାଇ ସେଥିରେ ମୃଦଙ୍ଗ ତିଆରି କରାଗଲା ଓ ସେଥିରେ ପୁରୀ ମନ୍ଦିରରେ ନାମସଂକୀର୍ତ୍ତନ କରାଗଲା । ଗୋଦାବରୀ ନଦୀକୂଳରେ ମୃତ୍ତିକା ଆଣିବାର ଉଲ୍ଲେଖରୁ ଓଡ଼ିଶାରେ ନାମସଂକୀର୍ତ୍ତନର ଆରମ୍ଭ ମୂଳରେ ଦକ୍ଷିଣୀ ଅଳିବାର ଭକ୍ତଗୋଷ୍ଠୀର ନାମ ସଂକୀର୍ତ୍ତନ ପରମ୍ପରା ଅନୁସୃତ ହୋଇଥିବା ଅନୁମିତ ହୁଏ ।

ଶ୍ରୀମନ୍ଦିରରେ ହରିଲୀଳା ନୃତ୍ୟ ଓ ଗାନ ଲାଗି ଗଙ୍ଗେଶ୍ୱରଦେବ ଦକ୍ଷିଣରୁ କାହ୍ନୁଣୀ ମାହାରୀମାନ ଯୋଗାଇଲେ । ଦକ୍ଷିଣର ଶ୍ରୀକୂର୍ମ ମନ୍ଦିରରେ ଗଙ୍ଗବଂଶୀୟ ରାଜାମାନେ ଏହି ପ୍ରଥା ପ୍ରଚଳନ କରାଇଥିଲେ । କାହ୍ନୁଣୀ ମାହାରୀମାନଙ୍କୁ ଦେବଦାସୀ କୁହାଯାଉଥିଲା ।

ଶ୍ରୀମନ୍ଦିରରେ ମାହାରୀମାନଙ୍କ ନୃତ୍ୟକୁ କବି ଏଠାରେ 'ରାହାସ' ଆଖ୍ୟା ପ୍ରଦାନ କରିଛନ୍ତି । ଶ୍ରୀଜଗନ୍ନାଥ ମନ୍ଦିରରେ କବି ଜୟଦେବଙ୍କ ଗୀତଗୋବିନ୍ଦ ରଚନା ସମ୍ପର୍କରେ କବି ଏଠାରେ ଉଲ୍ଲେଖ କରିଛନ୍ତି । କବି ଜୟଦେବଙ୍କ ପତ୍ନୀ ନର୍ତ୍ତନ-କଳା-କୁଶଳିନୀ ପଦ୍ମାବତୀଙ୍କର ଗୀତଗୋବିନ୍ଦର ତାଳେ ତାଳେ ନୃତ୍ୟକୁ କବି 'ରାହାସ' ଆଖ୍ୟା ଦେଇଛନ୍ତି ।

ଗଙ୍ଗବଂଶୀୟ ସମ୍ରାଟ ଅନଙ୍ଗଭୀମଦେବ ତୃତୀୟ (କବି ଏହାଙ୍କୁ କେବଳ ଭୀମଦେବ ବୋଲି ଲେଖିଛନ୍ତି - ରାଜତ୍ୱ ସମୟ - ଖ୍ରୀ : ୧୨୧୧-୧୨୩୮ ) ଗୀତଗୋବିନ୍ଦ ଗାନ ଓ ନୃତ୍ୟକୁ ଶ୍ରୀମନ୍ଦିରରେ ଏକ ନିର୍ଦ୍ଦିଷ୍ଟ ସେବା ରୂପେ ପ୍ରବର୍ତ୍ତନ କଲେ । ଗୀତଗୋବିନ୍ଦ ଶ୍ରୀ ଜଗନ୍ନାଥଙ୍କର ଅତି ପ୍ରିୟ ମନେ କରି ରାଜା କେବୁଟି ଶାଢ଼ି ଯୋଗାଇଲେ ଏବଂ ସେହି ଦିନଠାରୁ ଏ ପ୍ରଥା ଚଳି ଆସୁଅଛି । ଅନଙ୍ଗଭୀମଦେବ ତୃତୀୟଙ୍କୁ କବି ନାଟ ମନ୍ଦିରର ନିର୍ମାତା ରୂପେ ଉଲ୍ଲେଖ କରିଛନ୍ତି । ବିମାନ ଓ ଜଗମୋହନ ସହିତ ଏହି ରାଜା ନାଟମନ୍ଦିର ମିଶାଇଲେ ।

ଚୋଡ଼ଗଙ୍ଗଦେବଙ୍କର ଉତ୍କଳ ଜୟ ପୂର୍ବରୁ ସୋମବଂଶୀୟ ରାଜାମାନଙ୍କ ରାଜତ୍ୱ କାଳରେ ନିର୍ମିତ କେତେକ ମନ୍ଦିରରେ ମଧ୍ୟ 'ଦାରିକା' ଓ 'ବେଶ୍ୟା'ମାନେ ନୃତ୍ୟ ପରିବେଷଣ ପାଇଁ ନିଯୁକ୍ତ ହେଉଥିଲେ । ଉଦାହରଣ ସ୍ୱରୂପ ମହାରାଜା ଉଦ୍ୟୋତ କେଶରୀଙ୍କ ମାତା ଓ ଯଯାତି ମହାଶିବଗୁପ୍ତଙ୍କର ରାଣୀ କୋଳାବତୀ ଦେବୀ ଭୁବନେଶ୍ୱର

ଠାରେ ବ୍ରହ୍ମେଶ୍ୱରଙ୍କର ମନ୍ଦିର ନିର୍ମାଣ କରାଇ ସେଥିରେ ନୃତ୍ୟ ସଂଗୀତ ପରିଚାଳନା ସକାଶେ ତିନିଜଣ ଉଦ୍ଭାବନାଳଙ୍କୃତା 'ଦାରିକା'ଙ୍କୁ ନିଯୁକ୍ତ କରିଥିଲେ । ସେହି ମନ୍ଦିର ସଂଲଗ୍ନ ଏକ ଶିଳାଲେଖରେ ଏ ସମ୍ପର୍କରେ ଏକ ଶ୍ଳୋକ ଖୋଦିତ ହୋଇଥିବା ଦେଖାଯାଏ ।

ସେହି ମନ୍ଦିରଟି ମହାରାଜା ଉଦ୍ୟୋତ କେଶରୀଙ୍କ ରାଜତ୍ୱର ଅଷ୍ଟାଦଶ ବର୍ଷରେ ଖୋଦିତ ହୋଇଥିଲା । ସୁତରାଂ ଚୋଡ଼ଗଙ୍ଗ ଉତ୍କଳ ଜୟ କଲାପରେ ଶ୍ରୀ ପୁରୁଷୋତ୍ତମଙ୍କ ପବିତ୍ର ଶ୍ରୀମନ୍ଦିରରେ ନୃତ୍ୟ ସଂଗୀତ ପରିଚାଳନା ସକାଶେ ବାରବନିତା 'ଦାରିକା'ମାନଙ୍କୁ ନିଯୁକ୍ତ ନକରି କଳିଙ୍ଗରୁ ସଙ୍ଗୀତ ବିଦ୍ୟାରେ ପାରଦର୍ଶିତା ଲାଭ କରିଥିବା 'ସାନି ସମ୍ପ୍ରଦାୟ'ର କେତେକ ପରିବାରଙ୍କୁ ଶ୍ରୀକୂର୍ମପାଟକରୁ ଅଣାଇ ଶ୍ରୀକ୍ଷେତ୍ରରେ ସେମାନଙ୍କ ସକାଶେ ସ୍ଥାୟୀ ବ୍ୟବସ୍ଥା କରିଥିଲେ । ସେହି ସାନି ସମ୍ପ୍ରଦାୟର ନର୍ତ୍ତକୀମାନଙ୍କୁ ତେଲେଙ୍ଗୀ ଭାଷାରେ 'ଗୁଡ଼ି-ସାନି' ବା 'ଗୁଡ଼ି ସେଟି' କୁହାଯାଉଥିଲା । ତେଲେଙ୍ଗୀ ଭାଷାରେ 'ଗୁଡ଼ି' ଶବ୍ଦର ଅର୍ଥ 'ମନ୍ଦିର' ଏବଂ 'ସାନି' ଶବ୍ଦର ଅର୍ଥ ନର୍ତ୍ତକୀ । ସେହି 'ଗୁଡ଼ିସାନି' ମାନଙ୍କୁ 'ଦେବଗଣିକା' ସଂଜ୍ଞାରେ ମଧ୍ୟ ଅଭିହିତ କରାଯାଉଥିଲା । ତେଣୁ ସେମାନେ ଦାରିକାଙ୍କ ପରି 'ବାରବନିତା' (ବେଶ୍ୟା) ବୋଲି କରୁନଥିଲେ । ସିଂହାଚଳ ମନ୍ଦିରରୁ ପ୍ରାପ୍ତ ଦ୍ୱିତୀୟ ଭାନୁଦେବଙ୍କ ରାଜତ୍ୱ କାଳରେ ଶିଳାଲେଖରୁ ଜଣାଯାଉଛି ଯେ, ସାନି ସମ୍ପ୍ରଦାୟର ଭାଇ, ଭଉଣୀ ସମସ୍ତେ ମିଶି ଦେବମନ୍ଦିରରେ ନୃତ୍ୟ ସଙ୍ଗୀତ ପରିଚାଳନା କରୁଥିଲେ । ଆଉ ମଧ୍ୟ ସେମାନଙ୍କ ମାତୃଭାଷା 'ତେଲେଙ୍ଗୀ' ହୋଇଥିଲେ ବୁଝା ଓଡ଼ିଆ ଭାଷା ସେମାନେ ଉତ୍ତମ ରୂପେ ବୁଝିପାରୁଥିଲେ । ତେଣୁ ଦେବମନ୍ଦିରରେ ସେମାନେ ଉଭୟ ଭାଷାରେ ଭକ୍ତିସଙ୍ଗୀତ ଗାନ କରିବା ସମ୍ଭବ ହେଲେ ମଧ୍ୟ ଶ୍ରୀପୁରୁଷୋତ୍ତମ କ୍ଷେତ୍ରରେ ଚୋଡ଼ଗଙ୍ଗଙ୍କ ପରି ଜଣେ ନୈଷ୍ଠିକ ବିଷ୍ଣୁଭକ୍ତ ପଣ୍ଡିତ ପ୍ରାକୃତ ଭାଷାରେ ଭକ୍ତି ସଂଗୀତ ଗାନ କରିବା ପରିବର୍ତ୍ତେ ଶୁଦ୍ଧ ସଂସ୍କୃତ ଭାଷାରେ ସଂଗୀତ ପରିବେଷଣ କରିବା ନିମନ୍ତେ ବ୍ୟବସ୍ଥା କରିଥିଲେ । ଚୋଡ଼ଗଙ୍ଗ ରାଜତ୍ୱ କାଳରେ କୌଣସି ପ୍ରାକୃତ ଭାଷା ରାଜକାର୍ଯ୍ୟରେ ବ୍ୟବହାର କରାଯାଉ ନଥିଲା । ସଂସ୍କୃତ ଭାଷାରେ କବି ଜୟଦେବଙ୍କ ରଚିତ 'ଗୀତଗୋବିନ୍ଦ' ସର୍ବପ୍ରଥମେ ସେହି ସାନି ସମ୍ପ୍ରଦାୟଙ୍କ ଦ୍ୱାରା ଶ୍ରୀ ମନ୍ଦିରରେ ପରିବେଷଣ କରାଯାଉଥିବା ସମ୍ଭବ । ତେଣୁ ସେହି ପଦ୍ଧତି ବହୁକାଳ ପର୍ଯ୍ୟନ୍ତ ଶ୍ରୀ ମନ୍ଦିରରେ ଏକ ମୁଖ୍ୟନୀତି ରୂପେ ପରିଚାଳିତ ହୋଇଥିବା ଜଣାଯାଏ । କଳିଙ୍ଗର ସେହି 'ସାନି ସମ୍ପ୍ରଦାୟ' ତଥା 'ମନ୍ଦିର ନର୍ତ୍ତକୀ'ମାନଙ୍କ ସଙ୍ଗେ କବି ଜୟଦେବଙ୍କ ସମ୍ପର୍କ ବିଷୟରେ ଅଧିକ ଆଲୋଚନା ପରବର୍ତ୍ତୀ ପରିଚ୍ଛେଦରେ କରାଯିବ ।

ଚୋଡ଼ଗଙ୍ଗ ଯେଉଁ ପ୍ରାଚୀନ ମନ୍ଦିରରେ ତ୍ରିବିମୂର୍ତ୍ତିଙ୍କୁ ସ୍ଥାପିତ କରିଥିଲେ ସେଥି ସମ୍ମୁଖରେ ନାଟ୍ୟଶାଳା ନିର୍ମିତ ହୋଇନଥିଲା । ତେଣୁ ଦେବ ନର୍ତ୍ତକୀମାନଙ୍କ ନୃତ୍ୟସଂଗୀତ ପରିଚାଳନା ପାଇଁ ସେହି ମନ୍ଦିର ସମ୍ମୁଖରେ ଶାସ୍ତ୍ରୋକ୍ତ ପଦ୍ଧତିରେ ଗୋଟିଏ ଅସ୍ଥାୟୀ ନୃତ୍ୟମଣ୍ଡପ ନିର୍ମିତ ହୋଇଥିଲା । ବହୁକାଳ ପରେ ସେହି ଅସ୍ଥାୟୀ ନୃତ୍ୟ-ମଣ୍ଡପ ସ୍ଥାନରେ ଆଧୁନିକ 'ମୁକ୍ତି ମଣ୍ଡପ' ଗଠିତ ହୋଇଥିବା ଜଣାଯାଏ ।

ପ୍ରଥମେ କୁହାଯାଇଛି ଯେ, ଶ୍ରୀକୂର୍ମପାଟକରେ 'ସାନି-ସମ୍ପ୍ରଦାୟ'ଙ୍କ ଏକ ସ୍ୱତନ୍ତ୍ର ବସତି ଥିଲା । ସେଠାରେ ଶାସ୍ତ୍ରୀୟ ସଂଗୀତ ଓ ନୃତ୍ୟ ଶିକ୍ଷା ପାଇଁ ବ୍ୟବସ୍ଥା ହୋଇଥିଲା । ଆଉ ମଧ୍ୟ ବିଶିଷ୍ଟ ପଣ୍ଡିତମାନେ ସେହି ପୁଣ୍ୟକ୍ଷେତ୍ରରେ ରହି ବିଦ୍ୟାର୍ଥୀମାନଙ୍କୁ ସଂସ୍କୃତ ସାହିତ୍ୟ ସଙ୍ଗେ ଧର୍ମଶାସ୍ତ୍ର ଓ ଦର୍ଶନ ଶାସ୍ତ୍ରରେ ଶିକ୍ଷା ଦେଉଥିଲେ । ସୁତରାଂ ଦେଶ ବିଦେଶରୁ ଛାତ୍ରମାନେ ଶ୍ରୀ କୂର୍ମେଶ୍ୱରଙ୍କ ମନ୍ଦିରରେ ରହି ବିଦ୍ୟାଭ୍ୟାସ କରୁଥିଲେ । ସେମାନଙ୍କ ମଧ୍ୟରେ ଜୟଦେବ ଥିଲେ ଜଣେ ଅତି ମେଧାବୀ ଛାତ୍ର । ସେ ସଂସ୍କୃତ ସାହିତ୍ୟରେ ଯଥେଷ୍ଟ ଜ୍ଞାନ ଅର୍ଜନ କଲାପରେ ଶାସ୍ତ୍ରୀୟ ସଙ୍ଗୀତ ଓ ନୃତ୍ୟ ଶିକ୍ଷା କରି ନିଜେ ସଂସ୍କୃତରେ ଗୀତ ରଚନା କରିବାକୁ ଲାଗିଲେ । ତାଙ୍କର ଅଧିକାଂଶ ଗୀତ ରାଧାକୃଷ୍ଣଙ୍କ ଲୀଳା ବିଷୟକ ଶୃଙ୍ଗାର ରସାତ୍ମକ ହୋଇଥିବାରୁ ତାହା ଶିକ୍ଷା କରିବାକୁ ସେଠାରେ ସାନି ସମ୍ପ୍ରଦାୟ ଉତ୍ସାହିତ ହେଲେ । ତଦବଧି ସେ କବି ଜୟଦେବ ନାମରେ ପରିଚିତ ହୋଇଥିବା ସମ୍ଭବ । ଜୟଦେବ ନିଜେ ବୈଦିକ ବ୍ରାହ୍ମଣ କୁଳରେ ଜନ୍ମି ଥିବାରୁ ସାହିତ୍ୟ ଓ ସଙ୍ଗୀତରେ ସୁନାମ ଅର୍ଜନ କରିଥିଲେ । ସାଧୁ ଉପାଧି ଗ୍ରହଣ କରି ସେ ଅଞ୍ଚଳରେ ବାସ କରୁଥିବା 'ସାନି ସମ୍ପ୍ରଦାୟ'ଙ୍କ ମଧ୍ୟରେ ପରମାରାଧ୍ୟ ଗୁରୁରୂପେ ସମ୍ମାନିତ ହୋଇଥିଲେ । ତେଣୁ ସେ ନିମ୍ବାର୍କ ଓ ମଧ୍ୱାଚାର୍ଯ୍ୟଙ୍କ ମତାନୁସାରେ ଭକ୍ତି ସଙ୍ଗୀତମାନ ସର୍ବସାଧାରଣରେ ପ୍ରଚାର କରିବାକୁ ଯାଇ 'ଗୀତ-ଗୋବିନ୍ଦ' ନାମକ ନାଟ୍ୟଶାଳା ରଚନା କରିଥିବା ସମ୍ଭବ । ନାଟ୍ୟଶାଳାମାନଙ୍କରେ ପ୍ରଦର୍ଶନ କରିବା ଉଦ୍ଦେଶ୍ୟରେ ଏକ 'ନାଟ୍ୟ-ଦଳ' ମଧ୍ୟ ସେ ଗଠନ କରିଥିବା ସମ୍ଭବ । ସେହି ନାଟ୍ୟଦଳର ଖ୍ୟାତି ଏବଂ 'ଗୀତ-ଗୋବିନ୍ଦ'ର ଅପୂର୍ବ ରାଧାକୃଷ୍ଣ ଲୀଳା ସର୍ବତ୍ର ପ୍ରଚାରିତ ହୋଇଥିଲା । ଏଣୁ ସେହି ନାଟ୍ୟଦଳ ସଙ୍ଗେ ଜୟଦେବଙ୍କୁ ଶ୍ରୀକୂର୍ମପାଟକରୁ ନିମନ୍ତ୍ରଣ କରି ଶ୍ରୀପୁରୁଷୋତ୍ତମ କ୍ଷେତ୍ରରେ ଶ୍ରୀମନ୍ଦିର ସମ୍ମୁଖସ୍ଥ ଅସ୍ଥାୟୀ ନାଟ୍ୟ-ମଣ୍ଡପରେ 'ଶ୍ରୀ ଗୀତ-ଗୋବିନ୍ଦ' ପରିବେଷିତ କରାଇବାକୁ ଚୋଡ଼ଗଙ୍ଗ ଉତ୍ସାହିତ ହୋଇଥିବେ । ଏହା ଏକ ଯୁକ୍ତିଯୁକ୍ତ କଳ୍ପନା ହୋଇଥିଲେ ମଧ୍ୟ, ସାଧୁ ଜୟଦେବଙ୍କ ସଙ୍ଗେ 'ସାନି-ସମ୍ପ୍ରଦାୟ'ର ସମ୍ପର୍କ ତଥା ସାହଚର୍ଯ୍ୟ ଭୁବନେଶ୍ୱରସ୍ଥ ଶ୍ରୀ ଲିଙ୍ଗରାଜ ମନ୍ଦିର ଭିତ୍ତି ସଂଲଗ୍ନ ନିମ୍ନୋକ୍ତ ଶିଳାଲେଖରୁ ଚୋଡ଼ଗଙ୍ଗଙ୍କ ଦ୍ୱିତୀୟ ପୁତ୍ର ରାଘବଦେବଙ୍କ ରାଜତ୍ୱ କାଳରେ (୧୧୫୬-୧୧୭୦ ଖ୍ରୀ: ମଧ୍ୟରେ) ଖୋଦିତ ହୋଇଥିଲା :

''ସ୍ୱସ୍ତି ଶ୍ରୀରାଘବଦେବସ୍ୟ..........ସୁ.......ଦି ୧୦ ବାରେ ବୁଧେ ଶ୍ରୀ କୀର୍ତ୍ତିବାସେଶ୍ୱରସ୍ୟ ପ୍ରୀତୟେ ମେଦ୍ଦମଦେବ୍ୟା ଯଦାଦ୍ୟାଦଶପ୍ରାଣବର୍ତ୍ତିସ୍ୟା ମାତାପିତରୋ କୋମିନାୟକଜ୍ କୃତ୍ତିବାସେଶ୍ୱରସ୍ୟ ପ୍ରୀତୟେ ଦୀପଂ ଦଦ୍ୟାତ୍ । କୂର୍ମପାଟକପ୍ରବର ସାଧୁ ପ୍ରଧାନ ଜୟଦେବ ସମବାୟ ବୈଧେୟ ଗ୍ରାମ ଦାସପୁର ଷୋଡ଼ଶୋଦ୍ରଗ୍ରାହ୍ୟା ବାହେ୍ୟା ଖଣ୍ଡକ୍ଷେତ୍ର ସର୍ବ (ସ) ତ୍ କୀର୍ତ୍ତିବାସେଶ୍ୱରାୟ ।''

ଏଥିର ସଂକ୍ଷିପ୍ତ ଅର୍ଥ ହେଉଛି, ଶ୍ରୀରାଘବଦେବଙ୍କର ରାଜତ୍ୱକାଳରେ ଶ୍ରୀକୀର୍ତ୍ତିବାସେଶ୍ୱର (ଶ୍ରୀ ଲିଙ୍ଗରାଜଙ୍କ) ପ୍ରୀତି ସମ୍ପାଦନ ପାଇଁ ମେଦ୍ଦମ ଦେବୀ ଏବଂ ତାଙ୍କ ମାତା ଓ ପିତା କୋମିନାୟକ ସମସ୍ତେ ମିଶି ପ୍ରତ୍ୟେକ ଗୋଟିଏ ଲେଖାରେ ଅଖଣ୍ଡଦୀପ ଦାନ କରିଥିଲେ । ସେତେବେଳେ କୂର୍ମପାଟକର ସୁପ୍ରସିଦ୍ଧ (ପ୍ରବର) ସାଧୁ ପ୍ରଧାନ ଜୟଦେବ

(ସମବାୟ)ଙ୍କ ଠାରୁ କ୍ରୟ କରି ବାନେଦାଖଣ୍ଡ କ୍ଷେତ୍ରରେ ସମସ୍ତ ସ୍ୱତ୍ୱ ଲିଙ୍ଗରାଜ ମେଶ୍ୱରଙ୍କୁ ଦାନ କରାଗଲା ।

ଏଥିରୁ ସ୍ପଷ୍ଟ ପ୍ରମାଣ ମିଳୁଛି ଯେ ମେଦ୍ରମଦେବଙ୍କ ମାତା ନଗମା ଏବଂ ଆଉ ଏଭଳକା 'ଗୁଡ଼ିସାନି' (ମନ୍ଦିର ନର୍ତ୍ତକୀ) ଉପାଧିରେ ଭୂଷିତ ହୋଇ ଚୋଡ଼ଗଙ୍ଗଙ୍କ ରାଜତ୍ୱର ୫୩ ବର୍ଷ ଅର୍ଥାତ୍ ୧୧୨୮ ଖ୍ରୀଷ୍ଟାବ୍ଦରେ ଶ୍ରୀକୂର୍ମପାଟକ ନିକଟବର୍ତ୍ତୀ ମଧୁକେଶ୍ୱର ମନ୍ଦିରରେ ଅଖଣ୍ଡ ଦୀପଦାନ କରିଥିଲେ । ତେଣୁ କବି ଜୟଦେବଙ୍କ ମେଦ୍ରମଦେବଙ୍କ ମାତାଙ୍କୁ ସଙ୍ଗୀତ ଓ ନୃତ୍ୟଶିକ୍ଷା ଦେଉଥିବାରୁ ମେଦ୍ରମଦେବୀ ତାଙ୍କୁ ସମ୍ମାନିତ ପରମଗୁରୁ ରୂପେ ଭକ୍ତି ସହକାରେ ''କୂର୍ମ ପାଟକ ପ୍ରବର'' ଓ ''ସାଧୁ ପ୍ରଧାନ'' ରୂପେ ଅଭିହିତ କରିଛନ୍ତି । ସେହି ଲିଙ୍ଗରାଜ ମନ୍ଦିରରେ ମେଦ୍ରମଦେବୀ ଓ ତାଙ୍କ ପିତା ଦୀପଦାନ କଲାବେଳେ ସାଧୁ ପ୍ରଧାନ ଜୟଦେବଙ୍କ ବୟସ ପ୍ରାୟ ୬୦ ବର୍ଷ ହୋଇଥିବା ସମ୍ଭବ । କାରଣ ଚୋଡ଼ଗଙ୍ଗ ତାଙ୍କୁ ଓ ତାଙ୍କ ଦଳର ନର୍ତ୍ତକୀମାନଙ୍କୁ ଶ୍ରୀକୂର୍ମପାଟକରୁ ଶ୍ରୀକ୍ଷେତ୍ରକୁ ନିମନ୍ତ୍ରଣ କରିବା ସମୟ ଲିଙ୍ଗରାଜ ମନ୍ଦିର ଅଭିଲେଖର ଅନ୍ୟୁନ ୨୦ ବର୍ଷ ପୂର୍ବରୁ ହୋଇଥିଲା । ସେତେବେଳେ ଜୟଦେବଙ୍କ ବୟସ ପ୍ରାୟ ୪୦ ହେବା ସମ୍ଭବ ।

କୂର୍ମପାଟକକୁ ସେ ଛାତ୍ର ହିସାବରେ ଯାଇ ସେଠାରେ ଶାସ୍ତ୍ରୀୟ ସଙ୍ଗୀତ ଶିକ୍ଷା କରି ନିଜେ ନୃତ୍ୟକଳାରେ ପାରଦର୍ଶିତା ଲାଭ କରିଥିଲେ ନିଧିଳ ଭାଷାରେ ସଂସ୍କୃତ ଗୀତ ରଚନା କରିବା ସମ୍ଭବ ହୋଇ ପାରିଥାନ୍ତା ।

ଏଠାରେ କହିବା ଆବଶ୍ୟକ ଯେ, କଳିଙ୍ଗରେ ସଙ୍ଗୀତ ଖ୍ରୀଷ୍ଟପୂର୍ବ ଯୁଗରୁ ପ୍ରାଧାନ୍ୟ ବିସ୍ତାର କରିଥିଲା । ସେହି ଗାନ୍ଧର୍ବ ବିଦ୍ୟାକୁ 'ପଞ୍ଚମ-ବେଦ' ବୋଲି କୁହାଯାଉଥିଲା । ଭାରତବର୍ଷରେ ସଂଗୀତ ପରିଚାଳନାର ସର୍ବପ୍ରଥମ ନିଦର୍ଶନ ଖ୍ରୀଷ୍ଟପୂର୍ବ ଯୁଗରେ କଳିଙ୍ଗ ସମ୍ରାଟ ଖାରବେଳଙ୍କ ଉଦୟଗିରି ଶିଳାଲେଖରେ ଖୋଦିତ ହୋଇଥିବା ଦେଖାଯାଏ । ଖାରବେଳ ତାଙ୍କ ରାଜତ୍ୱର ତୃତୀୟ ବର୍ଷରେ 'ଗାନ୍ଧର୍ବ-ବେଦବିଦ୍'ମାନଙ୍କ ଦ୍ୱାରା ନୃତ୍ୟ-ଗୀତ ବାଦ୍ୟରୂପକ ସଙ୍ଗୀତ ପରିଚାଳନା କରାଇ ନଗରବାସୀଙ୍କ ଆନନ୍ଦବର୍ଦ୍ଧନ କରିଥିଲେ ।

ଭରତଙ୍କ ନାଟ୍ୟଶାସ୍ତ୍ର ଏଥିର ପ୍ରାୟ ୪୦୦ ବର୍ଷ ପରେ ଲେଖା ହୋଇଥିବା ପଣ୍ଡିତମାନଙ୍କ ମତରୁ ଜଣାଯାଉଛି । ତେଣୁ କଳିଙ୍ଗ ସମ୍ରାଟ ଖାରବେଳ ଯେ 'ଗାନ୍ଧର୍ବ ବିଦ୍ୟା' ପ୍ରସିଦ୍ଧ ସଙ୍ଗୀତଜ୍ଞମାନଙ୍କୁ ନିଜ ରାଜଧାନୀରେ ରଖାଇ ନଗର ଅଧିବାସୀମାନଙ୍କର ସାଂସ୍କୃତିକ ଅଭ୍ୟୁଦୟ ଘଟାଉଥିଲେ, ଏଥିରେ ଆଦୌ ସନ୍ଦେହ ନାହିଁ । ପରବର୍ତ୍ତୀ କାଳରେ ଭରତମୁନିଙ୍କ ଦ୍ୱାରା ନାଟ୍ୟଶାସ୍ତ୍ର ଲେଖା ହୋଇ ଏ ଅଞ୍ଚଳରେ ନିଶ୍ଚୟ ପ୍ରଚଳିତ ହୋଇ 'କଳିଙ୍ଗ ସଙ୍ଗୀତ' ନାମଧାରଣ କରିଥିଲା । ସେହି ସଙ୍ଗୀତ ପଦ୍ଧତିର କ୍ରମବିକାଶ ହିଁ ଜୟଦେବଙ୍କ 'ଗୀତଗୋବିନ୍ଦ'ରେ ଆତ୍ମପ୍ରକାଶ କରିଛି ।

ସାର୍ ଉଇଲିୟମ୍ ଜୋନ୍‌ସ ଖ୍ରୀ ୧୮ଶ ଶତାବ୍ଦୀର ଶେଷ ଭାଗରେ କଲିକତାରେ ପ୍ରତିଷ୍ଠିତ ଉଚ୍ଚ ନ୍ୟାୟଳୟର ମୁଖ୍ୟ ନ୍ୟାୟାଧୀଶ ଥିଲେ । ସେ ସର୍ବପ୍ରଥମେ ବୈଜ୍ଞାନିକ ପଦ୍ଧତିରେ ଇତିହାସ ଗବେଷଣା ନିମନ୍ତେ Journal of the Asiatic Research Society ଇଂରାଜୀ ପତ୍ରିକାର ଶୁଭ ଦେଇ ନିଜେ କେତେକ ଗବେଷଣାମୂଳକ ପ୍ରବନ୍ଧ ପ୍ରକାଶ କରିଥିଲେ । ଭାରତୀୟ ସଙ୍ଗୀତର ମୂଳଦୁଆ ଖୋଜିବା ପାଇଁ ସେ ନେପାଳ, ଉତ୍ତର ଓ ପଶ୍ଚିମ ଭାରତର ଗୁଜରାଟ, ମହାରାଷ୍ଟ୍ର ପ୍ରଭୃତି ଦେଶ ଭ୍ରମଣ କରିଥିଲେ । କିନ୍ତୁ ସେଠାରୁ ସେ ଖବର ସଂଗ୍ରହ କରିଥିଲେ ଯେ ଭାରତୀୟ ସଂଗୀତ ପ୍ରଥମେ କଳିଙ୍ଗରେ ହିଁ ପ୍ରକାଶ ହୋଇଥିଲା । ତେଣୁ ଜୟଦେବଙ୍କ ସଂଗୀତ ତାଙ୍କ ଜନ୍ମଭୂମି କେନ୍ଦୁଲି ନାମକ ଗ୍ରାମସ୍ଥିତ କଳିଙ୍ଗ ଦେଶରେ ଆତ୍ମପ୍ରକାଶ କରିଥିଲା ବୋଲି ସେ ତାଙ୍କ ପ୍ରବନ୍ଧରେ ଉଲ୍ଲେଖ କରିଛନ୍ତି । ଏଠାରେ କହିବା ବାହୁଲ୍ୟ ଯେ, ସାର ଉଇଲିୟମ୍ ଜୋନ୍‌ସଙ୍କ ସମୟରେ ଓଡ଼ିଶା ଇଂରେଜ ଶାସନାଧୀନ ହୋଇନଥିଲା । ତେଣୁ ସେ ଓଡ଼ିଶାର ନାମ ଉଲ୍ଲେଖ ନକରି କଳିଙ୍ଗ ବୋଲି କହିଥିବା ସମ୍ଭବ ।

ଖ୍ରୀଷ୍ଟପୂର୍ବ ଯୁଗରୁ ଯେଉଁ କଳିଙ୍ଗ ସଙ୍ଗୀତ ଏ ଦେଶରେ ବିକାଶ ହୋଇଥିଲା, ତାହା ସେଠାରୁ ବିଦେଶର କେତେକ ଅଞ୍ଚଳ, ଅର୍ଥାତ୍ ଇଣ୍ଡୋନେସିଆ, ଜାଭା, ବାଲି, ବୋର୍ଣ୍ଣିଓ ଏବଂ କାମ୍ବୋଡ଼ିଆ ପ୍ରଭୃତି ରାଜ୍ୟରେ ମଧ୍ୟ ଆତ୍ମପ୍ରକାଶ କରିଥିଲା । ସେ ଅଞ୍ଚଳର ଲୋକେ ଅଦ୍ୟାପି ତାହା କଳିଙ୍ଗ (କ୍ଲିଙ୍ଗ) ସଙ୍ଗୀତ ବୋଲି କହନ୍ତି ।

କାଳକ୍ରମେ ଖ୍ରୀ: ୧୨ଶ ଶତାବ୍ଦୀରେ ସେହି ରାଗରାଗିଣୀ ଓ ନୃତ୍ୟ ପ୍ରଭୃତି ଗାନ୍ଧର୍ବ ବିଦ୍ୟାର ପରିବର୍ଦ୍ଧନ ଓ ଶିକ୍ଷା କଳିଙ୍ଗ ନଗର ନିକଟବର୍ତ୍ତୀ ଶ୍ରୀକୂର୍ମପାଟକରେ 'ସାନି ସମ୍ପ୍ରଦାୟଙ୍କ' ଦ୍ୱାରା ବିକାଶ ଲାଭ କରିଥିଲା ।

ମହାରାଜା ବିକ୍ରମାଦିତ୍ୟ-ଚନ୍ଦ୍ରଗୁପ୍ତଙ୍କ ରାଜସଭାରେ ମହାକବି କାଳିଦାସଙ୍କ ପରି କିମ୍ବା ମହାରାଜା ହର୍ଷବର୍ଦ୍ଧନଙ୍କ ସଭାରେ ମହାକବି ବାଣଭଟ୍ଟଙ୍କ ପରି ଅଥବା କାନ୍ୟକୁବ୍‌ଜର ମହାରାଜା ଯଶୋବର୍ମନ୍‌ଙ୍କ ରାଜସଭାରେ ମହାକବି ଭବଭୂତିଙ୍କ ପରି ଉତ୍କଳର ମହାରାଜା ଚୋଡ଼ଗଙ୍ଗଙ୍କ ରାଜସଭାରେ ମହାକବି ଜୟଦେବ ଉଚ୍ଚ ଆସନ ପାଉଥିଲେ । ତାଙ୍କର ରଚିତ 'ଗୀତ-ଗୋବିନ୍ଦ'ରେ 'କଳିଙ୍ଗ ସଙ୍ଗୀତ'ର ରାଗଗୁଡ଼ିକ ପ୍ରଯୁକ୍ତ ହୋଇ ଅତି ଲଳିତ ପଦାବଳୀରେ ତାହା ମନୋରମ ଏକ ଦୃଶ୍ୟକାବ୍ୟରେ ପରିଣତ ହୋଇଥିଲା । ସେଥିରେ ଯେଉଁ ରାଗଗୁଡ଼ିକ ପ୍ରୟୋଗ କରାଯାଇଛି ତାହା ଓଡ଼ିଶାରେ ପ୍ରଚଳିତ ନିମ୍ନୋକ୍ତ ରାଗଗୁଡ଼ିକ ବୋଲି ଜଣାଯାଏ, ଯଥା- ଗୁର୍ଜ୍ଜରୀ,'ରାମକେରୀ, ବରାଡ଼ି ପ୍ରଭୃତି । ଖ୍ରୀ ୧୬ଶ ଶତାବ୍ଦୀ ଓ ତତ୍ପରେ ଓଡ଼ିଆ କବିମାନେ ନିମ୍ନୋକ୍ତ ରାଗଗୁଡ଼ିକ ବ୍ୟବହାର କରିଛନ୍ତି । ମଙ୍ଗଳଧନାଶ୍ରୀ, ରାମକେରୀ, କେଦାର ଚକ୍ରକେଳୀ, ଭୈରବୀ, କାମୋଦୀ, କୌଶିକ, ମାଳବ, ଭୂପାଳ ପ୍ରଭୃତି ।

ଦିଲ୍ଲୀର ଚୌହାନବଂଶୀୟ ମହାରାଜା ପୃଥ୍ୱୀରାଜଙ୍କ (ଖ୍ରୀ. ୧୧୬୯-୧୧୯୨) ରାଜତ୍ୱ କାଳରେ ଚାନ୍ଦ (ଚନ୍ଦ୍ର) କବି ରାଜସ୍ଥାନୀ ଭାଷାରେ ଲେଖିଥିବା 'ପୃଥ୍ୱୀରାଜ ରାସୋ' ନାମକ କାବ୍ୟରେ ଉଲ୍ଲେଖ କରିଥିବା ଆଠଜଣ କବିଙ୍କ ମଧ୍ୟରେ ଜୟଦେବଙ୍କ ନାମ ଉଲ୍ଲେଖ ଅଛି ।

ତାଙ୍କ ଗ୍ରନ୍ଥଟିରେ ସେ ଲେଖିଛନ୍ତି - 'ଜୟଦେବ ଅପଠବନୀ କବିରାୟଂ' ଜଟୈ ଜେଦନ୍ତଂ କିରି ଗୋବିନ୍ଦ ଗାୟଂ । ସେହି ଗ୍ରନ୍ଥରେ 'ଗୀତ ଗୋବିନ୍ଦ' ଅନୁକରଣରେ ଦଶାବତାର ବନ୍ଦନା ମଧ୍ୟ ସେ ଲେଖିଛନ୍ତି ।

ବାସ୍ତବରେ ଭାରତରେ ଗୀତ-ଗୋବିନ୍ଦ ଏତେଦୂର ଆଦୃତ ହୋଇଥିଲା ଯେ, ସେଥିର ଗୋଟିଏ ଶ୍ଳୋକ ୧୨୯୨ ଖ୍ରୀଷ୍ଟାବ୍ଦରେ ଖୋଦିତ ଅଭିଲେଖରେ ଉଦ୍ଧୃତ କରାଯାଇଥିଲା । (J.A.S.B., N.S. 2190 b.f.S.KK. De, H.S.I. P. 390 f) ଆଉ ମଧ୍ୟ ଅନ୍ୟ ଏକ ଅଭିଲେଖରେ ୧୨୦୧ ଖ୍ରୀଷ୍ଟାବ୍ଦରେ ଗୋଟିଏ ଶ୍ଳୋକ ଉଦ୍ଧୃତ ହୋଇଛି । ରାଜା ସାରଙ୍ଗଦେବଙ୍କ ଅନାବାଡ଼ା (Anavada Inscription) ଅଭିଲେଖରେ ମଙ୍ଗଳ ଶ୍ଳୋକରୂପେ ୧୨୦୧ ଖ୍ରୀଷ୍ଟାବ୍ଦରେ ଗୀତଗୋବିନ୍ଦର ନିମ୍ନୋକ୍ତ ଶ୍ଳୋକଟି ଖୋଦିତ ହୋଇଛି - 'ବେଦାନୁଦ୍ଧରତେ ଜଗନ୍ତି ବହତେ....' ଇତ୍ୟାଦି ।

ଯେଉଁ ସମୟରେ 'ଗୀତ ଗୋବିନ୍ଦ' ରଚିତ ହୋଇଥିଲା, ତାହା ନିଶ୍ଚିତ ଭାବେ ମହାରାଜା ଚୋଡ଼ଗଙ୍ଗ ଉତ୍କଳ ଜୟ ପରେ କଳିଙ୍ଗ ସଙ୍ଗୀତକୁ ଭିତ୍ତି କରିଥିଲା । ତା' ନହେଲେ ୧୨୦୧ ଖ୍ରୀଷ୍ଟାବ୍ଦରେ ରାଜା ସାରଙ୍ଗଦେବଙ୍କ ଗୋଟିଏ ଅଭିଲେଖରେ କିପରି 'ଗୀତଗୋବିନ୍ଦ'ର ନିମ୍ନୋକ୍ତ ଦଶାବତାର ବନ୍ଦନା ଶ୍ଳୋକଟି ଖୋଦିତ ହୋଇଥାଆନ୍ତା ।

'ବେଦାନୁଦ୍ଧରତେ ଜଗନ୍ତି ବହତେ ଭୂଗୋଳମୁଦ୍‌ବିଭ୍ରତେ
ଦୈତ୍ୟାନ୍ ଦାରୟତେ ବଳିଂ ଛଳୟତେ କ୍ଷତ୍ରକ୍ଷୟଂ କୁର୍ବତେ ।
ପୌଲସ୍ତ୍ୟଂ ଜୟତେ ହଳଂ କଳୟତେ କାରୁଣ୍ୟମାତନ୍ୱତେ
ମ୍ଲେଚ୍ଛାନ୍ ମୂର୍ଚ୍ଛୟତେ ଦଶାକୃତିକୃତେ କୃଷ୍ଣାୟ ତୁଭ୍ୟଂ ନମଃ ।

ସୁତରାଂ ୧୨୦୧ ଖ୍ରୀଷ୍ଟାବ୍ଦରେ 'ଗୀତଗୋବିନ୍ଦ' ଭାରତର ଦୂର ପ୍ରଦେଶମାନଙ୍କରେ ବିଶେଷତଃ ଦକ୍ଷିଣ ଓ ପଶ୍ଚିମାଞ୍ଚଳରେ ହିଁ ପ୍ରସାର ଲାଭ କରିଥିଲା । ଏ ଦୃଷ୍ଟିରୁ ବିଚାର କଲେ ଜଣାଯାଉଛି ଯେ, 'ଗୀତଗୋବିନ୍ଦ' ଅନ୍ତତଃ ୧୧୫୦ ଖ୍ରୀଷ୍ଟାବ୍ଦ ଆଗରୁ ରଚିତ ହୋଇଥିଲା । ଆମ୍ଭ ମତରେ ମହାରାଜା ଉତ୍କଳ ଜୟ ପରେ ଏବଂ ତାଙ୍କ ଜୀବିତ କାଳ ଅର୍ଥାତ୍ ଖ୍ରୀ: ୧୧୧୨-୧୧୪୬ ମଧ୍ୟରେ ଜୟଦେବଙ୍କ 'ଗୀତଗୋବିନ୍ଦ' ଗୀତିନାଟ୍ୟ ଶ୍ରୀପୁରୁଷୋତ୍ତମଙ୍କ ମନ୍ଦିର ସମ୍ମୁଖରେ ଅଭିନୀତ ହୋଇଥିଲା । 'ଗୀତଗୋବିନ୍ଦ' ଅନୁକରଣରେ ଶ୍ରୀ ଶାମାରାମା ନାମକ ଜଣେ କବି 'ଗୀତ-ପୀତ-ବସନ' ନାମକ ଗୋଟିଏ ଗ୍ରନ୍ଥ ସଂଗୀତ ମାଧ୍ୟମରେ ରଚନା କରିଥିଲେ ।

କୋଣ୍ଡାବିଡୁରେ ବେଙ୍କାରେଡ୍ଡିଙ୍କ ସଭାରେ ରହି ଅହୋବଳ ନାମକ ସଂଗୀତଜ୍ଞ କବି ଯେଉଁ 'ସଙ୍ଗୀତପାରିଜାତ' ନାମକ ଗ୍ରନ୍ଥ ଲେଖିଥିଲେ, ତାହିଁରେ 'ଗୀତ-ଗୋବିନ୍ଦ'ର ରାଗ ରାଗିଣୀକୁ ନିଶ୍ଚୟ ଅନୁକରଣ କରାଯାଇଥିଲା । କୋଣ୍ଡାବିଡୁର ରେଡ୍ଡିମାନଙ୍କୁ ଜୟକରି ମହାରାଜା କପିଳେନ୍ଦ୍ରଦେବ 'ସାନି ସମ୍ପ୍ରଦାୟଙ୍କୁ' ସେହି ଶାସ୍ତ୍ରୀୟ ସଙ୍ଗୀତ ଶ୍ରୀଜଗନ୍ନାଥ ମନ୍ଦିରରେ 'ଗୀତଗୋବିନ୍ଦ' ଗାନ ସକାଶେ ନିଯୁକ୍ତ କରିଥିଲେ । କପିଳେନ୍ଦ୍ରଙ୍କ ପୁତ୍ର ମହାରାଜା ପୁରୁଷୋତ୍ତମଦେବ ନିଜେ 'ଅଭିନବ-ଗୀତ ଗୋବିନ୍ଦ' ନାମରେ ଅନ୍ୟ ଏକ ଗ୍ରନ୍ଥ ଲେଖାଇ ତାହା ଶ୍ରୀମନ୍ଦିରରେ ଗାନ କରିବାକୁ ସ୍ଥିର କରିଥିଲେ । ଏଣୁ ସାଧାରଣ ଲୋକଙ୍କ ମଧ୍ୟରେ ଆପତ୍ତିଜନକ ଆନ୍ଦୋଳନ ସୃଷ୍ଟି ହେଲା । କିମ୍ବଦନ୍ତୀରୁ ଜଣାଯାଏ, ଶ୍ରୀମନ୍ଦିରରେ ଜୟଦେବଙ୍କ 'ଗୀତଗୋବିନ୍ଦ' ପରିବର୍ତ୍ତେ ପୁରୁଷୋତ୍ତମଙ୍କ 'ଅଭିନବ ଗୀତ ଗୋବିନ୍ଦ' ଗାନ କରାଯିବା ବିଷୟରେ ଠାକୁରଙ୍କ ସମ୍ମତି ପାଇଁ ଉଭୟ ଗ୍ରନ୍ଥ ଶ୍ରୀଜଗନ୍ନାଥଙ୍କ ପାଦପୀଠରେ ରାତିରେ ରଖି ଦ୍ୱାର ବନ୍ଦ କରାଗଲା । ପରଦିନ ପ୍ରଭାତରେ ଦ୍ୱାର ଉନ୍ମୁକ୍ତ ହେବାରୁ ଦେଖାଗଲା ଯେ, ଜୟଦେବଙ୍କ ଗ୍ରନ୍ଥଟି ଶ୍ରୀଜଗନ୍ନାଥଙ୍କ ହୃଦୟ ସ୍ଥଳରେ ରହିଛି ଓ ରାଜାଙ୍କ ଗ୍ରନ୍ଥଟି ତଳେ ପଡ଼ିଛି । ଏହା ମହାପ୍ରଭୁଙ୍କ ନିଷ୍ପତ୍ତି ବୋଲି ସମସ୍ତେ ବୋଧ କରିବାରୁ ଜୟଦେବଙ୍କ 'ଗୀତ ଗୋବିନ୍ଦ' ହିଁ ଶ୍ରୀମନ୍ଦିରରେ ଗାନ କରିବାକୁ ସ୍ଥିର ହୋଇଥିଲା । ରାଜା ପୁରୁଷୋତ୍ତମଙ୍କ ପୁତ୍ର ମହାରାଜା ଶ୍ରୀ ପ୍ରତାପରୁଦ୍ରଙ୍କ ରାଜତ୍ୱ କାଳରେ ୧୫୧୦ ଖ୍ରୀଷ୍ଟାବ୍ଦରେ ବଙ୍ଗଦେଶ ନଦିଆରୁ ଚୈତନ୍ୟ ସମାଗମ ଏକ ଐତିହାସିକ ଘଟଣା । ସେତେବେଳେ ଚୈତନ୍ୟଙ୍କ ସଙ୍ଗେ ନଦିଆରୁ ବହୁ ବୈଷ୍ଣବ ଶ୍ରୀକ୍ଷେତ୍ରକୁ ଆସି ଚୈତନ୍ୟଙ୍କ ପ୍ରବର୍ତ୍ତିତ ନାମ-ସଂକୀର୍ତ୍ତନରେ ଯୋଗ ଦେଇଥିଲେ । ଖ୍ରୀ: ୧୬ଶ ଶତାବ୍ଦୀର ଆରମ୍ଭରେ ବଙ୍ଗଦେଶରେ 'ବାଉଲ୍'ମାନଙ୍କ ସଙ୍ଗୀତ ବିଶେଷ ଭାବରେ ପ୍ରଚଳିତ ଥିଲା । ତେଣୁ ଚୈତନ୍ୟଙ୍କ ଶିଷ୍ୟମାନେ ସେହି 'ବାଉଲ୍' ସଙ୍ଗୀତ ଅନୁକରଣରେ ଗୀତ ରଚନା କରି ସଂକୀର୍ତ୍ତନ ମାଧ୍ୟମରେ ତାହା ଲୋକଙ୍କୁ ଶୁଣାଉଥିଲେ । ମହାରାଜା ପ୍ରତାପରୁଦ୍ର ନିଜେ ଶିଷ୍ୟତ୍ୱ ଗ୍ରହଣ କରିବା ଫଳରେ 'ନାମ-ସଂକୀର୍ତ୍ତନ' ଓଡ଼ିଶାର ପୁରପଲ୍ଲୀରେ ସର୍ବତ୍ର ପ୍ରସାର ଲାଭ କଲା । ତେଣୁ ସଙ୍ଗୀତର ଧାରା ମଧ୍ୟ ଠାଏଁ ଠାଏଁ ବଦଳିଥିବା ସମ୍ଭବ । ଶ୍ରୀମନ୍ଦିରରେ ପୂର୍ବରୁ ଜୟଦେବଙ୍କ 'ଗୀତ-ଗୋବିନ୍ଦ' ଯେଉଁ ପଦ୍ଧତିରେ ଗାନ କରାଯାଉଥିଲା, ସେଥିରେ ବ୍ୟତିକ୍ରମ ସୃଷ୍ଟି ହେବାରୁ, 'ସାନି-ସମ୍ପ୍ରଦାୟ'ର ତେଲେଙ୍ଗାମାନଙ୍କ ଠାରୁ ଅନ୍ୟ ବୈଷ୍ଣବମାନେ ଗାନ ପଦ୍ଧତି ଶିକ୍ଷା କରି କେବଳ ଜୟଦେବଙ୍କ 'ଗୀତ ଗୋବିନ୍ଦ' ହିଁ ଗାନ କରିବାକୁ ଏକ ନିର୍ଦ୍ଦେଶାତ୍ମକ ଅଭିଲେଖ ଓଡ଼ିଆରେ ଖୋଦିତ କରାଇ ଶ୍ରୀମନ୍ଦିରସ୍ଥ ଜୟ-ବିଜୟ ଦ୍ୱାର ନିକଟରେ ସ୍ଥାପିତ କରିଥିଲେ । ଏହି ଅଭିଲେଖରୁ ସ୍ପଷ୍ଟ ପ୍ରମାଣିତ ହେଉଛି ଯେ, ଦକ୍ଷିଣ-ଓଡ଼ିଶା (କଳିଙ୍ଗ)ରେ ବାସ କରୁଥିବା ତେଲେଙ୍ଗା ଗାୟକ ଓ ନର୍ତ୍ତକୀମାନଙ୍କ ଦ୍ୱାରା ପୂର୍ବରୁ 'ଗୀତ-ଗୋବିନ୍ଦ' ଗାନ ଶାସ୍ତ୍ରୀୟ-ପଦ୍ଧତିରେ ହୋଇଆସୁଥିଲା ।

ମହାରାଜା ଚୋଡ଼ଗଙ୍ଗଙ୍କ ଉତ୍କଳ ଜୟ ପରେ ଶ୍ରୀକ୍ଷେତ୍ରର ପୁନଃ ଅଭ୍ୟୁଦୟ ହେଲା । ସେଥି ପୂର୍ବରୁ ମହାରାଜା ଯଯାତି ମହାଶିବଗୁପ୍ତଙ୍କ ଦ୍ୱାରା ବୋଧହୁଏ ମୁକ୍ତିମଣ୍ଡପ ସମ୍ମୁଖସ୍ଥ ନୃସିଂହ ମନ୍ଦିରରେ ମାଧବରୂପୀ ପୁରୁଷୋତ୍ତମ ପୂଜିତ ହେଉଥିଲେ । ସେହି ମନ୍ଦିରର ଚତୁର୍ଦ୍ଦିଗ ଭିତ୍ତି ଗାତ୍ରରେ ବିଷ୍ଣୁଙ୍କ ଦଶ ଅବତାର-ବିଗ୍ରହମାନ ପ୍ରଦର୍ଶିତ ହୋଇଅଛି । ଚୋଡ଼ଗଙ୍ଗଦେବଙ୍କ ରାଜତ୍ୱ କାଳରେ ସେହି ମନ୍ଦିରଟି ପୁନର୍ବାର ସଂସ୍କାର କରାଯାଇ ନିର୍ମିତ ହୋଇଥିଲା ଏବଂ ସେଥିରେ ପ୍ରତିଷ୍ଠିତ ମାଧବ-ପୁରୁଷୋତ୍ତମଙ୍କ ସ୍ଥାନରେ ବଳଭଦ୍ର, ସୁଭଦ୍ରା ଓ ପୁରୁଷୋତ୍ତମ କୃଷ୍ଣଙ୍କର ବିଗ୍ରହମାନ ସ୍ଥାପିତ ହେଲା । ମାଧବ (ନୀଳମାଧବ) ରୂପୀ ଶ୍ରୀ

ପୁରୁଷୋତ୍ତମଙ୍କୁ ଶଙ୍ଖଚକ୍ରଧାରୀ ଶ୍ରୀକୃଷ୍ଣ ରୂପେ ଆରାଧନା କରାଗଲା । ବୋଧହୁଏ ତଦବଧି ଷୋଡ଼ଶାକ୍ଷରୀ 'ଗୋପାଳମନ୍ତ୍ର'ରେ 'କ୍ଲୀଂ କୃଷ୍ଣାୟ ଗୋପୀଜନବଲ୍ଲଭାୟ ସ୍ୱାହା' ତାଙ୍କର ପୂଜା ସମ୍ପାଦିତ ହେଲା । ଆଉ ମଧ୍ୟ ଦଶାବତାରର ସୃଷ୍ଟିକର୍ତ୍ତା ରୂପେ ତାଙ୍କୁ ଆରାଧନା କରାଗଲା । ଆଚାର୍ଯ୍ୟ ନିମ୍ବାର୍କଙ୍କ ମତାନୁସାରେ 'କୃଷ୍ଣସ୍ତୁ ଭଗବାନ୍ ସ୍ୱୟମ୍' ଏହି ନୀତିରେ ବୈଷ୍ଣବମାନେ ଅନୁପ୍ରାଣିତ ହେଲେ । କବି ଜୟଦେବ କୃଷ୍ଣଭକ୍ତିର ମୂଳତତ୍ତ୍ୱକୁ ଆଶ୍ରୟ କରି ରାଧାକୃଷ୍ଣ ଲୀଳାର ପ୍ରଚାର ଓ ପ୍ରସାର ଉଦ୍ଦେଶ୍ୟରେ 'ଗୀତ ଗୋବିନ୍ଦ' ରଚନା କରିଥିଲେ ଓ ସେଥିରେ ବନ୍ଦନା ଶ୍ଳୋକ ରୂପେ 'ଦଶାବତାର'ଙ୍କ ସ୍ତୁତି ଗାନ ଲେଖିଥିଲେ ।

କବି କେଶବ ମିଶ୍ର 'କୋଟକ ଗ୍ରାମ' ବାସୀ ଏବଂ ରାଜା ମାଣିକଚନ୍ଦ୍ରଙ୍କ ସଭାରେ ରହି 'ଅଳଙ୍କାରଶେଖର' ନାମକ ଗୋଟିଏ ଗ୍ରନ୍ଥ ଲେଖିଥିଲେ । ସେ ଲେଖିଥିବା ପ୍ରକାରେ ଯଦି କବି ଜୟଦେବ ଭାରତର ଜଣେ ଶ୍ରେଷ୍ଠ ପଣ୍ଡିତ ରୂପେ ସମ୍ମାନିତ ହୋଇଥିଲେ ଏବଂ ସେହି ସମ୍ମାନ ଯଦି ଗୋବର୍ଦ୍ଧନାଚାର୍ଯ୍ୟଙ୍କ ପତ୍ରରେ ପ୍ରକାଶିତ ହୋଇଥିଲା, ତେବେ 'ବାଚଃ ପଲ୍ଲବୟତ୍ୟୁମାପତି....' ଶ୍ଳୋକରେ କିପରି ଜୟଦେବ ନିଜକୁ ଖର୍ବ କରି ଶୃଙ୍ଗାର ରସର ରସ ପାଇଁ ଗୋବର୍ଦ୍ଧନାଚାର୍ଯ୍ୟଙ୍କ ପ୍ରଶଂସା ଗାନ କରିବା ତାଙ୍କ ପକ୍ଷରେ ସମ୍ଭବ କି ?

କବି ଜୟଦେବଙ୍କ ଜନ୍ମସ୍ଥାନ ସମ୍ପର୍କରେ 'ଗୀତ-ଗୋବିନ୍ଦ'ର ତୃତୀୟ ସର୍ଗ ଦଶମ ଶ୍ଳୋକର ଦ୍ୱିତୀୟ ପାଦରେ ଲେଖାଅଛି :-

'କେନ୍ଦୁବିଲ୍ୱ - ସମୁଦ୍ରସମ୍ଭବ ରୋହିଣୀରମଣେନ'

ଅର୍ଥାତ୍ ରୋହିଣୀରମଣ ଚନ୍ଦ୍ର ଯେପରି ସମୁଦ୍ର ଗର୍ଭରୁ ଉଦିତ ହୁଅନ୍ତି, ସେପରି କେନ୍ଦୁବିଲ୍ୱରୁ ସେ ଉଦିତ ହୋଇଥିଲେ । ତାଙ୍କ ପିତାଙ୍କ ନାମ ଭୋଜଦେବ ଏବଂ ମାତାଙ୍କ ନାମ ବାମାଦେବୀ ।

କେନ୍ଦୁବିଲ୍ୱ ଗ୍ରାମର ଅବସ୍ଥିତି ସମ୍ପର୍କରେ ବିଭିନ୍ନ ପଣ୍ଡିତ ଭିନ୍ନ ମତ ପ୍ରକାଶ କରିଅଛନ୍ତି । ବଙ୍ଗର କେତେକ ଐତିହାସିକ ପଣ୍ଡିତ ଜୟଦେବଙ୍କ ଜନ୍ମସ୍ଥାନ ଅଜୟ ନଦୀତଟସ୍ଥ ବୀରଭୂମର ସୁରି-ସବଡ଼ିଭିଜନ ଅନ୍ତର୍ଗତ ବୋଲି କହନ୍ତି । ଓଡ଼ିଶାରେ ଅକ୍ଷୟ ତୃତୀୟା ଦିନ ଜୟଦେବ ଜୟନ୍ତୀ ପାଳିତ ହୁଏ । ପୌଷମାସ ସଂକ୍ରାନ୍ତି ଦିନ କିମ୍ବା ମାଘର ପ୍ରଥମ ଦୁଇଦିନ ଗୋଟିଏ ମେଳା ମଧ୍ୟ ଅନୁଷ୍ଠିତ ହୁଏ । ସେହି ତଥାକଥିତ ବୀରଭୂମର କେନ୍ଦୁଲି ଗ୍ରାମରେ ଜୟଦେବଙ୍କ ସମାଧି ମଧ୍ୟ ଅଛି । ତେବେ ଜୟଦେବ କ'ଣ ବୌଦ୍ଧ ବା ମୁସଲମାନ ଧର୍ମ ଗ୍ରହଣ କରିଥିଲେ, ଯାହା ଫଳରେ ତାଙ୍କର ମୃତ ପିଣ୍ଡକୁ ଦାହ ନକରି ସମାଧିରେ ପ୍ରୋତଥିତ ହୋଇଥିଲା ? ମୈଥିଳୀ କବି ଚନ୍ଦ୍ରଦତ୍ତ ଓ ଗୋଆଲିଅରର ନାଭାଜୀ ଲେଖିଛନ୍ତି ଯେ ଉତ୍କଳଦେଶରେ ଶ୍ରୀ ଜଗନ୍ନାଥ ପୁରୀ ପ୍ରାନ୍ତରେ କେନ୍ଦୁବିଲ୍ୱ ନାମକ ବ୍ରାହ୍ମଣ ଶାସନଟି ବିଦ୍ୟମାନ । ସେଠାରେ କବି ଜୟଦେବ ଜନ୍ମିଥିଲେ । ଓଡ଼ିଶାର କବି ରାମଦାସ ମଧ୍ୟ 'ଦାର୍ଢ୍ୟତା ଭକ୍ତି' ନାମକ ଓଡ଼ିଆ ଭାଷାରେ ନବାକ୍ଷରୀ ଛନ୍ଦରେ ଯେଉଁ ଗ୍ରନ୍ଥଟି ରଚନା କରିଛନ୍ତି ସେଥିରେ ସେ ଜୟଦେବଙ୍କ ଜନ୍ମସ୍ଥାନ ଉତ୍କଳର କେନ୍ଦୁଳୀ ଗ୍ରାମ ବୋଲି ନିର୍ଦ୍ଦେଶ କରିଛନ୍ତି ।

ତେଣୁ ଖ୍ରୀ: ୧୯ଶ ଶତାବ୍ଦୀରେ ଓଡ଼ିଶା ଇତିହାସ ଲେଖକ ହଣ୍ଟର ସାହେବଙ୍କ ବହୁ ପୂର୍ବରୁ ହିନ୍ଦୀ କବି ନାଭାଜୀ, ମିଥିଳା (ବର୍ତ୍ତମାନ ବିହାର ପ୍ରଦେଶ) ର କବି ରାମଦାସ ପ୍ରଭୃତି କବି ଜୟଦେବଙ୍କ ଜନ୍ମସ୍ଥାନ ଓଡ଼ିଶାରେ ସ୍ଥିର କରିଥିବା ଜଣାଯାଏ ।

ଖ୍ରୀ: ୧୫୩୬ରେ କବି ମାଧବ ପଟ୍ଟନାୟକ ମଧ୍ୟ ନବାକ୍ଷରୀ ଛନ୍ଦରେ 'ବୈଷ୍ଣବ ଲୀଳାମୃତ' ନାମକ ଗ୍ରନ୍ଥରେ ଜୟଦେବଙ୍କ ଜନ୍ମସ୍ଥାନ ପ୍ରାଚୀ ନଦୀ କୂଳରେ ଉତ୍କଳର ଶ୍ରୀକ୍ଷେତ୍ର (ପୁରୀ) ନିକଟବର୍ତ୍ତୀ (ବାଲିଅନ୍ତା) କେନ୍ଦୁଳୀ ଶାସନରେ ନିଆଳୀମାଧବ ସମୀପସ୍ଥ ସେହି ଗ୍ରାମରେ ଜନ୍ମଲାଭ କରିଥିଲେ ବୋଲି ଲେଖିଅଛନ୍ତି । ଯଥା :

'ବିପ୍ର ସେ ଜୟଦେବ ନାମ, କ୍ଷେତ୍ରବରକୁ ଆଗମନ ।
କେନ୍ଦୁଳୀ ଶାସନ ତା ଗ୍ରାମ, ପ୍ରାଚୀ ନଦୀର ତଟ ପୁଣ ।।
ଶ୍ରୀନୀଳମାଧବ ସମୀପେ, ଭକ୍ତି କଲା ସେ ନାନା ରୂପେ ।
ଶାସ୍ତ୍ର ପୁରାଣେ ବିଚକ୍ଷଣ, କବିତ୍ୱ ମାର୍ଗେ ତାର ମନ ।।

କେନ୍ଦୁଳୀ ଶାସନଟି କବି ଜୟଦେବଙ୍କ ଜନ୍ମସ୍ଥାନ ହୋଇଥିବାରୁ ସେଠାରେ ଥିବା ବୁଣାକାରମାନେ ଶ୍ରୀପୁରୁଷୋତ୍ତମଙ୍କ ଲାଗି ସକାଶେ ପ୍ରସ୍ତୁତ କରିଥିବା ଖଣ୍ଡୁଆ, ପହରଣ ଓ ଶାଢ଼ୀମାନଙ୍କରେ 'ଗୀତ ଗୋବିନ୍ଦ'ରୁ ନିମ୍ନୋକ୍ତ ଅଂଶମାନ ଉଦ୍ଧାର କରି ବୁଣିଆନ୍ତି ଏବଂ ସେସବୁ ପୁରୀ ଶ୍ରୀମନ୍ଦିରରେ ଠାକୁରମାନଙ୍କ କାମରେ ଲାଗେ । ଯଥା :

ଦଶାବତାର ଖଣ୍ଡୁଆରେ :

'ପ୍ରିୟେ ଚାରୁଶୀଳେ ମୁଞ୍ଚ ମୟି ମାନମନିଦାନଂ
ସପଦି ମଦନାନଲୋ ଦହତି ମମ ମାନସମ୍ ।
ଦେହି ମୁଖକମଳମଧୁପାନମ୍ ।'
'ସ୍ମର ଗରଳ ଖଣ୍ଡନଂ ମମ ଶିରସି ମଣ୍ଡନଂ; ଦେହି ପଦପଲ୍ଲବମୁଦାରମ୍ ।'

ପହରଣରେ : 'ଚନ୍ଦନଚର୍ଚ୍ଚିତନୀଳକଳେବର ପୀତବସନ ବନମାଳୀ
କେଳିଚଳନ୍ମଣିକୁଣ୍ଡଳମଣ୍ଡିତ ଗଣ୍ଡଯୁଗ ସ୍ମିତଶାଳୀ ।।'

ଶାଢ଼ୀରେ : 'ଯମୁନାତୀରବାନୀର ନିକୁଞ୍ଜେ ମନ୍ଦମାସ୍ଥିତମ୍
ପ୍ରାହ ପ୍ରେମଭରୋଦ୍‌ଭ୍ରାନ୍ତଂ ମାଧବଂ ରାଧିକା ସଖୀ ।'

ଦ୍ୱିଜ ଶ୍ରୀଧରଙ୍କ ରଚିତ 'କାଞ୍ଚନଲତା' ନାମକ ଓଡ଼ିଆ କାବ୍ୟରେ ନିମ୍ନୋକ୍ତ ଭାବେ କେନ୍ଦୁଳୀ ଶାଢ଼ୀ ନାମ ଲେଖିଛନ୍ତି :

''ସହଜେ ଦ୍ୱିଜ ନନ୍ଦିନୀ ତେଜଧାମା କନକ କାନ୍ତି ।
କଲା କେନ୍ଦୁଳୀ ଶାଢ଼ିଏ ଭିଡ଼ି ପିନ୍ଧିଛି ମୋତିଦନ୍ତୀ ।''

ହଣ୍ଟରଙ୍କ ଓଡ଼ିଶା ଇତିହାସରେ ଏ କାବ୍ୟର ନାମ ଲେଖାଅଛି ।

କେନ୍ଦୁଳୀର ଅବସ୍ଥିତି ସମ୍ପର୍କରେ ଉତ୍କଳୀୟ ପଣ୍ଡିତଙ୍କମାନଙ୍କ ମତକୁ ଖଣ୍ଡନ କରି କେତେକ ବଙ୍ଗୀୟ ପଣ୍ଡିତ କହନ୍ତି ଯେ, ପଶ୍ଚିମବଙ୍ଗର ବୀରଭୂମ୍ ଜିଲ୍ଲାରେ ପ୍ରବାହିତ ଅଜୟ ନଦୀ ତଟରେ 'ଜୟଦେବ କେନ୍ଦୁଳୀ' ଅବସ୍ଥିତ । ସେଠାରେ କବି ଜୟଦେବ ଜନ୍ମଗ୍ରହଣ କରିଥିଲେ । ତେଣୁ ପୌଷମାସ ସଂକ୍ରାନ୍ତି ଦିନ ସେଠାରେ ହେଉଥିବା ମେଳାକୁ 'ଜୟଦେବ-

ମେଳା' ବୋଲି କୁହାଯାଏ । କିନ୍ତୁ ଡ଼ା: ସୁକୁମାର ସେନ୍ ତାଙ୍କ ବଙ୍ଗଳା ସାହିତ୍ୟର ଇତିହାସରେ ସେଥିର ପ୍ରତିବାଦ କରି ଲେଖିଛନ୍ତି :

'ଅଜୟ ଧାରେ ବାଲୁଚୁଟେ ପୌଷ ସଂକ୍ରାନ୍ତି ସ୍ନାନେର ମେଳା ନିକଟେ ଯେ ଗ୍ରାମ ଆଛେ ତାହା କେନ୍ଦୁଲୀ ନୟ, ଏଖାନେ କେନ୍ଦୁଲୀ ଗ୍ରାମ ଛିଲ ବଲିୟା କୋନ ପ୍ରମାଣ ନାଇ ।' ସେ ଆଉ ମଧ୍ୟ ଲେଖିଛନ୍ତି - 'ଚୈତନ୍ୟେର ସମୟେ ଜୟଦେବ ସ୍ମୃତି ସମ୍ବଳିତ ମେଳାର କୋନ ଉଲ୍ଲେଖ ନାଇ ଏବଂ ଜୟଦେବର ଜନ୍ମସ୍ଥାନ ବା ବାସସ୍ଥାନ ରୂପେ କେନ୍ଦୁଲୀର ବା ଅନ୍ୟ କୋନ ଗ୍ରାମେର କୋଥାଓ ନାଇ ।'

କଲିକତା ବିଶ୍ୱବିଦ୍ୟାଳୟର ଅଧ୍ୟାପକ ଡଃ ଆଶୁତୋଷ ଭଟ୍ଟାଚାର୍ଯ୍ୟ ବଙ୍ଗଳାର ସାପ୍ତାହିକ ପତ୍ରିକା 'ଯୁଗବାଣୀ' (ତା ୭.୬.୧୯୬୯)ରେ ପ୍ରକାଶିତ ଏକ ପ୍ରବନ୍ଧରେ ଲେଖିଛନ୍ତି - 'ଜୟଦେବ ଛିଲେନ ଉଡ଼ିୟା ଏବଂ ବୀରଭୂମିର କେନ୍ଦୁଲୀତେ ଅନୁଷ୍ଠିତ ବାର୍ଷିକ ବାସରିକ ମେଳା ଆସଲେ 'ବାଉଲି ମେଳା' ଓ ଜୟଦେବେର ଜନ୍ମେର ସଙ୍ଗେ କୋନ ସମ୍ପର୍କ ନେଇ । ଜୟଦେବ ଲକ୍ଷ୍ମଣ ସେନେର ସଭାକବି ଛିଲେନ୍ ବଲେ ଏଯାବତ୍ ଯେ ସିଦ୍ଧାନ୍ତ ବିଦଗ୍ଧ ସମାଜେ ଗୃହୀତ ହୟେ ଛିଲ ତା ଗ୍ରହଣଯୋଗ୍ୟ ନୟ । ଲକ୍ଷ୍ମଣସେନେର ଅନ୍ୟାନ୍ୟ କବିଦେର ସଙ୍ଗେ ଜୟଦେବ ନିଜେର ନାମକେ ଯୁକ୍ତ କରେଲେ ଓ ତିନି ଲକ୍ଷ୍ମଣସେନେର ସଭାକବି ଛିଲେନ୍ ତା ପ୍ରମାଣିତ ହୟନା । ପ୍ରାଚୀନ ସଂସ୍କୃତ କବିଦେର ନାମେର୍ ସଙ୍ଗେ ନିଜେର ନାମ ଯୁକ୍ତ କରା ରୀତି ଓଖାନେ ଓଡ଼ିଶାୟ ପ୍ରଚଳିତ ହୟେଛେ ।''

୧୮୦୧ ଖ୍ରୀଷ୍ଟାବ୍ଦରେ ହରେକୃଷ୍ଣ ମୁଖୋପାଧ୍ୟାୟଙ୍କ ରଚିତ 'ବୀରଭୂମି ବିବରଣୀ' ଗ୍ରନ୍ଥରେ ଲେଖାଅଛି ଯେ ବୃନ୍ଦାବନର ନିମ୍ବାର୍କପନ୍ଥୀ ଶ୍ରୀ ରାଧାରମଣ ନାମକ ଜଣେ ମହନ୍ତ ବର୍ଦ୍ଧମାନ ରାଜାଙ୍କ ସାହାଯ୍ୟରେ ବର୍ଦ୍ଧମାନଠାରେ ଶ୍ରୀ ରାଧାଗୋବିନ୍ଦଙ୍କ ମନ୍ଦିର ନିକଟରେ ଗୋଟିଏ ମଠ ପ୍ରତିଷ୍ଠା କରିଥିଲେ । ତାଙ୍କର ଶିଷ୍ୟମାନେ ମଧ୍ୟ ରାଧାକୃଷ୍ଣଙ୍କ ଭକ୍ତ ହୋଇ ନିମ୍ବାର୍କ ପନ୍ଥୀରୂପେ ପରିଚିତ ଥିଲେ । ସେମାନେ ବୋଧହୁଏ ସେଠାରେ ଅନୁଷ୍ଠିତ ପୌଷ ସଂକ୍ରାନ୍ତି (ମକର) ମେଳାକୁ 'ଜୟଦେବ-ମେଳା' ନାମ ଦେଇଥିଲେ । ସେ ନିକଟରେ ସେମାନେ ଅନ୍ୟ ଜଣେ ବୈଷ୍ଣବ କବି 'କୃଷ୍ଣ କର୍ଣ୍ଣାମୃତ'ର ଲେଖକ ବିଲ୍ୱ ମଙ୍ଗଳଙ୍କ ସ୍ମୃତିରକ୍ଷା ପାଇଁ ବିଲ୍ୱ ମଙ୍ଗଳ ଡ଼ିପି ନାମରେ ଆଉ ଏକ ସ୍ଥାନକୁ ନାମିତ କରି ତାହା ବିଲ୍ୱ ମଙ୍ଗଳ ଜନ୍ମସ୍ଥାନ ବୋଲି ପ୍ରଚାର କରୁଥିଲେ । ବାସ୍ତବରେ ବିଲ୍ୱ ମଙ୍ଗଳ ଯେପରି ସେଠାରେ ଜନ୍ମି ନଥିଲେ, ସେପରି ଜୟଦେବଙ୍କ ଜନ୍ମସ୍ଥାନ ଅଜୟ ନଦୀତୀରସ୍ଥ କେନ୍ଦୁଲୀ ଗ୍ରାମ ଐତିହାସିକମାନଙ୍କୁ ପ୍ରଚାର ମାଧ୍ୟମରେ ବିଭ୍ରାନ୍ତ କରୁଥିବା ଅନୁମେୟ ।

କବି ଜୟଦେବଙ୍କ ବିଷୟରେ ଅନ୍ୟ ଏକ ଅଦ୍ଭୁତ କିମ୍ବଦନ୍ତୀ ଭାରତର ପ୍ରାୟ ସର୍ବତ୍ର ପ୍ରଚଳିତ ହୋଇଛି । ତାହା ନିମ୍ନରେ ପ୍ରଦତ୍ତ ହେଲା ।

କବି ଜୟଦେବ ପ୍ରଥମେ ବିବାହ କରିବାକୁ ଇଚ୍ଛା କରିନଥିଲେ । କାରଣ ତାଙ୍କର ଯାଯାବର ସାଧୁ ଜୀବନ ଯାପନ କରିବା ଅଭିଳାଷ ଥିଲା । ଆଉ ମଧ୍ୟ ସେ ସଙ୍ଗୀତ ଏବଂ ସଂସ୍କୃତ ସାହିତ୍ୟରେ ପାରଦର୍ଶିତା ଲାଭ କରିଥିବାରୁ ପାରିବାରିକ ଧନ୍ଦାରେ ପଶି ତାଙ୍କ ଜୀବନର ଆଦର୍ଶରୁ ଦୂରେଇ ଯିବାକୁ ସେ ଇଚ୍ଛୁକ ନଥିଲେ । କିନ୍ତୁ ଦୈବର ନିବନ୍ଧ ଅନ୍ୟ ପ୍ରକାର ଥିଲା ।

ଏକଦା ଦେବଶର୍ମା ନାମକ ଜଣେ ଅପୁତ୍ରିକ ବ୍ରାହ୍ମଣ ପଣ୍ଡିତ ଶ୍ରୀକ୍ଷେତ୍ରକୁ ଯାତ୍ରାକରି ଶ୍ରୀପୁରୁଷୋତ୍ତମଙ୍କ ମନ୍ଦିରରେ ମହାପ୍ରଭୁଙ୍କୁ ଦର୍ଶନ କରାବେଳେ ଜଣାଇଥିଲେ, 'ହେ, ପ୍ରଭୁ, ମୁଁ ସନ୍ତାନହୀନ ହୋଇ ଦୁଃଖ ପାଉଛି । ଆପଣଙ୍କ କୃପାରୁ ଯଦି ମୋର ସନ୍ତାନ ଜନ୍ମ ହୁଏ ତେବେ ପ୍ରଥମ ସନ୍ତାନଙ୍କୁ ଏଠାରେ ଆପଣଙ୍କ ସେବା ପାଇଁ ଉତ୍ସର୍ଗ କରିବି ।' ସେ ନିଜ ଗୃହକୁ ଫେରିଯିବା ପରେ ତାଙ୍କ ଏକ କନ୍ୟା ଜନ୍ମଲାଭ କଲା । ପରେ ପୁତ୍ର ମଧ୍ୟ ହୋଇଥିଲା । କନ୍ୟାଟି ଯୌବନରେ ପଦାର୍ପଣ କରିବା ଦେଖି ପୂର୍ବ ପ୍ରତିଶ୍ରୁତି ରକ୍ଷା କରିବାକୁ ଦେବଶର୍ମା କନ୍ୟା ପଦ୍ମାବତୀକୁ ସାଙ୍ଗରେ ଧରି ଶ୍ରୀକ୍ଷେତ୍ରରେ ଉପସ୍ଥିତ ହେଲେ । କିନ୍ତୁ ଶ୍ରୀମନ୍ଦିରରେ ସେହି ଯୁବତୀକୁ 'ଦେବଦାସୀ' ରୂପେ ନିଯୁକ୍ତି ନ ମିଳିବାରୁ ସ୍ୱପ୍ନରେ ଶ୍ରୀ ମହାପ୍ରଭୁଙ୍କ ଆଦେଶ ପାଇ ଶ୍ରୀଧାମରେ ରହିଥିବା ଜୟଦେବଙ୍କୁ କନ୍ୟାଦାନ କରି ତାଙ୍କର ସଙ୍ଗୀତ ଓ ନୃତ୍ୟ ବ୍ୟବସ୍ଥା କରିବା ଉଦ୍ଦେଶ୍ୟରେ ଜୟଦେବଙ୍କ ଆଶ୍ରମରେ ଉପସ୍ଥିତ ହେଲେ । ଜୟଦେବ ବିବାହ କରିବାକୁ ଅସ୍ୱୀକୃତ ହୋଇଥିଲେ ସୁଦ୍ଧା ତାଙ୍କୁ ମଧ୍ୟ ସ୍ୱପ୍ନରେ ମହାପ୍ରଭୁଙ୍କ ଆଦେଶ ମିଳିବାରୁ ସେ ଯଥାରୀତିରେ କନ୍ୟାର ପାଣିଗ୍ରହଣ କଲେ । ପଦ୍ମାବତୀକୁ ବୋଧହୁଏ ସେ ଗାନ୍ଧର୍ବ ବିଦ୍ୟା ଶିକ୍ଷା ଦେଇ ସେଥିରେ ତାଙ୍କୁ ସୁପଣ୍ଡିତା କରି ଗଢ଼ିଲେ ।

ଏଠାରେ ଲେଖିବା ଆବଶ୍ୟକ ଯେ, କବି ଜୟଦେବଙ୍କ ସଙ୍ଗେ ପଦ୍ମାବତୀଙ୍କର ବିବାହ ସଂପନ୍ନ ହେବା ପୂର୍ବରୁ ବୋଧହୁଏ ସେ ନୃତ୍ୟ ବିଦ୍ୟାରେ ପାରଦର୍ଶିତା ଲାଭ କରିଥିଲେ । ଦକ୍ଷିଣ ଭାରତରେ ତାଙ୍କୁ ଜଣେ ପ୍ରସିଦ୍ଧ ନର୍ତ୍ତକୀ ବୋଲି କୁହାଯାଉଥିଲା । ଏ ସମ୍ପର୍କରେ ଦର୍ଶଦେବଙ୍କର ୧୧୫୦ ଖ୍ରୀଷ୍ଟାବ୍ଦରେ ଗୁଣ୍ଟୁର ଜିଲ୍ଲାର ଗୋଟିଏ ଶିଳାଲେଖରେ ତାଙ୍କୁ 'ନର୍ତ୍ତକୀତିଳକାୟାଂ ପଦ୍ମାବତୀ' ବୋଲି ଲେଖାଅଛି ।

ବୈଷ୍ଣବ ଲୀଳାମୃତ କାବ୍ୟରେ ଉଲ୍ଲେଖ ଅଛି ପୌଷ ପୂର୍ଣ୍ଣମୀ ତିଥିରେ ଏହି ବୈଷ୍ଣବ ଗୋଷ୍ଠୀ ଏକାମ୍ର କ୍ଷେତ୍ର ଭୁବନେଶ୍ୱରକୁ ପ୍ରତିବର୍ଷ ଯାଉଥିଲେ । କୃତ୍ତିବାସ ଲିଙ୍ଗରାଜଙ୍କୁ ଏମାନେ ଉଭୟ ତୁଳସୀ ଓ ବିଲ୍ୱଦଳରେ ପୂଜାକରି କୀର୍ତ୍ତନ କରୁଥିଲେ । ଅନନ୍ତ ବାସୁଦେବ ମନ୍ଦିରରେ କୀର୍ତ୍ତନ କରି ପ୍ରସାଦ ସେବନ କରୁଥିଲେ । ଗୌରୀକୁଣ୍ଡରେ ସ୍ନାନ କରି କେଦାରେଶ୍ୱରଙ୍କୁ ପୂଜା କରୁଥିଲେ । ବିନ୍ଦୁସାଗରରେ ଅବଗାହନ କରି ଆନନ୍ଦିତ ହେଉଥିଲେ ।

ଏକାମ୍ର କ୍ଷେତ୍ରରୁ ଏମାନେ ପ୍ରତିବର୍ଷ ମକରମେଳାରେ ଯୋଗଦେବା ପାଇଁ ନିଆଳି ମାଧବ ମନ୍ଦିରକୁ ଯାଉଥିଲେ । ପ୍ରାଚୀ ନଦୀରେ ସ୍ନାନ କରି ନିଆଳି ମାଧବଙ୍କ ମନ୍ଦିରରେ କୀର୍ତ୍ତନ କରୁଥିଲେ । ଏହି ମନ୍ଦିରର ଅଦୂରରେ କେନ୍ଦୁଳି ଶାସନ - ଶ୍ରୀ ଗୀତଗୋବିନ୍ଦକାର ଜୟଦେବଙ୍କ ଜନ୍ମସ୍ଥାନ । ଶ୍ରୀ ଚୈତନ୍ୟ ଓ ପଞ୍ଚସଖାଙ୍କ ପାଇଁ ଏହା ଥିଲା ଏକ ତୀର୍ଥସ୍ଥାନ । ସେମାନେ କେନ୍ଦୁଳି ଗ୍ରାମ ମଧ୍ୟରେ ଗୀତ-ଗୋବିନ୍ଦର ପଦ ଗାନ କରି କୀର୍ତ୍ତନ କରୁଥିଲେ ଓ ଭାବରସରେ ବିହ୍ୱଳ ହେଉଥିଲେ । ଷୋଡ଼ଶ

ଶତାବ୍ଦୀର ମଧ୍ୟଭାଗ ପର୍ଯ୍ୟନ୍ତ କେନ୍ଦୁଲୀ ଗ୍ରାମ ଓ ତତ୍ସଂପୃକ୍ତ ଜୟଦେବଙ୍କ ସ୍ମୃତି ଅକ୍ଷୁଣ୍ଣ ଥିବା ଏଥିରୁ ଜଣାଯାଏ ।

କେନ୍ଦୁଳୀର ମକରମେଳାରେ କୀର୍ତ୍ତନ କରିସାରି ଏହି ବୈଷ୍ଣବ ଗୋଷ୍ଠୀ ଦିନସପ୍ତମୀକୁ ଚନ୍ଦ୍ରଭାଗାରେ ଆଦିତ୍ୟ ବିଷ୍ଣୁଙ୍କ କ୍ଷେତ୍ରରେ କୀର୍ତ୍ତନ କରିବାକୁ ଯାଉଥିଲେ । ଆଦିତ୍ୟ ବିଷ୍ଣୁଙ୍କର ଅର୍ଚ୍ଚନା କରି ଏମାନେ କୋଣାର୍କ ମନ୍ଦିରରେ ପୂଜା ପାଉଥିବା ସୂର୍ଯ୍ୟ ଦେବତାଙ୍କର କ୍ଷିରୀ ଲଡୁ ଭୋଗ ଆସ୍ୱାଦନ କରୁଥିଲେ । ସମୁଦ୍ରରେ ସ୍ନାନ କରି ଅରୁଣ ସୂର୍ଯ୍ୟ ଦର୍ଶନରେ ଚୈତନ୍ୟଙ୍କର ମହାଭାବ ଜାତ ହେଉଥିଲା । ଏଥିରୁ ନିର୍ଦ୍ଦିଷ୍ଟ ଭାବରେ ଜଣାଯାଏ ଯେ, ବୈଷ୍ଣବ ଲୀଳାମୃତ କାବ୍ୟର ରଚନାକାଳ ପର୍ଯ୍ୟନ୍ତ (ଖ୍ରୀ: ୧୫୩୫ ) କୋଣାର୍କରେ ସୂର୍ଯ୍ୟଦେବତାଙ୍କର ପୂଜାଅର୍ଚ୍ଚନା ଅବ୍ୟାହତ ଥିଲା ଏବଂ ପ୍ରତିଦିନ ଠାକୁରଙ୍କ ନିକଟରେ କ୍ଷିରୀ ଲଡୁ ଭୋଗ ଦିଆଯାଉଥିଲା । ଖ୍ରୀ ୧୫୩୫ ପର୍ଯ୍ୟନ୍ତ କୋଣାର୍କ ମନ୍ଦିର ଅକ୍ଷୁଣ୍ଣ ଥିବା ଏଥିରୁ ପ୍ରମାଣିତ ହୁଏ । ଏହି ପ୍ରସିଦ୍ଧ ବୈଷ୍ଣବ ଗୋଷ୍ଠୀ ଚନ୍ଦ୍ରଭାଗାରୁ କାକଟପୁର ମଙ୍ଗଳାଙ୍କୁ ଦର୍ଶନ କରି ଓ ସେଠାରେ କୀର୍ତ୍ତନ କରି ପୁରୀକୁ ଫେରୁଥିଲେ ।

ଉପରୋକ୍ତ ତଥ୍ୟଭିତ୍ତିକ ଲେଖାଗୁଡ଼ିକର ଅନୁଶୀଳନରୁ ଜଣାଯାଏ ଯେ, ଶ୍ରୀ ଜୟଦେବଙ୍କ ଜନ୍ମସ୍ଥାନ ସମ୍ବନ୍ଧରେ ଆଉ କୌଣସି ବାଦବିସମ୍ବାଦର ପ୍ରଶ୍ନ ନାହିଁ । ଜୟଦେବ ଯଦି ବଙ୍ଗଳାରେ ଜନ୍ମ ହୋଇଥାନ୍ତେ ତେବେ ଶ୍ରୀ ଚୈତନ୍ୟ ସଂକୀର୍ତ୍ତନ ପଦଯାତ୍ରାରେ ପଞ୍ଚସଖାଙ୍କ କଥା ଅନୁସାରେ ତାଙ୍କ ଜନ୍ମସ୍ଥାନ କେନ୍ଦୁଲୀ ଶାସନକୁ ଯାଇ ଶାସନ ଦାଣ୍ଡରେ ଗୀତଗୋବିନ୍ଦର ପଦାବଳୀ ବୋଲି କୀର୍ତ୍ତନ କରିନଥାନ୍ତେ । ୧୫୩୫ ମସିହାରେ ଲିଖିତ ଏହି କାବ୍ୟ ଏବଂ ଡଃ ରାଜଗୁରୁଙ୍କର ଅମୂଲ୍ୟ ଗବେଷଣାପ୍ରସୂତ ତଥ୍ୟାବଳୀରୁ ଏହା ସ୍ପଷ୍ଟ ଯେ, କେନ୍ଦୁଳୀରେ ଜନ୍ମ ହୋଇଥିବା ଜୟଦେବ ଓ କୂର୍ମପାଟକର ସାଧୁ ପ୍ରଧାନ ଜୟଦେବ ଦୁହେଁ ଏକ ଏବଂ ଅଦ୍ୱିତୀୟ ।

ଅବଲମ୍ବନ - ୰ ମାଧବ ପଟ୍ଟନାୟକ : ବୈଷ୍ଣବ ଲୀଳାମୃତ
ଡ଼ଃ. ସତ୍ୟନାରାୟଣ ରାଜଗୁରୁ : ମହାକବି ଜୟଦେବ ଓ ଗୀତଗୋବିନ୍ଦ

## ଦାମନଯୋଡ଼ି ବର୍ଷା ସାହିତ୍ୟ ସଂସଦ ସାରସ୍ୱତ ସମାରୋହ

ଗତ ଏପ୍ରିଲ ୬ ତାରିଖରେ ବର୍ଷା ସାହିତ୍ୟ ସଂସଦ ତରଫରୁ ଏକ ରାଜ୍ୟସ୍ତରୀୟ ସାରସ୍ୱତ ସମାରୋହ ପୁସ୍ତକମେଳାର ଆୟୋଜନ କରାଯାଇଥିଲା । ଏହାର ବିଶିଷ୍ଟ ସାହିତ୍ୟିକ ଡଃ ନିତ୍ୟାନନ୍ଦ ଶତପଥୀ ମୁଖ୍ୟ ଅତିଥି ଏବଂ ପ୍ରଫେସର ରାଜ କିଶୋର ମିଶ୍ର ଏବଂ ଶ୍ରୀ ମହେଶ୍ୱର ମୁନିଆ ଆଲୋଚକ ରୂପେ ଯୋଗଦାନ କରିଥିଲେ । ଏହି ଉତ୍ସବରେ ଓଡ଼ିଶାର ବିଭିନ୍ନ ପ୍ରାନ୍ତରୁ ବହୁ ସାହିତ୍ୟିକ ଓ ସାହିତ୍ୟପ୍ରେମୀ ବ୍ୟକ୍ତିମାନଙ୍କର ସମାଗମ ହୋଇଥିଲା । ନାଲକୋର ଅବସରପ୍ରାପ୍ତ କାର୍ଯ୍ୟନିର୍ବାହୀ ନିର୍ଦ୍ଦେଶକ ଶ୍ରୀ ସତ୍ୟବ୍ରତ ପଟ୍ଟନାୟକ ଏଥିରେ ସମ୍ମାନିତ ଅତିଥି ରୂପେ ଯୋଗଦେଇ ଥିଲେ ।

ପୂର୍ବାହ୍ନ ଅଧିବେଶନ ଶ୍ରୀ ବୈଦ୍ୟନାରାୟଣ ସ୍ୱାଇଁଙ୍କ ସଭାପତିତ୍ୱରେ ଅନୁଷ୍ଠିତ ହୋଇଥିଲା । ବର୍ଷାର ସଭାପତି ଶ୍ରୀ ରାଜକୁମାର ସୂତାରଙ୍କ ସ୍ୱାଗତ ସମ୍ଭାଷଣ ପରେ 'ଆଧୁନିକ ଓଡ଼ିଆ ସାହିତ୍ୟର ଗତି ଓ ପ୍ରକୃତି' ବିଷୟରେ ମୁଖ୍ୟ ଅତିଥି ଓ ଆଲୋଚକ ଦ୍ୱୟ ଭାଷଣ ଦେଇଥିଲେ । ମୁଖ୍ୟ ଅତିଥି ଡଃ ଶତପଥୀ ତାଙ୍କ ଭାଷଣରେ ଓଡ଼ିଆ ସାହିତ୍ୟ ବିଶେଷତଃ ଓଡ଼ିଆ କବିତା ଆଜି ସର୍ବଭାରତୀୟ ସ୍ତରରେ ଅତି ଉଚ୍ଚରେ ଅଛି ବୋଲି ମତ ପ୍ରକାଶ କରିଥିଲେ । ଆଲୋଚକ ପ୍ରଫେସର ମିଶ୍ର ଓ ଶ୍ରୀ ମୁନିଆ କୋରାପୁଟ ଜିଲ୍ଲାର ଏହି ଉପାନ୍ତ ଅଞ୍ଚଳରେ ବର୍ଷା ସାହିତ୍ୟ ସଂସଦର ଭୂମିକାକୁ ଭୂୟସୀ ପ୍ରଶଂସା କରିଥିଲେ । ବିଷୟ ଉପସ୍ଥାପନା କରିଥିଲେ ଶ୍ରୀ ହର ପ୍ରସନ୍ନ ଦାସ । ବର୍ଷାର ସମ୍ପାଦକ ଶ୍ରୀ ଅମେୟ ବିକ୍ରମ ନନ୍ଦନ ଭୂୟାଁ ସଂପାଦକୀୟ ବିବରଣୀ ପାଠ କରିଥିଲେ ।

ଏଥି ଉତ୍ସବରେ ନାଟ୍ୟକାର ଶ୍ରୀ ଶେଷଦେବ ଶତପଥୀ ଓ କବି ଶ୍ରୀ ସୁଶାନ୍ତ କୁମାର ଦାଶଙ୍କୁ ବର୍ଷା ତରଫରୁ ସମ୍ବର୍ଦ୍ଧନା ଦିଆଯାଇଥିଲା । ସଂସଦର ମୁଖପତ୍ର ''ବର୍ଷା''କୁ ମୁଖ୍ୟ ଅତିଥି ଉନ୍ମୋଚନ କରିଥିଲେ । ଏହା ବ୍ୟତୀତ ଡାକ୍ତର ରୁଦ୍ରନାରାୟଣ ଦାଶଙ୍କ ସ୍ୱାସ୍ଥ୍ୟ ଭିତ୍ତିକ ପୁସ୍ତକ 'ମହାମାରୀ ଏଡ୍‌ସ'', ଡାକ୍ତର ପ୍ରଦୀପ୍ତ କୁମାର ରାଉତରାୟଙ୍କ ଗଳ୍ପ ସଂକଳନ ''ଜାମା'' ଶ୍ରୀ ଅଶ୍ୱିନ ସୂତାରଙ୍କ କବିତା ସଙ୍କଳନ ''ଅମୂର୍ତ୍ତ ଅବସାଦ'' ଓ ଶ୍ରୀ ଅମେୟ ବିକ୍ରମ ନନ୍ଦନ ଭୂୟାଁଙ୍କ କବିତା ପୁସ୍ତକ ''ମୁହୂର୍ତ୍ତେ ନିର୍ବାଣ'' ଉନ୍ମୋଚିତ ହୋଇଥିଲା ।

ଅପରାହ୍ନ ଅଧିବେଶନରେ ଡଃ ପ୍ରଦୀପ୍ତ କୁମାର ରାଉତରାୟଙ୍କ ଆବାହନରେ ଏକ କବିତା ପାଠୋତ୍ସବର ଆୟୋଜନ କରାଯାଇଥିଲା । ଏଥିରେ ଡାକ୍ତର ରୁଦ୍ରନାରାୟଣ ଦାଶ ସଭାପତିତ୍ୱ କରିଥିଲେ ଓ ପ୍ରଫେସର ରାଜକିଶୋର ମିଶ୍ର ମୁଖ୍ୟ ଅତିଥି ରୂପେ ଯୋଗଦାନ କରିଥିଲେ । ଏଥିରେ ପ୍ରାୟ ୫୦ ଟି କବିତା ପାଠକରାଯାଇଥିଲା । ଶ୍ରୀ ଅରୁଣ କୁମାର ନାୟକ ଓ ଶ୍ରୀମତୀ ପ୍ରତିଭା ମିଶ୍ରଙ୍କ ସାବଲୀଳ ସଂଯୋଜନାରେ କବିତା ପାଠ ଅତ୍ୟନ୍ତ ମନୋମୁଗ୍ଧକର ଓ ହୃଦୟ ସ୍ପର୍ଶୀ ହୋଇଥିଲା । ସପ୍ତଧାରା (ଜୟପୁର), ଚନ୍ଦ୍ରିକା (ସୁନାବେଡ଼ା), ବନଫୁଲ (ସୁନାବେଡ଼ା) ଓ ସଭା ସାହିତ୍ୟ ସଂସଦ ( କୋରାପୁଟ) ଇତ୍ୟାଦି ବହୁ ସାହିତ୍ୟ ଅନୁଷ୍ଠାନର ସଦସ୍ୟ/ ସଦସ୍ୟାମାନେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ ।

ପୂର୍ବାହ୍ନ, ଅଧିବେଶନରେ ଶ୍ରୀ ପ୍ରଦୀପ କୁମାର ପଟ୍ଟଯୋଶୀ ଅପରାହ୍ନ ଅଧିବେଶନରେ ସଂସଦର ସହସଂପାଦକ ଶ୍ରୀ ନନ୍ଦନୀକାନ୍ତ ସେନାପତି ଧନ୍ୟବାଦ ଅର୍ପଣ କରିଥିଲେ ।

# ଶ୍ରୀ ମନ୍ଦିର ଇତିହାସରେ "ଗୀତଗୋବିନ୍ଦ"

*ଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ତ୍ରିପାଠୀ*

**ଶ୍ରୀ** ଜଗନ୍ନାଥଙ୍କ ସେବା ବ୍ୟବସ୍ଥା ପ୍ରକୃତରେ ବର୍ତ୍ତମାନର ମନ୍ଦିର ପ୍ରତିଷ୍ଠା ହେବା ପୂର୍ବରୁ ବା ପରେ ହୋଇଛି ତାହାର କୌଣସି ସଠିକ ଇତିହାସ ନ ଥିଲେ ମଧ୍ୟ "ମାଦଳାପାଞ୍ଜିରୁ" ଜଣାଯାଏ ଯେ ଗଙ୍ଗ ସମ୍ରାଟ ଦ୍ୱିତୀୟ ଅନଙ୍ଗଭୀମ ଦେବ (ଖ୍ରୀ ୧୨୧୧-୧୨୩୮)ଙ୍କ ରାଜତ୍ୱ କାଳରୁ ଅର୍ଥାତ୍ ବର୍ତ୍ତମାନର ମନ୍ଦିର ପୂର୍ଣ୍ଣାଙ୍ଗ ହୋଇ ପ୍ରତିଷ୍ଠା ହେବାପରେ ସେବାପୂଜା ଖଞ୍ଜାର ବ୍ୟବସ୍ଥା କରାଯାଇଥିଲା । ମନ୍ଦିରରେ ଶ୍ରୀ ଜଗନ୍ନାଥଙ୍କ ସେବାର ସୁପରିଚାଳନା ନିମନ୍ତେ ତତ୍କାଳୀନ ସମାଜର ୩୬ ଟି ସଂପ୍ରଦାୟ ମଧ୍ୟରୁ କେତେଜଣଙ୍କୁ ନିଯୁକ୍ତି ଦିଆଯାଇଥିଲା, ଯାହାକୁ ଛତିଶା ନିଯୋଗ ବୋଲି କୁହାଯାଉଥିଲା । ଏହି ନିଯୋଗକୁ ମୁଖ୍ୟତଃ ତିନି ଭାଗରେ ବିଭକ୍ତ କରାଯାଇଥାଏ । (୧) ପ୍ରତିହାରୀ ନିଯୋଗ (୨) ସୁଆର ଓ ମହାସୁଆର ନିଯୋଗ (୩) ଭିତରଛୁ ନିଯୋଗ । ଏହି ସେବାକାର୍ଯ୍ୟ ତଦାରଖ କରିବା ନିଯୋଗର ପ୍ରତିନିଧିଙ୍କ କାର୍ଯ୍ୟଥିଲା । ଗଜପତି ମହାରାଜା ଏହି ସମସ୍ତ ନିଯୋଗର ମୁଖ୍ୟ । ସେବାରେ ତ୍ରୁଟି ଦେଖାଦେଲେ ତାଙ୍କର ଦଣ୍ଡଦେବାର ଅଧିକାର ଅଛି । ପୁରୁଷାନୁକ୍ରମେ କେତେ ଉତ୍ଥାନ ପତନ ମଧ୍ୟରେ ଏହି ସେବାମାନ ଆଜି ପର୍ଯ୍ୟନ୍ତ ଚଳିଆସୁଛି । ୧୫୬୮ ଖ୍ରୀ ଅ.ରେ. କଳିଙ୍ଗର ଶେଷ ସ୍ୱାଧୀନ ଗଜପତି ମୁକୁନ୍ଦ ଦେବଙ୍କର ବିଶ୍ୱାସଘାତକଙ୍କ ଦ୍ୱାରା ମୃତ୍ୟୁ ପରଠାରୁ ଖ୍ରୀ.ଅ. ୧୭୫୧ ମରହଟ୍ଟା ରାଜତ୍ୱ ଆରମ୍ଭ ପର୍ଯ୍ୟନ୍ତ କଳିଙ୍ଗ ମୁସଲମାନମାନଙ୍କ ଅଧୀନରେ ଥିଲା । ଏହି ସମୟ ମଧ୍ୟରେ ଜଗନ୍ନାଥଙ୍କ ମନ୍ଦିର ଉପରେ ବହୁବାର ବୈଦେଶିକ ଆକ୍ରମଣ ହୋଇଛି । କେତେବେଳେ ଜଗନ୍ନାଥ ପୁରୀ ଶ୍ରୀ ମନ୍ଦିର ଛାଡ଼ି ଘୋର ଅରଣ୍ୟ ମଧ୍ୟରେ ତ କେତେବେଳେ ତାଙ୍କୁ ମାଟିତଳେ ପୋତିକରି ରଖାଯାଇଛି । ଏହି ସମୟ ମଧ୍ୟରେ ସେବା ପୂଜାରେ ବହୁ ବ୍ୟାଘାତ ସୃଷ୍ଟି ନିଶ୍ଚୟ ହୋଇଥିବ । ମାତ୍ର ମନ୍ଦିର ମଧ୍ୟରେ ଠାକୁରମାନଙ୍କ ପୁନଃ ପ୍ରତିଷ୍ଠା ପରେ ସେବାରେ କୌଣସି ତ୍ରୁଟି ହେବାର ଦୃଷ୍ଟାନ୍ତ ନାହିଁ । ୧୭୫୧ ଖ୍ରୀ. ରେ ମରହଟ୍ଟା ଶାସକମାନେ ପୁରୀ ସହ ଓଡ଼ିଶାର କେତେକ ଅଞ୍ଚଳ ଦଖଲ କଲାପରେ ଜଗନ୍ନାଥଙ୍କର ପ୍ରତିଦିନର ସେବା ତଦାରଖ ନିମନ୍ତେ କର୍ମଚାରୀ ନିଯୁକ୍ତ କରିଥିଲେ ଓ ସେମାନେ ରାଜକର୍ମଚାରୀଭାବେ ପରିଗଣିତ ହେଉଥିଲେ । ୧୮୦୩ ଖ୍ରୀ ରେ ଇଂରେଜ ଶାସକମାନେ ଓଡ଼ିଶା ଶାସନକୁ ଆସିବା ପରେ ୧୮୦୫ ଖ୍ରୀ:ଅରେ ମିଃ.ସି. ଗ୍ରୋଭ ନାମକ ଜଣେ ଇଂରେଜ ରାଜକର୍ମଚାରୀ ଜଗନ୍ନାଥ ମନ୍ଦିର ସେବା ସମ୍ପର୍କରେ ଏକ ରିପୋର୍ଟ ପ୍ରସ୍ତୁତ କରିଥିଲେ ଓ ଏହା ପ୍ରଚଳିତ ସେବା ପୂଜାକୁ ଭିତ୍ତିକରି କରାଯାଇଥିଲା । ଏହି ରିପୋର୍ଟ ଅନୁଯାୟୀ ଶ୍ରୀମନ୍ଦିରରେ ୩୬ ଟି ସେବା ପ୍ରତିଷ୍ଠାନ ଥିଲା । ସେତେବେଳେ ଜଗନ୍ନାଥଙ୍କ ସେବାରେ ସମୁଦାୟ ୨୪୦ ଜଣ ବ୍ୟକ୍ତି ନିଯୁକ୍ତ ଥିଲେ । ଏହି ସେବା ତାଲିକାରେ ଗୀତଗୋବିନ୍ଦ ସେବା ଓ ଦେବଦାସୀ ସେବା ନାମରେ ଦୁଇଟି ସେବା ପ୍ରଥା ପ୍ରଚଳିତ ଥିବା ଦେଖାଯାଏ । ଏହି ସେବା କାର୍ଯ୍ୟପାଇଁ ବହୁ ମେଧାବୀ କଳାକୁଶଳୀଙ୍କୁ ନିଯୁକ୍ତି ଦିଆଯାଉଥିଲା । ସେମାନେ ରାଜକର୍ମଚାରୀ ଭାବେ ବିବେଚିତ ହେଉଥିଲେ ଓ କର୍ମଚାରୀମାନଙ୍କ ନିମନ୍ତେ ଉଦ୍ଦିଷ୍ଟ ସମସ୍ତ ପ୍ରକାରର ସୁବିଧା ଓ ସୁଯୋଗ ରାଜାଙ୍କଠାରୁ ପାଇ ପାରୁଥିଲେ । ଏହି ସେବା ସବୁକୁ ଅନୁଧ୍ୟାନ କରିବା ପାଇଁ ଚପଳାକାନ୍ତ ଚଟୋପାଧ୍ୟାୟ ନାମକ ଜଣେ ବଙ୍ଗୀୟ ବ୍ରାହ୍ମଣ ପଣ୍ଡିତଙ୍କୁ ଇଂରେଜ ସରକାର ନିଯୁକ୍ତି ଦେଇଥିଲେ । ଦେବଦାସୀ ପ୍ରଥା ବ୍ୟଭିଚାରକୁ ଉତ୍ସାହିତ କରୁଛି ଓ ମାହାରୀ (ଦେବଦାସୀ) ନୃତ୍ୟ ଏକ ଦୁର୍ବଳ ଭିତ୍ତି ଉପରେ ପ୍ରତିଷ୍ଠିତ ବୋଲି ରିପୋର୍ଟ ଦେବାପରେ ଇଂରେଜ ସରକାର ଏହି ଦୁଇ ସେବାର ପରିସରକୁ ସଂକୁଚିତ କରି ଦେଇଥିଲେ । ଏହି ଗୀତଗୋବିନ୍ଦ ସେବା ଓ ଦେବଦାସୀ ସେବା ବଂଶାନୁକ୍ରମିକ ସେବା ଭାବରେ Record of Right ରେ ଉଲ୍ଲେଖ ଅଛି । ଗୀତ ଗୋବିନ୍ଦ ସେବା ଜଗନ୍ନାଥଙ୍କ ସମ୍ମୁଖ ଜୟ ବିଜୟ ଦ୍ୱାରରେ ସଂଧ୍ୟାବେଳେ କରାଯାଇଥାଏ । ଆରତି ଓ ସନ୍ଧ୍ୟା ଧୂପ ପରେ ଜଗନ୍ନାଥଙ୍କୁ ବଡ଼ସିଂହାର କରାଯାଏ ଓ ଏହାପରେ ବୀଣା ବାଦନ ସହିତ ଗୀତଗୋବିନ୍ଦ ବୋଲାଯାଏ । ଠାକୁରମାନଙ୍କ ଉପରେ ଗୀତ ଗୋବିନ୍ଦ ଖଣ୍ଡୁଆମାନ ଘୋଡ଼ାଇ ଦିଆଯାଇଥାଏ । ଏହାକୁ 'ଟାଙ୍ଗଡ଼ା ମେକାପ କହିଥାନ୍ତି । ରାତ୍ରର ବଡ଼ସିଂହାର ବେଳେ ଦେବଦାସୀମାନେ ଗୀତଗୋବିନ୍ଦ ଗାଇ ଠାକୁରମାନଙ୍କ ଆଗରେ ନୃତ୍ୟ କରିଥାନ୍ତି । ଦେବଦାସୀମାନଙ୍କୁ ମାହାରୀ ଓ ଏହି ନୃତ୍ୟକୁ ରାହାସ ନୃତ୍ୟ କୁହାଯାଇଥାଏ । ଏହି ମାହାରୀ ବା ରାହାସ ନୃତ୍ୟ ପରବର୍ତ୍ତୀ କାଳରେ ଓଡ଼ିଶୀ ନୃତ୍ୟ ନାମରେ ନାମିତ ହୋଇଛି ।

ମାଦଳା ପାଞ୍ଜିରୁ ଜଣାଯାଏ କଳିଙ୍ଗର ଗଙ୍ଗ ସମ୍ରାଟ ନରସିଂହ ଦେବ (ଖ୍ରୀ.ଅ ୧୨୭୮ -୧୩୦୭) ଜଗନ୍ନାଥଙ୍କ ମନ୍ଦିରରେ ଗୀତ ଗୋବିନ୍ଦ ଗାନର ଶୁଭ ଦେଇଥିଲେ । "ଏ ଉତ୍ତାରୁ କବି ନରସିଂହ ଦେଉ ରାଜା ହୋଇଲେ । ଗୀତ ଗୋବିନ୍ଦ ଶିଲୋର କଲେ", (ମାଦଳାପାଞ୍ଜି ପ୍ରାଚୀ ସଂସ୍କରଣ, ପୃଷ୍ଠା - ୩୧)। କବି ନରସିଂହ ଦେବ ଇତିହାସରେ ଗଙ୍ଗ ସମ୍ରାଟ ଦ୍ୱିତୀୟ ନରସିଂହ ଦେବ ଭାବେ ପ୍ରଚାରିତ । ମାତ୍ର ସମ୍ରାଟ କାମାର୍ଣ୍ଣବ ଦେବ

(ଖ୍ରୀ.ଅ ୧୧୪୬-୧୧୫୬) ପ୍ରତ୍ୟହ ଗୀତଗୋବିନ୍ଦ ନ ଶୁଣି ଜଳଗ୍ରହଣ କରୁନଥିଲେ ବୋଲି ମାଦଳା ପାଞ୍ଜିରେ ଉଲ୍ଲେଖ ଅଛି । ସମ୍ରାଟ କାମାର୍ଣ୍ଣବ ଦେବ କଳିଙ୍ଗରେ ଗଙ୍ଗ ସାମ୍ରାଜ୍ୟର ପ୍ରତିଷ୍ଠାତା ଚୋଡ଼ଗଙ୍ଗ ଦେବଙ୍କ ଜ୍ୟେଷ୍ଠପୁତ୍ର ଓ ଇତିହାସରେ ତାଙ୍କୁ ମଧ୍ୟ ଏକଜଟା ଦେବ ବୋଲି କହିଥାନ୍ତି । ଶ୍ରୀମନ୍ଦିରର ମୁଖଶାଳା ପ୍ରତିଷ୍ଠା ଦିନ ହିଁ କାମାର୍ଣ୍ଣବ ଦେବ ରାଜଗାଦିରେ ଅଭିଷକ୍ତ ହୋଇଥିବାର ବର୍ଣ୍ଣନା ରହିଛି । ଗଙ୍ଗ ସମ୍ରାଟ ଦ୍ୱିତୀୟ ନରସିଂହ ଦେବ ଜଗନ୍ନାଥ ମନ୍ଦିରରେ ଗୀତଗୋବିନ୍ଦ ଶୁଣୁଥିବା ବୋଲି ଯାହା ଉଲ୍ଲେଖ ଅଛି ତାହାର ବହୁ ପୂର୍ବରୁ ଗୀତ-ଗୋବିନ୍ଦ ରଚିତ ହୋଇ ରାଜ ପ୍ରଶସ୍ତି ଲାଭ କରିଥିଲା । ତାହା ନ ହୋଇଥିଲେ ସମ୍ରାଟ କାମାର୍ଣ୍ଣବ ଦେବ ପ୍ରତ୍ୟହ ଗୀତଗୋବିନ୍ଦ ଶୁଣିବା ଉଲ୍ଲେଖ କରାଯାଇ ନଥାନ୍ତା । ଗୀତଗୋବିନ୍ଦ ମଧ୍ୟ ଏହି ସମୟରେ ସେବାରେ ସ୍ଥାନ ପାଇ ପାରିଥିଲା ଓ କୌଣସି କାରଣରୁ ତାହା ବନ୍ଦ ହୋଇଯାଇଥିବାରୁ ତାହାର ବହୁ ଦିନ ପରେ ସମ୍ରାଟ ନରସିଂହ ଦେବ ପୁନର୍ବାର ଗୀତଗୋବିନ୍ଦକୁ ମନ୍ଦିର ସେବାରେ ପ୍ରଚଳନ କରାଇଛନ୍ତି ।

୧୯୫୬ ମସିହାରେ ଶ୍ରୀଜଗନ୍ନାଥ ମନ୍ଦିର ଆଇନ ପ୍ରଣୟନ ଓଡ଼ିଶା ସରକାର କରିବାପରେ ସମସ୍ତ ସେବାକୁ ଆଇନର ପରିସର ମଧ୍ୟକୁ ନିଆଯାଇଛି । ଏହା ଅନୁଯାୟୀ ସମୁଦାୟ ୧୧୯ ସେବା ପ୍ରତିଷ୍ଠାନ ଅଛି ଓ ଏହା ବଂଶାନୁକ୍ରମିକ ଭାବେ Record of Right ରେ ଉଲ୍ଲେଖ କରାଯାଇଛି । ଶ୍ରୀ ଜଗନ୍ନାଥଙ୍କ ମନ୍ଦିର ଆଇନ ହେବା ପୂର୍ବରୁ "ତାମ୍ବୁ ଡିଟୋଲ" ନାମରେ ସେବାଧିକାର ବଂଶାନୁକ୍ରମିକ ଭାବେ ଦିଆଯାଉଥିଲା । ଏହି ସେବା ମଧ୍ୟରେ ଆମର ଆଲୋଚ୍ୟ ଗୀତଗୋବିନ୍ଦ ସେବା, ଦେବଦାସୀ ସେବା ଓ ସଂପ୍ରଦା ନିଯୋଗ ସଂପର୍କରେ ବିସ୍ତୃତ ବିବରଣୀ ନିମ୍ନରେ ପ୍ରଦତ୍ତ ହେଲା ।

**ଗୀତଗୋବିନ୍ଦ ସେବା**

ଏମାନେ ଖଟଶେଯ ବନ୍ଧା ସେବକ ଏବଂ ପ୍ରତ୍ୟହ ମନ୍ଦିରରେ ଚନ୍ଦନଲାଗି ସମୟରେ ଭିତର କାଠ ପାଖରେ ଗୀତ ଗୋବିନ୍ଦ ପାଠ କରନ୍ତି ।

**ଭିତର ଗାଆଣି ଦେବଦାସୀ ସେବା**

"ଏହି ସେବାରେ ସେବିକା ଦୈନିକ ବିଭିନ୍ନ ସମୟରେ ନୃତ୍ୟ ଓ ଗୀତଗୋବିନ୍ଦ ଗାଇବା କାର୍ଯ୍ୟ କରନ୍ତି । ଏହାଛଡ଼ା କାର୍ତ୍ତିକ ମାସରେ ବାଳଧୂପ ସମୟରେ, ଚନ୍ଦନ ଯାତ୍ରା (୪୨ ଦିନ) ରେ, ଆଲଟ ଲାଗିରେ, ୨୧ ଦିନ ଚାପରେ, ରୁକ୍ମିଣୀ ବିଭାରେ ଲକ୍ଷ୍ମୀଙ୍କ ମନ୍ଦିରରେ, ନୀଳାଦ୍ରି ବିଜେ ଦିନ ଭେଟ ମଣ୍ଡପକୁ ଲକ୍ଷ୍ମୀଙ୍କ ସହିତ ଯିବା ସମୟରେ, ଆଶ୍ୱିନ ମାସରେ ଷୋଳପୂଜା ସମୟରେ, ବିମଳାଙ୍କ ଧୂପରେ ଓ ପହୁଡ଼ରେ ଏମାନେ ଗୀତଗୋବିନ୍ଦ ବୋଲନ୍ତି ଓ ନୃତ୍ୟ କରିଥାନ୍ତି । ଏମାନେ ଖଟଶେଯ ବନ୍ଧା ଦେବଦାସୀ ସେବିକା । ନିୟମାନୁସାରେ ବିବାହ କିମ୍ବା ବ୍ୟଭିଚାର କରିପାରିବେ ନାହିଁ । ପାଣି ଛୁଆଁ ଜାତିର ଝିଅକୁ ନେଇ ପାଳିପାରିବେ, ଗୀତ ନୀତ ଜାଣିଲେ ଖଟଶେଯ ବନ୍ଧାଇ ପାରିବେ ଓ ଅସୁବିଧା ସମୟରେ ନାଚବାଲା ସଂପ୍ରଦା ନିଯୋଗ ବୁଲାଇ ପାରିବେ ।"

**ସଂପ୍ରଦା ନିଯୋଗ**

"ଦୈନିକ ସକାଳ ଧୂପ, ଚନ୍ଦନ ଲାଗି, ଚନ୍ଦନ ଯାତ୍ରା ଜଗମୋହନ ପହୁଡ଼ରେ, ଚାପ ଉପର ଓ ବାହୁଡ଼ା, ରୁକ୍ମିଣୀ ବିବାହ, ନୃତ୍ୟ ଓ ଗୀତବୋଲି ହୁଳହୁଳି ଦିଅନ୍ତି । ଏମାନେ ଦେବଦାସୀ ଗୋଷ୍ଠିର ଅଟନ୍ତି । ଅନ୍ୟ ଯୋଗ୍ୟତା ଭିତରେ ଗାଏଣୀଙ୍କ ଭଳି ଅଟେ ।"

ଗଙ୍ଗ ସମ୍ରାଟ ଦ୍ୱିତୀୟ ଭାନୁଦେବ (୧୩୦୬/୭-୧୩୨୮) ପୁରୁଷୋତ୍ତମ ଜଗନ୍ନାଥଙ୍କ ନାମରେ ରାଜ୍ୟ ଶାସନ କରୁଥିବାରୁ ତାଙ୍କୁ ପୁରୁଷୋତ୍ତମ ଦେବ କୁହାଯାଏ । ପୁରୀ ପଞ୍ଜାବୀ ମଠ ତାମ୍ର ଶାସନ ଅନୁଯାୟୀ ସେ ଗୋବିନ୍ଦ ଓ ଶ୍ରୀପତିଙ୍କର ଭକ୍ତଥିଲେ । ଗୀତ ଗୋବିନ୍ଦ ଅନୁସୃତ ଆହୁରି ଏକ ଗୀତ-ଗୋବିନ୍ଦ ଲେଖି ସେ ମନ୍ଦିର ସେବାରେ ପ୍ରଚଳନ ପାଇଁ ଉଦ୍ୟମ କରିବାରୁ ସେବାୟତ ଗୋଷ୍ଠୀ ଏହାର ବିରୋଧ କରିଥିଲେ । ମୂଳ ଗୀତ-ଗୋବିନ୍ଦର-ଏହାକୁ ରାଜ ସଂସ୍କରଣ ବୋଲି କୁହାଯାଉଥିଲା । ଏହି ରାଜ ସଂସ୍କରଣ ଗୀତ-ଗୋବିନ୍ଦର କେତେକ ଶ୍ଳୋକ ମୂଳ ଗୀତ ଗୋବିନ୍ଦରେ ସ୍ଥାନ ପାଇଲା । ଯାହାକୁକି ଗୀତ ଗୋବିନ୍ଦର ପ୍ରକ୍ଷିପ୍ତ ଶ୍ଳୋକ ବୋଲି କୁହାଯାଏ । ଗୀତ-ଗୋବିନ୍ଦର ପ୍ରସିଦ୍ଧ ଉତ୍କଳୀୟ ଟୀକାକାର କବିରାଜ ନାରାୟଣ ଦାସ ନିଜ ରଚିତ ସର୍ବାଙ୍ଗ ସୁନ୍ଦରୀ ଟୀକାରେ, ଏହି ପ୍ରକ୍ଷିପ୍ତ ଶ୍ଳୋକ ଗୁଡ଼ିକର ଟୀକା ଆଦୌ ଦେଇ ନାହାନ୍ତି । ଏ ସଂପର୍କୀୟ କିମ୍ବଦନ୍ତୀରେ ଅଛି ଜୟଦେବଙ୍କ ଗୀତ ଗୋବିନ୍ଦର ଶ୍ରେଷ୍ଠତ୍ୱ ସ୍ୱୀକାର କରିବାରୁ ନୈରାଶ୍ୟ ଜର୍ଜରିତ ଦ୍ୱିତୀୟ ଭାନୁଦେବ ଶ୍ରୀ ଜଗନ୍ନାଥଙ୍କ ଶରଣାପନ୍ନ ହେଲେ ଓ ମହାପ୍ରଭୁଙ୍କ ସ୍ୱପ୍ନାଦେଶରେ ରାଜାଙ୍କ ଗୀତ ଗୋବିନ୍ଦର ୧୨ ଟି ଶ୍ଳୋକ ମୂଳ ଗୀତ ଗୋବିନ୍ଦର ଶ୍ଳୋକ ସହ ବୋଲାଗଲା । ଏହି ପ୍ରଚଳିତ କିମ୍ବଦନ୍ତୀ ବ୍ୟତୀତ ଗୀତ ଗୋବିନ୍ଦର ପ୍ରକ୍ଷିପ୍ତ ଶ୍ଳୋକ ସଂପର୍କରେ ଆଉ ଅଧିକ କୌଣସି ଐତିହାସିକ ତଥ୍ୟ ନାହିଁ । ସୂର୍ଯ୍ୟବଂଶୀୟ ଗଜପତି ସମ୍ରାଟ ପୁରୁଷୋତ୍ତମ ଦେବ (ଖ୍ରୀ.ଅ. ୧୪୬୭-୧୪୯୭)ଙ୍କ ରାଜତ୍ୱ ସମୟରେ କବିଚନ୍ଦ୍ର ରାୟ ଦିବାକର ମିଶ୍ରୟ ମୂଳ ଗୀତଗୋବିନ୍ଦର ଅନୁକରଣରେ ଅଭିନବ ଗୀତ-ଗୋବିନ୍ଦ ଗଜପତି ପୁରୁଷୋତ୍ତମ ଦେବଙ୍କ ନାମରେ କରି ଶ୍ରୀମନ୍ଦିରର ଜଗନ୍ନାଥଙ୍କ ସେବା କରିବା ନିମନ୍ତେ ଉଦ୍ୟମ କରିବାରୁ ସେବାୟତ ମାନେ ତାହାର ବିରୋଧ କରି ତାହା ଗ୍ରହଣ କରି ନଥିଲେ । ପୁରୁଷୋତ୍ତମ ଦେବଙ୍କ ପରେ ତାଙ୍କ ପୁଅ ପ୍ରତାପରୁଦ୍ର ଦେବ (ଖ୍ରୀ.ଅ. ୧୪୯୭-୧୫୪୦) ଗଜପତି ସମ୍ରାଟ ହେଲେ । ପୁନର୍ବାର ଅଭିନବ ଗୀତ ଗୋବିନ୍ଦକୁ ସେବାରେ ପ୍ରଚଳନ ନିମନ୍ତେ ଉଦ୍ୟମ କରିବାରୁ ସେବାୟତ ଗୋଷ୍ଠୀ ଏହାର ବିରୋଧ କରିଥିଲେ । ସେବାୟତମାନେ ସେବା ସବୁକୁ ବଂଶାନୁକ୍ରମିକ ଗ୍ରହଣ କରି ନେଇଥାନ୍ତି ଓ ଏହାର ବ୍ୟତିକ୍ରମକୁ ବା ଉଚ୍ଛେଦକୁ ଆଦୌ ସହ୍ୟ କରି ପାରି ନାହାନ୍ତି । ରାଜଶକ୍ତିର ପ୍ରୟୋଗ ହେଲେ ମଧ୍ୟ ସେମାନେ କେବେହେଲେ ମୁଣ୍ଡ ନୁଆଇଁ ନାହାନ୍ତି ।

ଗଜପତି ସମ୍ରାଟ ପ୍ରତାପରୁଦ୍ର ଦେବଙ୍କ ଶ୍ରୀ ଜଗନ୍ନାଥ ମନ୍ଦିର ଗାତ୍ରରେ ଥିବା ଶିଳାଲେଖ ଆଦେଶ ନିମ୍ନରେ ଦିଆଗଲା । ପୁରୁଣା ଓଡ଼ିଆ ଲିପିରେ ଶିଳାଲେଖଟି ଦେଖିବାକୁ ମିଳେ ।

''ବୀର ଶ୍ରୀ ଗଜପତି ଗଉଡ଼େଶ୍ୱର ନବକୋଟୀ କର୍ଣ୍ଣାଟ କଳବରଗେଶ୍ୱର ବୀରବର ଶ୍ରୀ ପ୍ରତାପରୁଦ୍ର ମହାରାଜାଙ୍କର ସମସ୍ତ ୪ ଅଙ୍କ ଶ୍ରୀ ହୀ କକଡ଼ା ସୁ ୧୦ ବୁଧବାରେ ଅବଧାରିତ ଆଜ୍ଞାଁ ପ୍ରମାଣେ ବଡ଼ ଠାକୁରଙ୍କ ଶ୍ରୀ ଗୀତ-ଗୋବିନ୍ଦ ଠାକୁରଙ୍କ ଭୋଗବେଳେ ଏ ନାଟ ହୋଇବ । ସନ୍ଧ୍ୟା ଧୂପ ସରିଲାଠାରୁ ଏ ନାଟ ହୋଇବ । ବଡ଼ ଠାକୁରଙ୍କ ସଂପରଦା କପିଳେଶ୍ୱର ଠାକୁରଙ୍କ ବନ୍ଧା ନାଚଣୀମାନ ପୁରୁଣା ସଂପରଦା ତେଲଙ୍ଗୀ ସଂପରଦା ଏମାନେ ସବିହେଁ ବଡ଼ ଠାକୁରଙ୍କ ଗୀତ-ଗୋବିନ୍ଦ ହୁଁ ଆନ ଗୀତ ନ ସିଖିବେ, ଆନ ଗୀତ ନ ଗାଇବେ, ଆନ ଗୀତ ହୋଇ ପରମେଶ୍ୱରଙ୍କ ଛାମୁରେ ନ ହବ । ଏ ନାଟ ବିତରେକ ବଇଷ୍ଣବ ଗାଆଣ ୪ ଜଣ ଅଛନ୍ତି । ଏମାନେ ଗୀତ ଗୋବିନ୍ଦ ଗୀତ ହିଁ ଗାଇବେ । ଏହାଙ୍କ ଠାରୁ ଅଶିକ୍ଷିତମାନେ ଏକ ସ୍ୱରରେ ଶୁଣି ଗୀତ-ଗୋବିନ୍ଦ ଗୀତ ହିଁ ଶିଖୀବେ । ଆନ ଗୀତ ନ ଶିଖିବେ, ଏହା ଜେ ପରୀକ୍ଷା । ଆନ ଗୀତ ନାଟ କରାଇଲେ ଜାଣି ସେ ଜଗନ୍ନାଥ ଦ୍ରୋହ କରଇ ''। (Journal of Asiatic Society of Bengal - Vol -LXII - 1893 P.P.-97)।

''ଏହି ପରିସ୍ଥିତିକୁ ନିଜେ ଦେଖିଥିବା କବି ମାଧବ ପଟ୍ଟନାୟକ ସ୍ୱକୀୟ ବୈଷ୍ଣବ ଲୀଳାମୃତ ତୃତୀୟ ଅଧ୍ୟାୟରେ ବର୍ଣ୍ଣନା କରିଛନ୍ତି । ତାହା ହେଲେ କବିଚନ୍ଦ୍ର ରାୟ ଦିବାକର ମିଶ୍ର ପୁରୁଷୋତ୍ତମ ଦେବଙ୍କ ଦରବାରରେ ଅଭିନବ ଗୀତ-ଗୋବିନ୍ଦ ରଚନା କରି ରାଜାଙ୍କ ନାମରେ ଭଣିତା କରିଥିଲେ । ଜୟ-ଦେବଙ୍କ ଗୀତଗୋବିନ୍ଦ ଗାନ ପ୍ରତି ନିଷେଧାଦେଶ ପ୍ରଚାର ହେଲା । ସେବକେ ଏଥିରେ ସନ୍ତୁଷ୍ଟ ନଥିଲେ । ପୁରୁଷୋତ୍ତମ ଗଜପତିଙ୍କ ସ୍ୱର୍ଗାରୋହଣ ପରେ ଅର୍ଥାତ୍ ୧୪୯୭ ଖ୍ରୀ.ଅ.ରେ ସେବକେ ପୁଣି ଜୟଦେବଙ୍କ ଗୀତ-ଗୋବିନ୍ଦ ଚଳାଇବାର ଯତ୍ନ କଲେ । ଉଭୟ ଗୀତ ଗୋବିନ୍ଦ ଶ୍ରୀ ଜଗନ୍ନାଥଙ୍କ ଛାମୁରେ ଥୋଇ କବାଟ କିଳାଗଲା । ପ୍ରଭାତରେ ଦେଖାଗଲା ଜୟଦେବଙ୍କ ଗୀତ-ଗୋବିନ୍ଦ ଉପରେ ଅଛି । ତହୁଁ ଗଜପତି ପ୍ରତାପରୁଦ୍ର ଦେବ ଉଭୟ ଗୀତ-ଗୋବିନ୍ଦର ଗାୟନ ଲାଗି ବ୍ୟବସ୍ଥା ଖଞ୍ଜିଲେ । ଶ୍ରୀ ମନ୍ଦିର ଜୟ ବିଜୟ ଦ୍ୱାରରେ ଏହି ରାଜାଦେଶ ଉତ୍କୀର୍ଣ୍ଣ ହୋଇଛି । ଏଠାରେ କବିଙ୍କ ବର୍ଣ୍ଣନା ସହିତ ଜୟ ବିଜୟ ଶିଳାଲେଖ ପାଠର ସାମଞ୍ଜସ୍ୟ ଅଛି । ସଂଜ ଧୂପ ଠାରୁ ବଡ଼ ସିଂହାର ପର୍ଯ୍ୟନ୍ତ ବଡ଼ ଠାକୁରଙ୍କ ଗୀତ-ଗୋବିନ୍ଦ ଗାନ ହେବ ଏହା ପ୍ରଚାର ହେଲା । ବଡ଼ ଠାକୁରଙ୍କ ନାଚୁଣି ସଂପ୍ରଦାୟ, ପୁରୁଣା ନାଚୁଣୀ ସଂପ୍ରଦାୟ ଓ ତେଲିଙ୍ଗୀ ନାଚୁଣୀ ସଂପ୍ରଦାୟ- ଏହି ଚାରି ସଂପ୍ରଦାୟ ଉକ୍ତ ସମୟରେ କେବଳ ବଡ଼ ଠାକୁରଙ୍କ ଗୀତ ଗୋବିନ୍ଦ ଗାନ କରିବେ । ଏହା ବ୍ୟତୀତ ଦିବା ସମୟରେ ଜୟଦେବଙ୍କ ଗୀତଗୋବିନ୍ଦ ହିଁ ଗାନ କରାଯିବ । କ୍ରମେ ଦେଖାଗଲା ଜୟଦେବଙ୍କ ଗୀତ ଗୋବିନ୍ଦ ସଂଜଧୂପ ପରେ ମଧ୍ୟ ଗାନ କରାଗଲା । ଏଥିରେ କବିଚନ୍ଦ୍ର ରାୟ ଦିବାକର ମିଶ୍ର ଅପମାନିତ ହୋଇ ପ୍ରତିବାଦ କଲେ । ମାତ୍ର କିଛି ଫଳ ନ ହେବାରୁ ସେ ରାଜ ଦରବାର ପରିତ୍ୟାଗ କରି ବିଦେଶକୁ ଚାଲିଗଲେ । ଏଥିରେ ଜୀବଦେବ ଆଚାର୍ଯ୍ୟ ଓ ତାଙ୍କ ସମର୍ଥକମାନେ ସନ୍ତୁଷ୍ଟ ହେଲେ ।''
(ତୃତୀୟ ଅଧ୍ୟାୟ ଗୀତ - ୪-୩୭ ବୈଷ୍ଣବ ଲୀଳାମୃତ)

ସେହିପରି ଶ୍ରୀ ଚୈତନ୍ୟ ଦେବଙ୍କ କଥା ଦେଖାଯାଉ । ଶ୍ରୀ ଜଗନ୍ନାଥଙ୍କ ସେବାରେ ଭାଗ ନେବା ନିମନ୍ତେ ତାଙ୍କର କତିପୟ ଉତ୍କଳୀୟ ଭକ୍ତ ଉଦ୍ୟମ କରିବାରୁ ସେବକମାନେ ଏହାର ବିରୋଧ କରିଥିଲେ ।

ଏ ସମସ୍ତ ଆଲୋଚନାରୁ ଜଣାଯାଏ ଯେ ଶ୍ରୀ ମନ୍ଦିର ଇତିହାସରେ ମୂଳ-ସେବାର ବ୍ୟତିକ୍ରମ କେବେ ହେଲେ କରାଯାଇ ନାହିଁ । ସେବାୟତ ଗୋଷ୍ଠୀ ସେବାର ବ୍ୟତିକ୍ରମ ପାଇଁ କୌଣସି ସାଲିସ କରିଥିବା ମନ୍ଦିର ଇତିହାସରେ ଦେଖାଯାଏ ନାହିଁ । ଅନନ୍ତାଚାର୍ଯ୍ୟଙ୍କ ଲିଖିତ ପ୍ରପନ୍ନାମୃତ (ଅଧ୍ୟାୟ ୩୫/୩୬) ଗ୍ରନ୍ଥରୁ ଜଣାଯାଏ ଚୋଡ଼ଗଙ୍ଗ ଦେବ ଶ୍ରୀ ମନ୍ଦିରରେ ନାମ ସଂକୀର୍ତ୍ତନ ପ୍ରବର୍ତ୍ତନ କରିଥିଲେ । ରାମାନୁଜଙ୍କ ଅଖଣ୍ଡ ପ୍ରଭାବ ଫଳରେ ସେ ପରମ ମାହେଶ୍ୱରରୁ ପରମ ବୈଷ୍ଣବ ହୋଇଥିବା ତାଙ୍କ କୋର୍ମି ତାମ୍ର ଶାସନ (Kormi Coper plate of Chodaganga vide J.A. H.R.S. vol - IV-P 113) ରୁ ଜଣାଯାଏ ।

ପୁନଶ୍ଚ କବି ମାଧବ ପଟ୍ଟନାୟକଙ୍କ ''ବୈଷ୍ଣବ ଲୀଳାମୃତ''ରୁ ଜଣାଯାଏ ଯେ ଶ୍ରୀ ମନ୍ଦିରରେ ଦେବଦାସୀ ନୃତ୍ୟ ପ୍ରଥା ପ୍ରଚଳିତ ଥିଲା ଓ କାମାର୍ଣ୍ଣବ ଦେବଙ୍କ ରାଜତ୍ୱ କାଳରେ ଏହା ପ୍ରସାରିତ ହୋଇଥିଲା । ଦେବଦାସୀ ନୃତ୍ୟକୁ ରାହାସ ନୃତ୍ୟ ବୋଲି ସେ ଉଲ୍ଲେଖ କରିଥିବା ଜଣାଯାଏ ।

''ନାଚୁଣୀ ମାହାରୀ ଯୋଗାଇଲା
ନାଟ ହୋଇଲା ହରି ଲୀଳା - ୪୯

ମାହାରୀ ମାନେ ନୃତ୍ୟ କଲେ
ରାହାସ ନୃତ୍ୟ ଏ ବୋଇଲେ -''୫୨
(ବୈଷ୍ଣବ ଲୀଳାମୃତ, ୨ୟ ଅଧ୍ୟାୟ)

ରାହାସ ଓ ନାମ ସଂକୀର୍ତ୍ତନ ନୃତ୍ୟ ପରଂପରା ଚୋଡ଼ଗଙ୍ଗ ଦେବଙ୍କ ସମୟରୁ ଶ୍ରୀ ମନ୍ଦିରରେ ଆରମ୍ଭ ହୋଇଥିଲା ।

ଗୀତଗୋବିନ୍ଦ ନାଟ ସେବା
ମନ୍ଦିରେ ପ୍ରତ୍ୟହ ହୋଇବା - ୬୭
ରାଜା ସେ ସେବା ଖିଆଇଲା ।
କେନ୍ଦୁଲୀ ଶାଢ଼ୀ ଯୋଗାଇଲା - ୬୮
ଶ୍ରୀ ଗୀତ ଗୋବିନ୍ଦ ରସ ଏ
ଶ୍ରୀ ଜଗନ୍ନାଥର ପ୍ରିୟ ଏ - ୬୯
ବୋଲି ଜଣାଇ ଏ ଭିଆଣ

ଭଗତେ ହେଲେ ତୋଷ ମନ - ୭୦
ଗୀତ ଗୋବିନ୍ଦ ନାଟ ପୁଣ
ନାଟ ମନ୍ଦିର କଲା ଭିଆଣ - ୭୨

ରାହାସ ନୃତ୍ୟର ନିମିତ୍ତ
ଗୀତ-ଗୋବିନ୍ଦ ନଳେ ନୃତ୍ୟ - ୭୩
ଭୀମ ଦେବର ଏ କୀରତି
କାଳେ ସେ ଗଲା ବାନ୍ଧି ଆପି - ୭୪
(ବୈଷ୍ଣବ ଲୀଳାମୃତ, ୨ୟ ଅଧ୍ୟାୟ)

ଜୟଦେବଙ୍କ ଜୀବନୀ ସମ୍ପର୍କରେ ଲେଖିବାକୁ ଯାଇ କବି ମାଧବ ପଟ୍ଟନାୟକ କହିଛନ୍ତି -

ବିପ୍ର ସେ ଜୟଦେବ ନାମ - କ୍ଷେତ୍ରବରକୁ ଆଗମନ
କେନ୍ଦୁଲୀ ଶାସନ ତା ଗ୍ରାମ - ପ୍ରାଚୀ ନଦୀର ତଟେ ପୂର୍ଣ
କିଆଳୀ ମାଧବ ସମୀପେ - ଭଗତି କଲା ନାନାରୂପେ
ଶାସ୍ତ୍ର ପୁରାଣେ ବିଚକ୍ଷଣ - କବିତ୍ୱ ମାର୍ଗେ ତାର ମନ
ଗୀତ ସେ ରଚିବ ବୋଇଲା - କ୍ଷେତ୍ର ବାସକୁ ମନ ଦେଲା
ଶ୍ରୀ ଜଗନ୍ନାଥର ସମୀପେ - ଶୁଦ୍ଧ ସାତ୍ତ୍ୱିକ ମତିଭାବେ

୫୬-୬୧
(ବୈଷ୍ଣବ ଲୀଳା ମୃତ-୨ୟ ଅଧ୍ୟାୟ)

କେନ୍ଦୁଲୀ ଶାଢ଼ୀରେ ଗୀତ-ଗୋବିନ୍ଦ ଶ୍ଳୋକାବଳୀ ଲେଖାଥିବା ବନ୍ଧ ସିଙ୍ଗାର ବେଳେ ପ୍ରଭୁଙ୍କ ଅଙ୍ଗରେ ଘୋଡ଼ାଇ ଦିଆଯାଏ । ଏହି ଶାଢ଼ୀ ସ୍ୱତନ୍ତ୍ର ଭାବେ ପୁରୀ ଜିଲ୍ଲା କେନ୍ଦୁଲୀ ଅଞ୍ଚଳର ବସ୍ତ୍ର ବୁଣାଳୀଙ୍କ ଠାରୁ ଆଗେ ଅଣାଯାଉଥିଲା । ମାତ୍ର ଏବେ ତାହା ବିଭିନ୍ନ ବୁଣାକାର ସମବାୟ ସମିତି ଠାରୁ ଅଣାଯାଉଛି । ତତ୍କାଳୀନ ସମାଜରେ କେନ୍ଦୁଲୀ ଶାଢ଼ୀର କି ଭଳି ଉତ୍କର୍ଷତା ଥିଲା ତାହା ଅଷ୍ଟାଦଶ ଶତାବ୍ଦୀର ଦ୍ୱିଜ ଶ୍ରୀଧର କୃତ କାଞ୍ଚନଲତା କାବ୍ୟରେ ଉଲ୍ଲେଖ ଅଛି ।

''ସଜଯେ ଦ୍ୱିଜ ନନ୍ଦିନୀ ତେଜୋଧମା କନକ କାନ୍ତୀ
କଳା କେନ୍ଦୁଲୀ ଶାଢ଼ୀ ଏ ଭିଡ଼ି ପିନ୍ଧିଛି ମୋତିଦନ୍ତୀ ।''

ସପ୍ତଦଶ ଶତାବ୍ଦୀର କବି ଭୂପତି ପଣ୍ଡିତ ''ପ୍ରେମ ପଞ୍ଚାମୃତ'' ନାମକ କୃଷ୍ଣ କାବ୍ୟ ଗ୍ରନ୍ଥରେ ଜୟଦେବ କୃତ ଗୀତ-ଗୋବିନ୍ଦ ବୋଲି ନାଚୁଣୀ ମାନେ ନାଚୁଥିବାର ବର୍ଣ୍ଣନା ଅଛି ।

ଶ୍ରୀ ଜୟଦେବ କବି କୃତ
ଗାୟଣୀ ଗାଇଲେ ବସନ୍ତ
ବୀଣା ମୃଦଙ୍ଗ ତାଳ ନାଦେ
ନାଚୁଣୀ ନାଚନ୍ତି ଆନନ୍ଦେ
ଏ ରୂପେ ସନମାନ କରି
ତା ପଛେ କାରଣ ପଚାରି ।
(ପ୍ରେମ ପଞ୍ଚାମୃତ, ପ୍ରାଚୀ ସଂସ୍କରଣ)
ଗଣନା ଅନୁଯାୟୀ ଏହି କାବ୍ୟ ୨୯,୧.୧୬୯୪
ଖ୍ରୀ.ଅ ରେ ସମାପ୍ତ ହୋଇଥିଲା ।

ସାହାଯ୍ୟକାରୀ ଗ୍ରନ୍ଥ
୧. ଜୟଦେବ ଓ ଗୀତଗୋବିନ୍ଦ
୨. ବୈଷ୍ଣବ ଲୀଳାମୃତ
୩. ମାଦଳା ପାଞ୍ଜି
୪. ପ୍ରେମ ପଞ୍ଚାମୃତ
୫. Souvnir on Jayadev - 1968
୬. ଉତ୍କଳଦେଶ ରାଜବଂଶାବଳୀ
୭. Journal of Asiatic Society of Bengal
୮. ଓଡ଼ିଶାର କବି ଜୟଦେବ

ଶ୍ରୀ ଜୟଦେବ ଶିକ୍ଷା ଓ ବୈଷୟିକ ମହାବିଦ୍ୟାଳୟ
ଜୟଦେବ ବିହାର
ନହରକଣ୍ଟା (ଭୁବନେଶ୍ୱର) ଜିଲ୍ଲା - ପୁରୀ

**ଷ୍ଟେରଲାଇଟ, ଇଣ୍ଡଷ୍ଟ୍ରିଜ୍ ପକ୍ଷରୁ ରାଜ୍ୟରେ ଆଲୁମିନା-ଆଲୁମିନିୟମ ପ୍ରକଳ୍ପ ପ୍ରତିଷ୍ଠା ପାଇଁ ବୁଝାମଣାପତ୍ର ସ୍ୱାକ୍ଷରିତ**

ରାଜ୍ୟରେ ଆଉ ଏକ ଆଲୁମିନା-ଆଲୁମିନିୟମ କାରଖାନା ବସାଇବାପାଇଁ ଷ୍ଟେରଲାଇଟ୍ ଇଣ୍ଡଷ୍ଟ୍ରିଜ୍ ଲିମିଟେଡ୍ ପକ୍ଷରୁ ଆଜି ବୁଝାମଣାପତ୍ର ସ୍ୱାକ୍ଷରିତ ହୋଇଛି ।

ଗତ ଏପ୍ରିଲ ୪ ତାରିଖରେ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକଙ୍କ ଉପସ୍ଥିତିରେ ସଚିବାଳୟ ଠାରେ ଷ୍ଟେରଲାଇଟ ଇଣ୍ଡଷ୍ଟ୍ରିଜ୍ ପକ୍ଷରୁ ଏହାର ଅଧକ୍ଷ ତଥା ପରିଚାଳନା ନିର୍ଦ୍ଦେଶକ ଶ୍ରୀ ଅନୀଲ ଅଗ୍ରୱାଲ ଏବଂ ରାଜ୍ୟ ସରକାରଙ୍କ ପକ୍ଷରୁ ଓଡ଼ିଶା ଖଣି ନିଗମର ପରିଚାଳନା ନିର୍ଦ୍ଦେଶକ ଶ୍ରୀ ଜଗଦୀଶ ପ୍ରସାଦ ଦାସ ଏହି ରାଜିନାମାରେ ସ୍ୱାକ୍ଷର କରିଛନ୍ତି । ଏହି ବୁଝାମଣାପତ୍ର ସ୍ୱାକ୍ଷରିତ ହେବାବେଳେ ଉପମୁଖ୍ୟମନ୍ତ୍ରୀ ଶ୍ରୀ ବସନ୍ତ କୁମାର ବିଶ୍ୱାଳ, ଶିଳ୍ପମନ୍ତ୍ରୀ ଶ୍ରୀ ନିରଂଜନ ପଟ୍ଟନାୟକ, ମୁଖ୍ୟ ଶାସନ ସଚିବ ଶ୍ରୀ ରାଜକିଶୋର ଜୁଲିବନ, ଅତିରିକ୍ତ ମୁଖ୍ୟ ଶାସନ ସଚିବ ଶ୍ରୀ ସୁଧାଂଶୁ ଭୂଷଣ ମିଶ୍ର ଓ ରାଜ୍ୟ ସରକାରଙ୍କ ପଦସ୍ଥ ଅଧିକାରୀମାନେ ଉପସ୍ଥିତ ଥିଲେ ।

୮୫୦୦ କୋଟି ଟଙ୍କା ବିନିଯୋଗରେ ପ୍ରତିଷ୍ଠିତ ହେବାକୁ ଯାଉଥିବା ଏହି ପ୍ରକଳ୍ପରେ ବାର୍ଷିକ ୧୦ ଲକ୍ଷ ଟନ ଉତ୍ପାଦନକ୍ଷମ ଆଲୁମିନା ପ୍ଲାଣ୍ଟ, ୨.୫ ଲକ୍ଷ ଟନ ଉତ୍ପାଦନ କ୍ଷମତା ବିଶିଷ୍ଟ ଆଲୁମିନା ସ୍ମେଲଟର ଏବଂ ଆଲୁମିନା ସ୍ମେଲଟର ଓ କ୍ୟାପିଟିଭ୍ ପାୱାର ପ୍ଲାଣ୍ଟ ଝାରସୁଗୁଡ଼ାରେ ପ୍ରତିଷ୍ଠିତ ହେବ । ଏହି ପ୍ରକଳ୍ପପାଇଁ କଳାହାଣ୍ଡି ଜିଲ୍ଲାରେ ୧୨୦୦ ଏକର ଜମି ଓ ଝାରସୁଗୁଡ଼ା ଜିଲ୍ଲାରେ ୩୪୦୦ ଏକର ଜମି ଆବଶ୍ୟକ ହେବ । ଚଳିତ ବର୍ଷ ମଧ୍ୟ ଭାଗରେ ଏହି ପ୍ରକଳ୍ପ କାର୍ଯ୍ୟ ଆରମ୍ଭ ହେବ ଏବଂ ୪୫ ମାସ ମଧ୍ୟରେ ଏହା ଶେଷ ହେବ ବୋଲି ଲକ୍ଷ୍ୟ ରଖାଯାଉଛି ।

ସ୍ମରଣ ଯୋଗ୍ୟ ଯେ, ଗତ ତା ୨୦-୩-୯୭ ରିଖ ଦିନ ଆଦିତ୍ୟ ଆଲୁମିନିୟମ ଗ୍ରୁପ ପକ୍ଷରୁ ମଧ୍ୟ ଅନ୍ୟ ଏକ ଆଲୁମିନା-ଆଲୁମିନିୟମ ପ୍ଲାଣ୍ଟ ବସାଇବା ପାଇଁ ବୁଝାମଣାପତ୍ର ସ୍ୱାକ୍ଷରିତ ହୋଇଛି ।

# ଗୋଟିଏ ଶତାବ୍ଦୀର ଶ୍ରୀମନ୍ଦିର ପରିଚାଳନା ଇତିହାସ

## (୧୮୦୩-୧୯୦୩)

ଶ୍ରୀ ଶରତଚନ୍ଦ୍ର ମହାପାତ୍ର

୧୮୦୩ ମସିହାରେ ଓଡ଼ିଶା ବ୍ରିଟିଶ ଶାସନାଧୀନ ହେଲା । କିନ୍ତୁ ୧୮୦୬ ପର୍ଯ୍ୟନ୍ତ ଶ୍ରୀମନ୍ଦିର ପରିଚାଳନା ସମ୍ବନ୍ଧରେ କୌଣସି ନିର୍ଦ୍ଦିଷ୍ଟ ନୀତି ନିର୍ଦ୍ଧାରିତ ହୋଇପାରିନଥିଲା । କଲେକ୍ଟର ଗ୍ରୋମ ସାହେବଙ୍କର ଶ୍ରୀ ମନ୍ଦିର ସଂକ୍ରାନ୍ତୀୟ ବିସ୍ତୃତ ବିବରଣୀ ପାଇଲା ପରେ ୧୮୦୬ ମସିହାରେ ଏକ ରେଗୁଲେସନ ପ୍ରଣୀତ ହେଲା । ତଦନୁଯାୟୀ ମନ୍ଦିର ପରିଚାଳନା ଦାୟିତ୍ୱ ଜିଲ୍ଲାପାଳଙ୍କ ଦ୍ୱାରା ମନୋନୀତ ଏବଂ ସରକାରଙ୍କ ଦ୍ୱାରା ଅନୁମୋଦିତ ତିନିଜଣ ପଣ୍ଡିତଙ୍କ ହାତରେ ରହିଲା । ୧୮୦୯ ରେ ପ୍ରଣୀତ ଅନ୍ୟ ଏକ ଆଇନଗତ ବ୍ୟବସ୍ଥା ଅନୁଯାୟୀ ଉପରୋକ୍ତ ତିନିଜଣ ପଣ୍ଡିତଙ୍କ ଦ୍ୱାରା ପରିଚାଳନା ବ୍ୟବସ୍ଥା ଲୋପ କରାଯାଇ ତତ୍କାଳୀନ ଖୋର୍ଦ୍ଧା ରାଜାଙ୍କୁ ମନ୍ଦିର ପରିଚାଳନା ଦାୟିତ୍ୱ ହସ୍ତାନ୍ତରିତ ହୋଇଲା ଏବଂ ସେ ମନ୍ଦିରର ବଂଶାନୁକ୍ରମିକ ତତ୍ତ୍ୱାବଧାରକ ରୂପେ ସ୍ୱୀକୃତି ପାଇଲେ । କିନ୍ତୁ ତାଙ୍କର କ୍ଷମତା ଅପବ୍ୟବହାରକୁ ରୋକିବା ପାଇଁ ଶ୍ରୀମନ୍ଦିରର ତିନିଜଣ ମୁଖ୍ୟ ସେବାୟତଙ୍କୁ ନେଇ ଏକ ସହାୟକ ମଣ୍ଡଳୀ ଗଠିତ ହେଲା । ଉପରୋକ୍ତ ବ୍ୟବସ୍ଥାପନ ବା ରେଗୁଲେସନ ଅନୁଯାୟୀ ଏହି ସହାୟକ ମଣ୍ଡଳୀର ସଭ୍ୟମାନଙ୍କୁ କେବଳ ସରକାରଙ୍କର ଅନୁମୋଦନ କ୍ରମେ ବହିଷ୍କାର କରିବାର ବ୍ୟବସ୍ଥା ରହିଲା । ଯଦି କୌଣସି ସମୟରେ ରାଜା ଶ୍ରୀମନ୍ଦିର ପରମ୍ପରା ବିରୋଧୀ କାର୍ଯ୍ୟ କିମ୍ବା ଆଦେଶ ଦିଅନ୍ତି ତେବେ ଉକ୍ତ କମିଟି ସିଧା ସଳଖ ସରକାରଙ୍କୁ ଜଣାଇବା ପାଇଁ କ୍ଷମତାପନ୍ନ ରହିଲେ ।

ଇତି ମଧ୍ୟରେ ଏକ ମୂର୍ତ୍ତି ଉପାସକ ହିନ୍ଦୁ ସଂପ୍ରଦାୟର ମନ୍ଦିରକୁ ଖ୍ରୀଷ୍ଟିଆନ ସରକାର ଆର୍ଥିକ ଅନୁଦାନ ଦେବା ଏବଂ ଅନ୍ୟାନ୍ୟ ପୃଷ୍ଠପୋଷକତା କରିବା ଖ୍ରୀଷ୍ଟିଆନ୍ ମିସନାରୀଙ୍କ ଦ୍ୱାରା କଡ଼ାଭାବରେ ସମାଲୋଚିତ ହେଲା । ବ୍ରିଟିଶ ମିସନାରୀ ଓ ଜନତାର ମତକୁ ସମ୍ମାନ ଦେଇ ୧୮୪୦ ମସିହାରେ ଏକ ଆଇନ୍ ପ୍ରଣୀତ ହେଲା (Act x of 1840)> ତଦନୁଯାୟୀ ସରକାରଙ୍କର ସମସ୍ତ ସଂପର୍କ ମନ୍ଦିର ସହିତ ଛିନ୍ନ ହେଲା ଏବଂ ମନ୍ଦିର ଓ ତତ୍‌ସଂଲଗ୍ନ ସମସ୍ତ ସମ୍ପତ୍ତିର ନିରଙ୍କୁଶ ପରିଚାଳନା ଦାୟିତ୍ୱ ରାଜାଙ୍କୁ ଦିଆଗଲା । ଉକ୍ତ ଆଇନରେ ଅପାରଗତା ଏବଂ ଅକର୍ମଣ୍ୟତା ଦୃଷ୍ଟିରୁ ମଧ୍ୟ ରାଜାଙ୍କୁ ଶ୍ରୀମନ୍ଦିର ତତ୍ତ୍ୱାବଧାରକ ଦାୟିତ୍ୱରୁ ବହିଷ୍କାର କରିବାର କୌଣସି ବ୍ୟବସ୍ଥା ରହିଲା ନାହିଁ ।

୧୮୪୫ ମସିହାରେ ଦୁଇଟି ଦୁର୍ଘଟଣା ଘଟିଥିଲା । ନବଯୌବନ ଦର୍ଶନ ଦିନ ଶ୍ରୀମନ୍ଦିର ସିଂହଦ୍ୱାର ଖୋଲାହେବା ପରେ ପ୍ରବଳ ଜନଗହଳି ଓ ଦଳାଚକଟାରେ ୩ ଜଣ ପୁରୁଷ ଓ ୪ ଜଣ ମହିଳାଙ୍କର ମୃତ୍ୟୁ ହୋଇଥିଲା । ସେହି ବର୍ଷ ରଥଯାତ୍ରା ବେଳେ ୩ ଜଣଙ୍କର ମୃତ୍ୟୁ ହୋଇଥିଲା ଏବଂ ୨ ଜଣ ରଥ ଚକ ତଳେ ପଡ଼ି ଗୁରୁତର ଭାବେ ଆହତ ହୋଇଥିଲେ । ତୀର୍ଥ ଯାତ୍ରୀଙ୍କର ଦୁର୍ଘଟଣାରେ ଏଭଳି ମୃତ୍ୟୁ ଏବଂ ଅଙ୍ଗହାନି ହେବା ଫଳରେ ସରକାର ଭବିଷ୍ୟତରେ ଏଭଳି ଘଟଣାକୁ ଏଡ଼ାଇବା ପାଇଁ ନୂତନ ଭାବେ ବାର୍ଷିକ ୬୮୪୦ ଟଙ୍କାରେ ପୋଲିସ ବ୍ୟବସ୍ଥା କରିଥିଲେ ।

ଏଠାରେ ପ୍ରାସଙ୍ଗିକ ହେବ ଯେ ବ୍ରିଟିଶ ସରକାର ମନ୍ଦିର ପରିଚାଳନା ନିମନ୍ତେ ବାର୍ଷିକ ୫୩,୦୦୦ ଟଙ୍କାର ବ୍ୟବସ୍ଥା କରିଥିଲେ ଏବଂ ଏହି ଅନୁଦାନର ଏକ ବୃହତ୍ତର ଅଂଶ ଯାତ୍ରୀ ଟିକସ (Pilgrim task) ରୁ ଭରଣା ହେଉଥିଲା । କିନ୍ତୁ ୧୮୪୦ ଆଇନ ଅନୁଯାୟୀ ଏହି ଯାତ୍ରୀ ଟିକସ ଉଚ୍ଛେଦ କରାଗଲେ ମଧ୍ୟ ରାଜାଙ୍କୁ ପୂର୍ବଭଳି ଉକ୍ତ ଅନୁଦାନ ଦିଆଯାଉଥିଲା । ନୀତି ଦୃଷ୍ଟିରୁ ମନ୍ଦିର ପରିଚାଳନା ପାଇଁ କୌଣସି ଆର୍ଥିକ ଅନୁଦାନ ବ୍ରିଟିଶ ସରକାର ଦେବେ ନାହିଁ ବୋଲି ସ୍ଥିର କଲାପରେ ଶ୍ରୀମନ୍ଦିର ନିଅଣ୍ଟିଆ ଭରଣା ନିମନ୍ତେ ରାଜାଙ୍କୁ ସତେଇଶି ହଜାରୀ ମାହାଲ ହସ୍ତାନ୍ତରିତ ହେଲା । ଏହି ମାହାଲରୁ ବାର୍ଷିକ ୧୭,୪୨୦ ଟଙ୍କା ଖଜଣା ଆଦାୟ ହେଉଥିଲା । ଉକ୍ତ ଖଜଣା ପରିମାଣ କାଟି ଦେଲାପରେ ୩୫,୭୩୮ ଟଙ୍କା ୭-୬ ମନ୍ଦିର ଖର୍ଚ୍ଚ ବାବଦକୁ ରାଜାଙ୍କୁ ଦିଆଗଲା ।

୧୮୧୫ ମସିହାରେ ଶ୍ରୀମନ୍ଦିରର ପ୍ରକୃତ ଖର୍ଚ୍ଚ ସମ୍ବନ୍ଧରେ ବ୍ରିଟିଶ ସରକାର ଏକ ତଦନ୍ତ କରାଇଲେ । ବେଶୀର ଭାଗ ରାଜାଙ୍କ ଦ୍ୱାରା ଦେଢେଇ ଦାନ ସମ୍ପତ୍ତି ଓ ଅନ୍ୟାନ୍ୟ ସୂତ୍ରରୁ ଆୟକୁ ବିଚାରକୁ ନେଇ ମନ୍ଦିର ଅନୁଦାନ ପରିମାଣ ୨୩,୩୨୧ ଟଙ୍କାକୁ କମାଇ ଦିଆଗଲା । ପୂର୍ବବର୍ଣ୍ଣିତ ମତେ ବାର୍ଷିକ ପୋଲିସ ବ୍ୟବସ୍ଥା ପାଇଁ ୬୮୦୪ ଟଙ୍କା ଧାର୍ଯ୍ୟ ହୋଇ ଉକ୍ତ ପରିମାଣର ଅର୍ଥ ମନ୍ଦିର ଅନୁଦାନରୁ କାଟି ଦିଆଗଲା । ଫଳତଃ ଅନୁଦାନ ପରିମାଣ ମାତ୍ର ୧୬,୫୧୭ ଟଙ୍କା ରହିଲା ।

ଏତେ କମ୍ ଅନୁଦାନ ହେଲେ ମଧ୍ୟ ମିସନାରୀମାନଙ୍କର ତୀବ୍ର ବିରୋଧ ଦୃଷ୍ଟିରୁ ଆର୍ଥିକ ଅନୁଦାନ ପରିବର୍ତ୍ତେ ସେହି ପରିମାଣର ଜମି ରାଜାଙ୍କୁ ଦିଆଗଲା । ଏହି ବ୍ୟବସ୍ଥା ୩-୪-୧୮୫୮ ରେ ତତ୍କାଳୀନ ପୁରୀ ଜିଲ୍ଲାପାଳ ଟି.ବି. ମାକ୍‌ନିଆର ଏବଂ ରାଜା ବୀରକିଶୋର ଦେବଙ୍କ ମଧ୍ୟରେ ସମ୍ପାଦିତ ହେଲା । ୧୮୫୯ ମସିହାରେ ଶ୍ରୀମନ୍ଦିର ତତ୍ତ୍ୱାବଧାରକ ଭାବରେ ମନ୍ଦିରର ଆଭ୍ୟନ୍ତରୀଣ ଏବଂ ବାହ୍ୟ ଶାନ୍ତିରକ୍ଷା ପାଇଁ ରାଜାଙ୍କୁ ସଂପୂର୍ଣ୍ଣ ଦାୟିତ୍ୱ ଦିଆଗଲା । ସେଥିନିମନ୍ତେ ବାର୍ଷିକ ପୋଲିସ ବ୍ୟବସ୍ଥା ପାଇଁ ୬୮୦୪ ଟଙ୍କା ଯାହାସ୍ଥିର ହୋଇଥିଲା, ତାହା ପ୍ରତ୍ୟକ୍ଷ ଭାବରେ

ପୋଲିସ ବିଭାଗକୁ ଦିଆଯାଉଥିବା ରାଜାଙ୍କୁ ଦିଆଗଲା । ଆର୍ଥିକ ଅନୁଦାନ ବ୍ୟବସ୍ଥା ନୀତି ଦୃଷ୍ଟିରୁ ବିଚ୍ଛିନ୍ନ ହୋଇଥିବାରୁ ଉପରୋକ୍ତ ଅର୍ଥ ପରିମାଣର ଜମି ରାଜାଙ୍କୁ ହସ୍ତାନ୍ତରିତ ହେବା ପର୍ଯ୍ୟନ୍ତ ଏହି ବ୍ୟବସ୍ଥା କାଏମ ରଖାଯିବ ବୋଲି ସ୍ଥିର ହୋଇଥିଲା । ଏହା କାର୍ଯ୍ୟକାରୀ କରିବା ପାଇଁ ଶ୍ରୀମନ୍ଦିର ତତ୍ତ୍ୱାବଧାରକ ଭାବେ ରାଜା ବ୍ରିଟିଶ ସରକାରଙ୍କ ସହ ଏକ ଚୁକ୍ତି ସମ୍ପାଦନ କଲେ । ତଦନୁଯାୟୀ ୬୦ ଜଣ ବରକନ୍ଦା ମନ୍ଦିର ବାହାରେ ଭିତରେ ଓ ରଥଯାତ୍ରା ସମୟରେ ନିଯୁକ୍ତି ପାଇବାର ବ୍ୟବସ୍ଥା ରହିଲା । ମନ୍ଦିର ବାହାର ଓ ଭିତରେ ଶାନ୍ତିରକ୍ଷା ଦାୟିତ୍ୱ ରାଜାଙ୍କର ବାଧ୍ୟତାମୂଳକ ହେବା ସଙ୍ଗେ ସଙ୍ଗେ ରଥଯାତ୍ରା ଓ ଅନ୍ୟାନ୍ୟ ଉତ୍ସବ ସମୟରେ ଜନଗହଳି ରୋକିବା ପାଇଁ ଆବଶ୍ୟକୀୟ କାଠ ଅର୍ଗଳୀ କରିବାର ଦାୟିତ୍ୱ ରାଜାଙ୍କର ମଧ୍ୟ ରହିଲା ।

ପୋଲିସ ବ୍ୟବସ୍ଥା ନିମନ୍ତେ ରାଜାଙ୍କୁ ଦିଆଯାଉଥିବା ୬୮୦୪ ଟଙ୍କା ପରିମାଣର ଏବଂ ଅବଶିଷ୍ଟ ଅନୁଦାନ ୧୬,୫୧୭ ଟଙ୍କା ପରିମାଣର ଜମି ରାଜାଙ୍କୁ ହସ୍ତାନ୍ତରିତ ହେଲା । ଏହାପରେ ମନ୍ଦିର ପରିଚାଳନା ପାଇଁ ରାଜାଙ୍କୁ କୌଣସି ଆର୍ଥିକ ଅନୁଦାନ ଦିଆଯିବ ନାହିଁ ବୋଲି ଘୋଷଣା କରାଗଲା ଏବଂ ବ୍ରିଟିଶ ସରକାରଙ୍କର ମନ୍ଦିର ସହିତ ସମସ୍ତ ପ୍ରତ୍ୟକ୍ଷ ଓ ପରୋକ୍ଷ ସମ୍ପର୍କ ଛିନ୍ନ କରାଗଲା ବୋଲି ଘୋଷଣା କରାଗଲା ।

୧୮୫୯ ମସିହାରେ ରାଜାଙ୍କର ମୃତ୍ୟୁ ହେଲା । ମୃତ୍ୟୁ ପୂର୍ବରୁ ରାଜାଙ୍କ ସମ୍ପାଦିତ ଉଇଲ ଅନୁଯାୟୀ ତାଙ୍କର ବିଧବା ସ୍ତ୍ରୀ ପୋଷ୍ୟ ଉତ୍ତରାଧିକାରୀ ସାବାଳକ ହେବା ପର୍ଯ୍ୟନ୍ତ ମନ୍ଦିର ଦାୟିତ୍ୱ ପରିଚାଳନା କରିବେ ବୋଲି ବ୍ୟବସ୍ଥା ଥିଲା । ଏହି ପରିସ୍ଥିତି ସମ୍ଭାଳିବା ପାଇଁ ସରକାର ପୁରୀ ରାଜଗାଦୀକୁ Court of wards କରିବାର ଚିନ୍ତା ସେତେବେଳେ କରୁଥିଲେ । କିନ୍ତୁ ଶ୍ରୀମନ୍ଦିର ଓ ପୁରୀ ରାଜାଙ୍କର ନିବିଡ଼ ସମ୍ପର୍କ ହେତୁ ତାହା ସରକାର କରିବା ଉଚିତ ମନେକଲେ ନାହିଁ । ରାଣୀ ସୂର୍ଯ୍ୟମଣି ପାଟମହାଦେଇଙ୍କର ପରିଚାଳନା ସମୟରେ ମନ୍ଦିର ଅବସ୍ଥା ଆହୁରି ଖରାପ ହେଲା । ରାଜା ସାବାଳକ ହେବା ପରେ ମଧ୍ୟ ଏହି ଅବସ୍ଥାର ବିଶେଷ କିଛି ପରିବର୍ତ୍ତନ ହେଲାନାହିଁ ।

୧୮୭୭ ମସିହା ଗୋବିନ୍ଦ ଦ୍ୱାଦଶୀ ଦିନ ପ୍ରବଳ ଗହଳି ହେତୁ ସିଂହଦ୍ୱାରରେ ଅନେକ ଲୋକଙ୍କର ପ୍ରାଣହାନୀ ଘଟିଥିଲା । ତତ୍ କାଳୀନ ରାଜା ଦିବ୍ୟସିଂହ ଦେବଙ୍କୁ ଯାତ୍ରୀମାନଙ୍କର ଦର୍ଶନ ନିମନ୍ତେ ଆବଶ୍ୟକୀୟ ବ୍ୟବସ୍ଥାରେ ଗୁରୁତର ଅବହେଳା କରିଛନ୍ତି ବୋଲି ଦାୟୀ କରାଗଲା । ଦୁର୍ଭାଗ୍ୟକୁ ତାପର ବର୍ଷ ଅର୍ଥାତ ୧୮୭୮ ମସିହାରେ ଏକ ନରହତ୍ୟା ଅପରାଧରେ ରାଜାଙ୍କୁ କଳାପାଣି ପଠାଗଲା । ଶ୍ରୀମନ୍ଦିର ଇତିହାସରେ ଏହା ଏକ ଅଭୂତପୂର୍ବ ଅବସ୍ଥା ସୃଷ୍ଟି କଲା । ଖ୍ରୀ.ଅ. ୧୮୪୦ ପ୍ରଣୀତ ଆଇନ୍ ଅନୁଯାୟୀ ରାଜା କଳାପାଣି ଗଲେ ମଧ୍ୟ ଶ୍ରୀମନ୍ଦିର ତତ୍ତ୍ୱାବଧାରକ ଭାବେ ସେ ସମସ୍ତ କ୍ଷମତାର ଅଧିକାରୀ ରହିଥିଲେ । ଏଭଳି ପ୍ରଶାସନିକ ଶୂନ୍ୟତା ଦୃଷ୍ଟିରୁ ଶ୍ରୀମନ୍ଦିର ପରିଚାଳନାରେ କୌଣସି ହସ୍ତକ୍ଷେପ କରାଯିବନାହିଁ ବୋଲି ସରକାର ନିଷ୍ପତ୍ତି ନେଇଥିଲେ ମଧ୍ୟ ହସ୍ତକ୍ଷେପର ଆବଶ୍ୟକତା ଉପୁଜିଲା । ଏହି ସମୟରେ ରାଜାଙ୍କୁ ଦିଆଯାଉଥିବା ସତେଇଶି ହଜାରୀ ଓ ଏକଚାଳାତ ମାହାଲର ରଇତମାନେ ଅତ୍ୟାଚାରିତ ହେଉଛନ୍ତି ବୋଲି ସରକାର ସମ୍ବାଦ ପାଇ ୩୦,୦୦୦ ଟଙ୍କା ବାର୍ଷିକ ଅନୁଦାନ ଶ୍ରୀମନ୍ଦିରକୁ ଦିଆଯାଇ ଉଭୟ ମାହାଲ ପୁନର୍ବାର ସରକାରଙ୍କ ହାତକୁ ଫେରାଇ ନେବାର ଚିନ୍ତା କରାଗଲା । ରାଜାଙ୍କର କଳା ପାଣି ଯିବା ଜନିତ ସମସ୍ୟା ଦୃଷ୍ଟିରୁ ଏକ ପରିଚାଳନା କମିଟି ସୃଷ୍ଟିକରିବା, ଜଣେ ସରକାରୀ ଅଫିସରଙ୍କୁ ପରିଚାଳକ ଭାବରେ ନିଯୁକ୍ତି ଦେବା ଏବଂ ଦିଆଯାଇଥିବା ମାହାଲଗୁଡ଼ିକ ଫେରାଇ ଆଣି ଆର୍ଥିକ ଅନୁଦାନ ଦେବା ପ୍ରସ୍ତାବ ଭାରତ ସରକାରଙ୍କୁ ଚିଠି ନଂ ୯୪୬/୩୮୭ ତାରିଖ ୧୬.୮.୧୮୭୯ ରେ ଦିଆଗଲା କିନ୍ତୁ ଭାରତ ସରକାର ମ୍ୟାନେଜର ଓ କମିଟି ଜରିଆରେ ଶ୍ରୀମନ୍ଦିର ପରିଚାଳନା ପ୍ରସ୍ତାବକୁ ଅନୁମୋଦନ କରିବା ସଙ୍ଗେ ସଙ୍ଗେ ମାହାଲ ପ୍ରତ୍ୟର୍ପଣ ବ୍ୟବସ୍ଥାକୁ ଗ୍ରହଣ କରି ନଥିଲେ (ଚିଠି ନଂ ୨୧୭୨ ତାରିଖ ୨୨.୧.୧୮୭୯) । ଉପରୋକ୍ତ ଅନୁମୋଦନ ଲାଭ କଲାପରେ ଯେତେବେଳେ ଏକ ଚିଠା ବିଲ ଭାରତ ସରକାରଙ୍କ ନିକଟରେ ଅନୁମୋଦନ ପାଇଁ ଉପସ୍ଥାପିତ କରାଗଲା (ଚିଠି ନଂ ୬୯୭୧ ତା ୩୦.୯.୧୮୮୦) ତାହା ଭାରତ ସରକାର ଅନୁମୋଦନ କରିବା ପାଇଁ ଅନିଚ୍ଛା ପ୍ରକାଶ କଲେ । (ଚିଠି ନଂ ୯୬୨ ତା ୧୧.୭.୧୮୮୧) ସ୍ଥାନୀୟ ଧାର୍ମିକ ଓ ଦେବୋତ୍ତର ବ୍ୟବସ୍ଥାରେ ଆଇନ ଜରିଆରେ ହସ୍ତକ୍ଷେପ କରିବା ସମ୍ଭବ ନୁହେଁ କିମ୍ବା ଉଚିତ୍ ନୁହେଁ ବୋଲି ଭାରତ ସରକାର ମତ ପୋଷଣ କଲେ ।

ଏ ସଂକ୍ରାନ୍ତରେ ବହୁ ପତ୍ରାଳାପ, ଆଲୋଚନା ଏବଂ ଆଇନଗତ ତର୍ଜମା କରାଗଲା । ଶେଷକୁ ଆଇନ ବିଶାରଦମାନଙ୍କର ପରାମର୍ଶ କ୍ରମେ (Act x of 1840) ଆଇନକୁ ଉଚ୍ଛେଦ କରାଯିବା ସଙ୍ଗେ ସଙ୍ଗେ ଦେୱାନୀ ଆଇନର (Civil procedure court) ସଂଶୋଧନ କରାଯିବା ସ୍ଥିର ହେଲା । ଏହାଦ୍ୱାରା ଶ୍ରୀମନ୍ଦିର ପରିଚାଳନାର ସ୍ୱତନ୍ତ୍ର ଆଇନଗତ ସ୍ୱରୂପର ପରିବର୍ତ୍ତନ କରାଯାଇ ଏହାକୁ ଏକ ସାଧାରଣ ନ୍ୟାସ (Trust) ସମ୍ପତ୍ତି ରୂପେ ପରିଣତ କରାଗଲା । ଉଭୟ ପଦକ୍ଷେପ ନିଆଯାଇ ଶ୍ରୀ ମନ୍ଦିରକୁ ଦେୱାନୀ ଆଇନର ୫୩୯ ଧାରା ପରିସରଭୁକ୍ତ କରାଗଲା ଏବଂ ଏହା ଧାର୍ମିକ ଉଦ୍ଦେଶ୍ୟରେ ନ୍ୟାସ ସମ୍ପତ୍ତି (Religious charitable trust) ରୂପେ ପରିଗଣିତ ହେଲା । ତଦନୁଯାୟୀ ଦେୱାନୀ ଆଇନର ୫୩୯ ଧାରା ଅନୁଯାୟୀ (Act x IV 1882) ଏକ ମକଦ୍ଦମା ଦାଏର ହେଲା । ଏହି ମକଦ୍ଦମାରେ ଶ୍ରୀମନ୍ଦିର ତତ୍ତ୍ୱାବଧାରକ ପଦବୀ ଶୂନ୍ୟ (Vacant) ଘୋଷଣା କରାଯିବା ପାଇଁ ତଥା ଏକ ପରିଚାଳନା ପଦ୍ଧତି ଅନୁଯାୟୀ ଟ୍ରଷ୍ଟି ନିଯୁକ୍ତି ପାଇଁ ପ୍ରାର୍ଥନା କରାଗଲା (Govt order No S 1229/5281/Ri Date 16. May 1885)

ଶ୍ରୀମନ୍ଦିର ପରିଚାଳନା ପାଇଁ ସେ ସମୟରେ ଦିଆଯାଉଥିବା ଯୋଜନାର ମୁଖ୍ୟ ବ୍ୟବସ୍ଥା ହେଲା, କୋର୍ଟ ଦ୍ୱାରା ନିଯୁକ୍ତ ପାଞ୍ଚ ଜଣିଆ ଟ୍ରଷ୍ଟ ବୋର୍ଡ଼ ମନ୍ଦିର ପରିଚାଳନା ଦାୟିତ୍ୱରେ ରହିବେ । ଏଥିରେ ପୁରୀରାଜା ବଂଶାନୁକ୍ରମିକ ସଭାପତି ରହିବେ । ସମସ୍ତ ଟ୍ରଷ୍ଟ ବୋର୍ଡ଼ ସଭ୍ୟ ହିନ୍ଦୁ ଧର୍ମାବଲମ୍ବୀ ହୋଇଥିବେ ଏବଂ ଅନୁପଯୁକ୍ତ ବିବେଚିତ ନ ହେବା ପର୍ଯ୍ୟନ୍ତ ସଭ୍ୟ ଭାବରେ ରହିପାରିବେ । ଜଣେ ହିନ୍ଦୁଧର୍ମାବଲମ୍ବୀ ଉପଯୁକ୍ତ ଲୋକଙ୍କୁ ଶ୍ରୀମନ୍ଦିର ଓ ଦେବୋତ୍ତର ସମ୍ପତ୍ତିର ପରିଚାଳନା ରୂପେ କୋର୍ଟ ନିଯୁକ୍ତି ଦେବେ ।

ଏହି ପରିକଳ୍ପିତ ପରିଚାଳନା ପଦ୍ଧତି ଅନୁମୋଦିତ ହେବାପାଇଁ ବିଚାରାଧୀନ ଅବସ୍ଥାରେ ୧୮୮୦ ମସିହାରେ ଜଗନ୍ନାଥଙ୍କ ରଥ ଚକ ତଳେ

ଚାରି ପାଞ୍ଚ ଜଣବ୍ୟକ୍ତିଙ୍କର ମୃତ୍ୟୁ ହୋଇଥିଲା । ୧୮୮୧ ମସିହାରେ କୁମ୍ଭିପଟିଆ ବାବାଜୀମାନେ ଜଗନ୍ନାଥଙ୍କ ମୂର୍ତ୍ତି ଜାଳିଦେବା ପାଇଁ ମନ୍ଦିର ମଧ୍ୟରେ ଉଦ୍ୟମ କରିଥିଲେ । ସେମାନଙ୍କୁ ପ୍ରତିହତ କରିବାପରେ ଗୁରୁତର ଗଣ୍ଡଗୋଳ ଉପୁଜିଥିଲା ଏବଂ ସେଥିରେ ଜଣେ କୁମ୍ଭିପଟିଆ ବାବାଜୀଙ୍କର ଭିତର ବେଢ଼ାରେ ମୃତ୍ୟୁ ହୋଇଥିଲା । ଇତି ମଧ୍ୟରେ ମନ୍ଦିର ସଂକ୍ରାନ୍ତୀୟ ଦେୱାନୀ ମକଦ୍ଦମା କୁ ପ୍ରତ୍ୟାହାର କରିବାପାଇଁ ବହୁ ପ୍ରଭାବଶାଳୀ ବ୍ୟକ୍ତି ସରକାରଙ୍କୁ ସ୍ମାରକ ପତ୍ର ଦେଇଥିଲେ । ରାଜା ମୁକୁନ୍ଦ ଦେବ ନାବାଳକ ଥିବାରୁ ରାଣୀ ସୂର୍ଯ୍ୟମଣି ପାଟ ମହାଦେଈ ଏହି ମକଦ୍ଦମାର ଏକ ଆପୋଷ ରାଜିନାମା ପାଇଁ ତାଙ୍କ ଓକିଲ ବାରିଷ୍ଟର ମଧୁସୂଦନ ଦାସଙ୍କ ଜରିଆରେ ଅନୁରୋଧ କରିଥିଲେ । ପରିବର୍ତ୍ତିତ ପରିସ୍ଥିତିରେ ଏଭଳି ଏକ ରାଜିନାମାର ଆବଶ୍ୟକତା ରହିଛି ବୋଲି ୧୮-୪-୧୮୮୭ ରେ ମିଷ୍ଟର ନୋଲାନ ତାଙ୍କ ଅର୍ଦ୍ଧସରକାରୀ ଚିଠିରେ ଭାରତ ସରକାରଙ୍କୁ ଅନୁରୋଧ କରିଥିଲେ । ଭାରତ ସରକାର କେତେକ ସର୍ତ୍ତରେ ଏହି ପ୍ରସ୍ତାବ ଗ୍ରହଣ କରିଥିଲେ । (Latter No 1646 Deteal 12th May 1887) ଏହି ସର୍ତ୍ତ ଗୁଡ଼ିକ ମଧ୍ୟରେ ଜଣେ ଉପଯୁକ୍ତ ମ୍ୟାନେଜରଙ୍କୁ ଶ୍ରୀ ମନ୍ଦିର ପରିଚାଳନା ଦାୟିତ୍ୱ ହସ୍ତାନ୍ତର କରିବା ଗୋଟିଏ ସର୍ତ୍ତଥିଲା । ସମସ୍ତ ସର୍ତ୍ତ ଆଡଭୋକେଟ ଜେନେରାଲଙ୍କ ପରାମର୍ଶ କ୍ରମେ କଟକ (District Court) ରେ ଗୃହିତ ହୋଇଥିଲା (Letter No 1088/468 Dated - 29th March 1888) ଏହି ଆପୋଷ ରାଜିନାମା ରାଜା ମୁକୁନ୍ଦଦେବ ସାବାଳକ ହେବାପରେ ଆଉ କାର୍ଯ୍ୟକାରୀ ହେବନାହିଁ ବୋଲି ବ୍ୟବସ୍ଥା ଥିଲା । ରାଜା ମୁକୁନ୍ଦଦେବ ୧୮୯୭ ରେ ସାବାଳକ ହେଲେ କିନ୍ତୁ ଦୁର୍ଭାଗ୍ୟ ବଶତଃ ମନ୍ଦିର ପରିଚାଳନାରେ କୌଣସି ପରିବର୍ତ୍ତନ ହେଲାନାହିଁ ବରଂ ୧୮୯୯ ଓ ୧୯୦୦ ମସିହାରେ ଜଗନ୍ନାଥଙ୍କ ଭୋଗରେ ବହୁ ବିଭ୍ରାଟ ଓ ବିଳମ୍ବ ହେତୁ ସାଧାରଣ ଲୋକ ଓ ତୀର୍ଥଯାତ୍ରୀମାନେ ଅନେକ ଅସୁବିଧାର ସମ୍ମୁଖୀନ ହେଲେ । ଏହି ବିଷୟ ମନ୍ଦିର ଦାୟିତ୍ୱରେ ଥିବା ମାଜିଷ୍ଟ୍ରେଟ ତତ୍ତ୍ୱାବଧାରକ (Superintendent) ରାଜାଙ୍କ ଦୃଷ୍ଟିକୁ ଆଣିଲେ ମଧ୍ୟ କୌଣସି ଉନ୍ନତି ହେଲାନାହିଁ । ତତ୍କାଳୀନ ଜିଲ୍ଲାପାଳ ମିଷ୍ଟର ଗ୍ୟାରେଟ୍ (Garrett) ଙ୍କ ରିପୋର୍ଟ ଅନୁଯାୟୀ ରାଜା ମୁକୁନ୍ଦ ଦେବଙ୍କର ମନ୍ଦିର ପରିଚାଳନା ପ୍ରତି ଚରମ ଉଦାସୀନତା ହେତୁ ସବୁ କ୍ଷେତ୍ରରେ ବିଭ୍ରାଟ ସୃଷ୍ଟି ହେଉଛି ବୋଲି ଜଣାଯାଏ । ୨୦ ଅକ୍ଟୋବର ୧୯୦୧, ମହାଷ୍ଟମୀ ଦିନ ମନ୍ଦିର ମଧ୍ୟରେ ପୁଣି ଏକ ଦୁର୍ଘଟଣା ଯୋଗୁଁ କେତେକ ଲୋକଙ୍କର ମୃତ୍ୟୁ ହୋଇଥିଲା । Commissioners letter No I-J Dated 9th, Feb, 1901) ମନ୍ଦିର ସମ୍ବନ୍ଧରେ ଦାଏର ହୋଇଥିବା ଦେୱାନୀ ମକଦ୍ଦମା ରାଜିନାମା ଭିତ୍ତିରେ ୧୮୮୭-୮୮ ରେ ପ୍ରତ୍ୟାହୃତ ହୋଇଥିଲା । ସେଥିରେ ଥିବା ସର୍ତ୍ତ ଅନୁଯାୟୀ ଜଣେ ମ୍ୟାନେଜର ମନ୍ଦିର ପରିଚାଳନାର ପ୍ରତ୍ୟକ୍ଷ ଦାୟିତ୍ୱରେ ରହିବାର ବ୍ୟବସ୍ଥା ଥିଲା । ତଦନୁଯାୟୀ କଟକ ଜଜକୋର୍ଟର ସିରସ୍ତାଦାର ବାବୁ ହରେକୃଷ୍ଣ ଦାଶ ପ୍ରଥମ ମ୍ୟାନେଜର ଭାବେ ୧୮୯୦ ମସିହା ପର୍ଯ୍ୟନ୍ତ କାର୍ଯ୍ୟ କରିଥିଲେ । ୧୮୯୦ ମସିହାଠାରୁ ୧୮୯୩ ମସିହା ପର୍ଯ୍ୟନ୍ତ ଶ୍ରୀ କୃଷ୍ଣଚନ୍ଦ୍ର ମହାନ୍ତି ମ୍ୟାନେଜର ଥିଲେ । ୧୮୯୩ ରେ ଶ୍ରୀ ରାଧାକାନ୍ତ କୁଣ୍ଡୁ କିଛି ସମୟ ପାଇଁ ମନ୍ଦିର ପରିଚାଳକ ରହିଲେ । ୧୮୯୩ ରୁ ୧୮୯୪ ପର୍ଯ୍ୟନ୍ତ ଶ୍ରୀ ଯଦୁନନ୍ଦନ ମହାନ୍ତି ଶ୍ରୀମନ୍ଦିର ପରିଚାଳକ ହେଲେ । ୧୮୯୪ ରେ ଅଳ୍ପଦିନ ପାଇଁ ଶ୍ରୀ ନିତ୍ୟାନନ୍ଦ ଦାଶ ମ୍ୟାନେଜର ଦାୟିତ୍ୱ ସମ୍ଭାଳିଥିଲେ । ୧୮୯୮ ରେ ଜଣେ ଅବସରପ୍ରାପ୍ତ IAS ଅଫିସର Mr. Price ମ୍ୟାନେଜର ହେଲେ । ପୁନର୍ବାର ୧୯୦୦ ମସିହାରେ ମଧ୍ୟ ସେ ମ୍ୟାନେଜର ଦାୟିତ୍ୱ ନେଇଥିଲେ । କିଛିଦିନ ପାଇଁ ଜଣେ ସହକାରୀ ମ୍ୟାନେଜର ମନ୍ଦିର ପରିଚାଳନା ଦାୟିତ୍ୱରେ ରହିଥିଲେ । ୩୦.୧୨.୧୯୦୧ ରେ ତତ୍କାଳୀନ କଲେକ୍ଟର Mr. A. Garrett'' ଶ୍ରୀ ମନ୍ଦିର ପରିଚାଳନା ଅବ୍ୟବସ୍ଥା ଏବଂ ପ୍ରଶାସକ ଓ ଟାଉନ ପୋଲିସ ଉପରେ ତାର ପ୍ରଭାବ'' ଶୀର୍ଷକ ଏକ ବିସ୍ତୃତ ରିପୋର୍ଟ କମିଶନର ଶ୍ରୀଯୁକ୍ତ ଗୁପ୍ତାଙ୍କ ପାଖରେ ଦାଖଲ କରିଥିଲେ ଏବଂ ଏହି ରିପୋର୍ଟ କମିଶନର ତାଙ୍କର ଚିଠି ନଂ ୮୩୪- J ତାରିଖ ୧୮.୯.୧୯୦୨ ରେ ଭାରତ ସରକାରଙ୍କୁ ତାଙ୍କର ମତାମତ ସହ ଜିଲ୍ଲାପାଳଙ୍କ ରିପୋର୍ଟ ପଠାଇଥିଲେ । କମିଶନରଙ୍କ ମତରେ ଶ୍ରୀମନ୍ଦିର ପରିଚାଳନା ବିଭ୍ରାଟ ଏକ ଦୀର୍ଘଦିନର ଦୁରାରୋଗ୍ୟ ବ୍ୟାଧି ଏବଂ ତାହାର ନିରାକରଣ ନିମନ୍ତେ ସରକାରଙ୍କର ସମସ୍ତ ସୁଚିନ୍ତିତ ପଦକ୍ଷେପ ବିଶେଷ ଫଳପ୍ରଦ ହୋଇନାହିଁ । ଏଥିପାଇଁ ବ୍ୟାପକ ଆଇନଗତ ବ୍ୟବସ୍ଥା ହେବା ଅତ୍ୟନ୍ତ ଜରୁରୀ ବୋଲି ସେ ମତ ଦେଇଥିଲେ । ତାଙ୍କର ଦୃଢ଼ମତ ଥିଲା ଯେ, ସମସ୍ତ ଆଇନଗତ କ୍ଷମତା ଜଣେ ଅପାରଗ ରାଜାଙ୍କ ଉପରେ ନ୍ୟସ୍ତ ହୋଇଥିବାରୁ ପରିଚାଳନା ବ୍ୟବସ୍ଥାରେ କୌଣସି ଉନ୍ନତି ସମ୍ଭବ ନୁହେଁ ।

ରାଜା ମୁକୁନ୍ଦ ଦେବ ତାଙ୍କର ୧୮.୯.୧୯୦୧ ଚିଠିରେ ଡେପୁଟି କଲେକ୍ଟର ରାଜକିଶୋର ଦାସଙ୍କୁ କର୍ମାନ୍ତର ପ୍ରେରଣ (Deputation) ରେ ଶ୍ରୀମନ୍ଦିର ପରିଚାଳକ ରୂପେ ଅବସ୍ଥାପିତ କରାଇବା ପାଇଁ କମିଶନରଙ୍କୁ ଅନୁରୋଧ କଲେ ।

୧୮୫୮ ଏବଂ ୧୮୬୩ ରେ ଶ୍ରୀମନ୍ଦିର ପରିଚାଳନାରେ କୌଣସି ସରକାରୀ ହସ୍ତକ୍ଷେପ କରାଯିବ ନାହିଁ ବୋଲି ନୀତି ନିର୍ଦ୍ଧାରିତ ହୋଇଥିଲେ ମଧ୍ୟ ଆଭ୍ୟନ୍ତରୀଣ ଅବ୍ୟବସ୍ଥା ଏବଂ ସାଧାରଣ ଲୋକଙ୍କର ଜୀବନ ବିପନ୍ନ ହେଉଥିବାରୁ ବାରମ୍ବାର ସରକାରୀ ହସ୍ତକ୍ଷେପର ଆବଶ୍ୟକତା ଉପୁଜିଥିଲା । ମନ୍ଦିର ଭିତର ପୋଲିସ ଦାୟିତ୍ୱ ରାଜାଙ୍କୁ ଏବଂ ମନ୍ଦିର ବାହାରର ପୋଲିସ ଦାୟିତ୍ୱ ଜଣେ ମାଜିଷ୍ଟ୍ରେଟଙ୍କୁ ଦିଆଯାଇଥିଲେ ମଧ୍ୟ ଭିତରର ଗଣ୍ଡଗୋଳ ସମ୍ଭାଳିବା ପାଇଁ ମାଜିଷ୍ଟ୍ରେଟଙ୍କର ହସ୍ତକ୍ଷେପ ଆବଶ୍ୟକ ହେଉଥିଲା ।

ରାଜା ମୁକୁନ୍ଦ ଦେବଙ୍କର ପୂର୍ବୋକ୍ତ ଅନୁରୋଧ ଏବଂ ମନ୍ଦିର ପରିଚାଳନାରେ କ୍ରମାଗତ ବିଭ୍ରାଟ ଦୃଷ୍ଟିରୁ ସରକାର ଜଣେ ଡେପୁଟି ମାଜିଷ୍ଟ୍ରେଟଙ୍କୁ କର୍ମାନ୍ତର ପ୍ରେରଣରେ ପଠାଇବା ପାଇଁ ରାଜି ହୋଇଥିଲେ ଏବଂ ତଦନୁଯାୟୀ ତାଙ୍କର ମନୋନୀତ ଶ୍ରୀ ରାଜକିଶୋର ଦାସ ଡେପୁଟି ମାଜିଷ୍ଟ୍ରେଟ ଶ୍ରୀମନ୍ଦିର ପରିଚାଳକ ଭାବରେ ୧୯୦୩ ମସିହାରେ ଦାୟିତ୍ୱ ଗ୍ରହଣ କରିଥିଲେ । ଏକ ଚୁକ୍ତିନାମା ବଳରେ ରାଜାଙ୍କର ମନ୍ଦିର ପରିଚାଳନା ସଂକ୍ରାନ୍ତୀୟ ସମସ୍ତ ଦାୟିତ୍ୱ ଉକ୍ତ ମ୍ୟାନେଜରଙ୍କୁ ହସ୍ତାନ୍ତରିତ ହୋଇଥିଲା ।

---

ସଂପାଦକ
ଶ୍ରୀଜଗନ୍ନାଥ ଗବେଷଣା କେନ୍ଦ୍ର, ପୁରୀ

# "ଶତାବ୍ଦୀର ସୂର୍ଯ୍ୟ"

ଶ୍ରୀ ଶ୍ରୀକାନ୍ତ ଚନ୍ଦ୍ର ସ୍ୱାଇଁ

ଶତାବ୍ଦୀର ସୂର୍ଯ୍ୟ ଉତ୍କଳ ଗୌରବ
ପିତାମହ ଉତ୍କଳରି
ଶତାବ୍ଦୀ ଶେଷରେ ଶତ ପ୍ରଣିପାତ
ସ୍ୱର୍ଗେ ଥାଇ ଘେନାଇବ ।
ଶତବର ତୁମେ ଓଡ଼ିଶା ମାଟିର
ଶାଣିତ ଲେଖନୀ ମୁନ
ସେନାପତି ତୁମେ ଆଦ୍ୟ ସଂଗ୍ରାମର
ଅଖଣ୍ଡ ଓଡ଼ିଶା ସ୍ୱପ୍ନ ।

ସ୍ୱଭାଷା, ସ୍ୱଜାତି, ସ୍ୱଦେଶ ଚିନ୍ତାରେ
ଜୀବନ ବିତେଇ ଦେଲ
ସଭା, ସମ୍ମିଳନୀ, ସଂଗଠନ ଗଢ଼ି
ସ୍ୱତନ୍ତ୍ରତା ଦାବି କଲ ।

ପରିଷଦର ମୁଖ ବିତର୍କ ବାଣୀରେ
ଥରଥ ଟଳିଲି ଶାସକ
ସ୍ୱପ୍ନ ଓଡ଼ିଆର ହୃଦୟ ଗର୍ଭରେ
ଚିହ୍ନିଲେ ପ୍ରାଣିମାନ ।

ଶିରୋମଣି ତୁମ ସବୁଜ ସଙ୍କେତ
ଉଠରେ ଉଠରେ ଡାକ
ଶିରସ୍ତ୍ରାଣ ପିନ୍ଧି ଶିକାର ସାଜି
ରଖିଲ ଜାତିର ଟେକ ।

ସେ ମହାନ୍ ଆତ୍ମା ଅମ୍ଲାନ ପ୍ରତିଭା
ରଖିଲେ ଅଧୁରା କାମ
ଶପଥ ନିଅ ହେ ଜନମ ଦିବସରେ
କରିବା ତାକୁ ସମ୍ପୂର୍ଣ୍ଣ ।

ଜନ ସମ୍ପଦ (କାର୍ଯ୍ୟ) ବିଭାଗ
ସଚିବାଳୟ

# ପରିବେଶ ବନାମ ଉନ୍ନୟନ ଯୋଜନା

*ଶ୍ରୀ ଦୁର୍ଗା ଚରଣ କାନୁନଗୋ*

ଆଜି ଦେଶର ସର୍ବତ୍ର ସ୍ୱାଧୀନତାର ୫୦ ବର୍ଷ ପୂର୍ତ୍ତି ବା ସୁବର୍ଣ୍ଣ ଜୟନ୍ତୀ ଉତ୍ସବ ପାଳନ ପାଇଁ ଆୟୋଜନ ଚାଲିଛି । କିନ୍ତୁ ଦୁଃଖ ଓ ପରିତାପର ବିଷୟ ଯେ ଆଜିସୁଦ୍ଧା ଦେଶର କେତେକ ଅଞ୍ଚଳର ଅଧିବାସୀମାନେ ସ୍ୱାଧୀନତାର ସ୍ୱାଦ ପୂର୍ଣ୍ଣ ମାତ୍ରାରେ ଚାଖି ନପାରି ଯେଉଁ ତିମିରେ ସେହି ତିମିରେ ଅବସ୍ଥାରେ ରହି ଯାଇଛନ୍ତି । ଏମାନେ ଆମ ସମ୍ବିଧାନର ସର୍ବନିମ୍ନ ମୌଳିକ ଅଧିକାରରୁ ଏବେ ସୁଦ୍ଧା ବଞ୍ଚିତ । ସୁସ୍ଥ ନାଗରିକ ହିସାବରେ ଜୀବନ ଧାରଣ ପାଇଁ ଯେଉଁସବୁ ସର୍ବନିମ୍ନ ମୌଳିକ ଆବଶ୍ୟକତା ଦରକାର, ତାହା ସେମାନେ ପାଇ ପାରୁ ନାହାନ୍ତି ଅଥବା ସେମାନଙ୍କୁ ଜାଣିଶୁଣି ବଂଚିତ କରାଯାଉଛି, ପରିବେଶ ଓ ଅନ୍ୟାନ୍ୟ ନାଁରେ । ଉଦାହରଣ ସ୍ୱରୂପ କୁହାଯାଇପାରେ ଯେ ଏହିପରି ଏକ ଅଞ୍ଚଳ ଓଡ଼ିଶାରେ ଶିକ୍ଷା, ସଭ୍ୟତା ଏବଂ ସଂସ୍କୃତିରେ ପ୍ରଥମ ସ୍ଥାନ ଅଧିକାର କରିଥିବା ଖୋଦ ଅବିଭକ୍ତ କଟକ ଜିଲ୍ଲା ତଥା ବର୍ତ୍ତମାନର କେନ୍ଦ୍ରାପଡା ଜିଲ୍ଲାରେ ଅନ୍ତର୍ଭୁକ୍ତ । ତାହା ହେଉଛି କନିକା ଓ ରାଜନଗର ଅଞ୍ଚଳ । ଏହି ଅଞ୍ଚଳଟି ନଦୀନାଳ ଘେରା ସନ୍ତସନ୍ତିଆ ଲୁଣା ଜଙ୍ଗଲରେ ପରିପୂର୍ଣ୍ଣ । ଏଠାକାର ଅଧିବାସୀମାନଙ୍କର ମୌଳିକ ବୃତ୍ତି ଧାନ ଚାଷ ଓ ମାଛ ଚାଷ । ଉକ୍ତ ଅଞ୍ଚଳର ଏକମାତ୍ର ଧାନ ଫସଲ ବର୍ଷା ଉପରେ ନିର୍ଭରଶୀଳ ହୋଇଥିବାରୁ ସେମାନେ ପ୍ରତିବର୍ଷ ଧାନ ଫସଲ ସମ୍ପୂର୍ଣ୍ଣ ରୂପେ ପାଆନ୍ତି ନାହିଁ, କାରଣ କେବେ ପ୍ରବଳ ବନ୍ୟା ଅଥବା କେବେ ପ୍ରବଳ ମରୁଡ଼ି ଯୋଗୁ ଫସଲ ଅମଳ ବାଧାପ୍ରାପ୍ତ ହୋଇଥାଏ । ସେଥିପାଇଁ ସେମାନଙ୍କର ଅନ୍ୟତମ ପରିବାର ପୋଷଣର ଚାପ ମାଛଚାଷ ଉପରେ ପଡ଼େ । ଏଣୁ ଏହି ଅଞ୍ଚଳର ଅଧିବାସୀମାନେ ବହୁ ପଛରେ ପଡ଼ିଯାଇଛନ୍ତି । ଏମାନଙ୍କ ଆର୍ଥିକ ଅବସ୍ଥା ଆଦୌ ଭଲ ନୁହେଁ । ଶିକ୍ଷା ଦିଗରେ ଏମାନେ ବହୁତ ଅନଗ୍ରସର । ଗମନାଗମନର ସୁବିଧା ଆଦୌ ନାହିଁ କହିଲେ ଚଳେ । କେବଳ ଯାହା ଜଳ ପଥରେ ଗମନାଗମନ ହୁଏ । ସ୍ୱାସ୍ଥ୍ୟ ସୁବିଧା କଥା ନ କହିଲେ ଭଲ ।

ଆଜି ବିଜ୍ଞାନର ଉନ୍ନତି ଚରମ ସୀମାରେ ଉପନୀତ ଏବଂ ଏହାର ପ୍ରଭାବରେ ମନୁଷ୍ୟ ଗ୍ରହ-ଗ୍ରହାନ୍ତର ଯାତ୍ରା କରିପାରୁଥିବା ବେଳେ, ଗମନାଗମନର ଅଭାବରୁ, ଉପଯୁକ୍ତ ଶିକ୍ଷା ଅଭାବରୁ ଉପରୋକ୍ତ ଅଞ୍ଚଳ ପରି ଦେଶର ଆହୁରି କେତେ ଅଞ୍ଚଳ ନାନା ଦୁଃଖ, ଯନ୍ତ୍ରଣା ଏବଂ ଅଭାବରେ ଜର୍ଜରିତ ହେଉ ନଥିବେ, ତାହାର ହିସାବ ରଖୁଛି କିଏ ? ଏହିସବୁ ଅଞ୍ଚଳ ଗୁଡିକର ଅଧିବାସୀମାନେ କ'ଣ ଦେଶର ଅନ୍ୟାନ୍ୟ ଅଞ୍ଚଳରେ ବାସ କରୁଥିବା ନାଗରିକମାନଙ୍କଠାରୁ ଭିନ୍ନ ? ସେମାନଙ୍କ ପାଇଁ କ'ଣ ସଂବିଧାନର ନାଗରିକ ତଥା ମୌଳିକ ଅଧିକାର ଲାଗୁ ନୁହେଁ ? ତେବେ କାହିଁକି ସେମାନେ ଆଜି ଯେଉଁ ତିମିରେ ସେହି ତିମିରେ ରହିଛନ୍ତି । ଯେତେବେଳେ ଏହି ଅଞ୍ଚଳର ରାସ୍ତାଘାଟ, ଶିକ୍ଷା ତଥା ସ୍ୱାସ୍ଥ୍ୟର ଉନ୍ନତି କରିବାକୁ ସରକାର ତତ୍ପର ହୁଅନ୍ତି ସେତେବେଳେ ବିଭିନ୍ନ ଆଳରେ ତାହାକୁ ସାକାର କରାଇ ଦିଆଯାଉନାହିଁ । ବିଶେଷ କରି ପରିବେଶ ଆଳ ଦେଖାଇ ପରିବେଶବିତ୍‌ମାନେ ଖୁବ୍ ପ୍ରତିରୋଧ କରନ୍ତି । ଯେପରିକି "ଭିତର କନିକା ଅଭୟାରଣ୍ୟ" ଆଳ ଦେଖାଇ ରାଜନଗର ଓ କନିକା ଅଞ୍ଚଳରେ କୌଣସି ଉନ୍ନତିମୂଳକ କାର୍ଯ୍ୟ କରିବାରେ ବାଧା ସୃଷ୍ଟି କରାଯାଉଛି । ଏପରିକି ଏହାକୁ ଆଳ କରି ମାନ୍ୟବର ଓଡ଼ିଶା ଉଚ୍ଚନ୍ୟାୟାଳୟରେ ପରିବେଶବିତ୍‌ମାନେ ଉକ୍ତ ଅନୁନ୍ନତ ଅଞ୍ଚଳର ଉନ୍ନତିରେ ପ୍ରତିବନ୍ଧକ ଲଗାଇବାକୁ ଜନସ୍ୱାର୍ଥ ମାମଲା ରୁଜୁ କରିବାକୁ ପଛେଇ ନାହାନ୍ତି । ଏକ ଅନୁନ୍ନତ ଅଞ୍ଚଳର ଉନ୍ନତି ସାଧନ କରିବା, ଯଥା ଗମନାଗମନର ସୁବିଧା ପାଇଁ ରାସ୍ତାଘାଟ କରିବା, ଶିକ୍ଷା ଓ ସ୍ୱାସ୍ଥ୍ୟର ଉନ୍ନତି ଲକ୍ଷ୍ୟେ ଯୋଜନା କରିବା ଯେକୌଣସି ଲୋକ ପ୍ରତିନିଧି ସରକାରଙ୍କର ପରମ ଓ ପ୍ରଥମ କର୍ତ୍ତବ୍ୟ । ଏହା କ'ଣ ଏକ ଜନସ୍ୱାର୍ଥ ବିରୋଧୀ କାର୍ଯ୍ୟ ରୂପେ ପରିଗଣିତ ? ତଥାପି ଏହି ଉନ୍ନତିମୂଳକ କାର୍ଯ୍ୟ ରୋକିବାକୁ ଜନସ୍ୱାର୍ଥ ମାମଲା ରୁଜୁ କରାଯାଉଛି ।

ପରିବେଶବିତ୍‌ମାନେ ବୁଝିବା ଉଚିତ୍ ଯେ "ଭିତର କନିକା ଅଭୟାରଣ୍ୟ" ଠିକ୍ ଭାବରେ ସୃଜନ କରାଯାଇନାହିଁ କି ଠିକ୍ ଭାବରେ ସୀମା ନିର୍ଦ୍ଧାରଣ କରାଯାଇ ନାହିଁ । ଫଳରେ ଏଥିରେ ଅଯଥା ୪୦୧ ଗୋଟି ଗ୍ରାମକୁ ଭର୍ତ୍ତି କରିଦିଆ ଯାଇଛି । ଯାହାର ଲୋକସଂଖ୍ୟା ଦୁଇ ଲକ୍ଷରୁ କମ୍ ନୁହେଁ । ଭିତର କନିକା ଅଭୟାରଣ୍ୟ ପରିସରଭୁକ୍ତ ଏହି ୪୦୧ ଗ୍ରାମର ୨ ଲକ୍ଷ ଅଧିବାସୀଙ୍କର ଉନ୍ନତି ସାଧନ ପାଇଁ କ'ଣ ସରକାରଙ୍କର ମୁଣ୍ଡ ବ୍ୟଥା ହେବା କଥା ନୁହେଁ ? ତାଛଡ଼ା ଏହି ସବୁ ଗ୍ରାମ ନିକଟରେ କୌଣସି ଜଙ୍ଗଲ ଆଦୌ ନାହିଁ ଯାହାକୁ କି ଅଭୟାରଣ୍ୟ ଘୋଷଣା କରିବା ଉଚିତ୍ ହୁଅନ୍ତା । ଏହି ଅଭୟାରଣ୍ୟ ଘୋଷଣା ବେଳେ ରାଜସ୍ୱ ବିଭାଗର ପରାମର୍ଶ ନିଆଯାଇ ନାହିଁ କିମ୍ବା ବନ୍ୟପ୍ରାଣୀ ଆଇନର ୧୯ ରୁ ୨୪

ଧାରାକୁ ଉପଯୋଗ କରାଯାଇ ନାହିଁ । ତେଣୁ ଏହି ଅଭୟାରଣ୍ୟ ଘୋଷଣା ବସ୍ତୁତଃ ଆଇନ ସମ୍ମତ ନୁହେଁ । ଯେଉଁଠି ପ୍ରକୃତ ଜଙ୍ଗଲ ରହିଛି ଏବଂ ଯେଉଁଠି କୁମ୍ଭୀର ବାସକରୁଛନ୍ତି ସେହି କେତୋଟି ଅଞ୍ଚଳରେ ଅଭୟାରଣ୍ୟକୁ ସୀମିତ କରିବାରେ କାହାରି ଆପତ୍ତି ରହିବ ନାହିଁ । ଏହି ପରିପ୍ରେକ୍ଷୀରେ ସରକାର ଗତ ୧୯୯୪ ମସିହାରେ ଶେଷ ବିଧାନସଭା ଅଧିବେଶନରେ ଉକ୍ତ ଅଭୟାରଣ୍ୟର ସଂକୁଚିତ ସୀମା ନିର୍ଦ୍ଧାରଣ ପାଇଁ ଏକ ବିଧେୟକ ଆଣିବାକୁ ପ୍ରୟାସ କରିଥିଲେ ମଧ୍ୟ ନ୍ୟାୟାଳୟରେ ଜନସ୍ୱାର୍ଥ ମାମଲା ବିଚାରାଧୀନ ଥିବାରୁ ସମ୍ଭବତଃ ତାହା ମଞ୍ଜୁରୀ ପ୍ରାପ୍ତ ହୋଇପାରିଲା ନାହିଁ । କିନ୍ତୁ ଅଯଥାରେ ତଥାକଥିତ ଭିତର କନିକା ଅଭୟାରଣ୍ୟ ଅନ୍ତର୍ଗତ ୪୦୧ ଗ୍ରାମର ପ୍ରାୟ ୨ ଲକ୍ଷ ଲୋକଙ୍କୁ ଅଭୟାରଣ୍ୟ ଆଇନ ବଳରେ ହଇରାଣ କରାଯାଉଛି ଏବଂ କୌଣସି ଉନ୍ନୟନ କାର୍ଯ୍ୟ କରିବାରେ ବାଧା ସୃଷ୍ଟି କରାଯାଉଛି । ପରିବେଶବିତ୍‌ମାନଙ୍କର ମୂଳ ଲକ୍ଷ୍ୟହେଲା ଜଙ୍ଗଲ କ୍ଷୟ ଜନିତ ପରିବେଶ ରକ୍ଷାକରିବା ଏବଂ ସେମାନେ ପ୍ରାୟ ସବୁବେଳେ ସ୍ୱର ଉତ୍ତୋଳନ କରି ଚାଲିଛନ୍ତି ଜଙ୍ଗଲ ସୁରକ୍ଷା ପାଇଁ । କିନ୍ତୁ ଉନ୍ନୟନମୂଳକ ଯୋଜନା ଯାହାକି ଜନହିତକର ପାଇଁ ଉଦ୍ଦିଷ୍ଟ, ପରିବେଶ ନଷ୍ଟ ଆଳରେ ସେସବୁକୁ ବନ୍ଦ କରିବାକୁ ସ୍ୱର ଉତ୍ତୋଳନ କରିବା ଆଦୌ ଉଚିତ୍ ନୁହେଁ । ଯେପରିକି କଟକ-ଭୁବନେଶ୍ୱର ଚାରିଚକିଆ ରାସ୍ତା ତିଆରିର ଅବ୍ୟବହିତ ପୂର୍ବରୁ କେତେକ ପରିବେଶବିଦ୍ ଆପତ୍ତି ଉଠାଇଥିଲେ, ସେହିପରି ଏବେ ଗୋପାଳପୁରରେ ଟାଟା ଇସ୍ପାତ କାରଖାନା ସ୍ଥାପନ ପାଇଁ ପରିବେଶ ଆଳରେ ପ୍ରତିରୋଧ କରାଯାଉଛି । ସତେ ଯେପରି ଉନ୍ନୟନମୂଳକ ଯୋଜନାକୁ ରୋକିବାକୁ ପରିବେଶବିତ୍‌ମାନେ କେବଳ ବଦ୍ଧପରିକର ଏବଂ ଏମାନଙ୍କ ପାଖରେ ପରିବେଶ ରକ୍ଷା ପାଇଁ ଯେପରି ଅନ୍ୟ କୌଣସି ବିକଳ୍ପ ନାହିଁ । ଏପରି ହେଲେ ଆମ ପ୍ରଦେଶ ତଥା ଦେଶ ପୃଥିବୀର ଅନ୍ୟାନ୍ୟ ଦେଶ ସହିତ ସମକକ୍ଷ ହୋଇପାରିବ ନାହିଁ । ଅନେକ ସମୟରେ ପରିବେଶବିତ୍‌ମାନେ ଉଦ୍ଦେଶ୍ୟ ପ୍ରଣୋଦିତ ହୋଇ ଯାଉଛନ୍ତି ଯାହାକି ଜନସ୍ୱାର୍ଥ ବିରୋଧରେ ଯାଏ । ପରିବେଶ ନଷ୍ଟ ଅନେକ ପ୍ରକାର ରହିଛି । ତନ୍ମଧ୍ୟରୁ ଜଙ୍ଗଲ ନଷ୍ଟ ମୁଖ୍ୟ । ଜଙ୍ଗଲର ଅବକ୍ଷୟକୁ ପୃଥିବୀର ପ୍ରାୟ ସବୁଦେଶ ହୃଦୟଙ୍ଗମ କରୁଛନ୍ତି ଏବଂ ଏଥିପାଇଁ ନିକଟରେ ଜାତିସଂଘ ସଦନରେ ହୋଇଥିବା ''ପୃଥିବୀ'' ସମ୍ମିଳନୀରେ ପ୍ରାୟ ସମସ୍ତ ଦେଶ ବିଶେଷ ଚିନ୍ତା ପ୍ରକଟ କରିଛନ୍ତି ।

ତେଣୁ ପରିବେଶବିତ୍‌ମାନେ ଜଙ୍ଗଲ କ୍ଷୟ ଜନିତ ପରିବେଶ ନଷ୍ଟର ମୂଳ କାରଣ ଅନୁସନ୍ଧାନ କରି ତାହାର ପ୍ରତିକାର କରିବା ପାଇଁ ସରକାରଙ୍କ ଉପରେ ପ୍ରଭାବ ପକାଇବା ଉଚିତ୍ । ଏହାର ମୂଳ କାରଣ ହେଉଛି ଦ୍ରୁତ ଜନସଂଖ୍ୟା ବୃଦ୍ଧି । ଜନସଂଖ୍ୟା ଯେଉଁ ହାରରେ ବୃଦ୍ଧି ପାଉଛି, ତାକୁ ଯଦି ରୋକା ନଯାଏ, ତେବେ ଅବସ୍ଥା ଅସମ୍ଭାଳ ହୋଇ ପଡ଼ିବ । କାରଣ ଜନସଂଖ୍ୟା ବୃଦ୍ଧି ସହିତ ପୃଥିବୀର ସୀମା-ପରିସର ତ ବୃଦ୍ଧି ପାଉନାହିଁ । ପୃଥିବୀର ସେହି ସୀମିତ ଅଞ୍ଚଳ ମଧ୍ୟରେ ହିଁ ସମସ୍ତେ ବାସ କରିବେ । ତେଣୁ ସେମାନଙ୍କ ପାଇଁ ଅଧିକା ଜାଗା ଆସିବ କୁଆଡୁ ? ଅନନ୍ୟୋପାୟ ହୋଇ ସେମାନେ ନିଶ୍ଚିତଭାବେ ଜଙ୍ଗଲ କାଟି କରି ବସବାସ କରିବେ ଏବଂ ସେଥିରୁ ଖାଦ୍ୟ ଯୋଗାଡ଼ ପାଇଁ ଫସଲ କରିବେ । ପୁନଶ୍ଚ ଜାଳେଣୀ ହିସାବରେ ସେମାନଙ୍କର କାଠ ଦରକାର । କୌଣସି ସରକାର କଦାପି ନାନେ ସମସ୍ତଙ୍କୁ ଜାଳେଣୀ ହିସାବରେ କୋଇଲା ବା ରନ୍ଧନ-ଗ୍ୟାସ ଯୋଗାଇ ପାରିବେ ନାହିଁ । ଜଙ୍ଗଲରେ ଏତେ ପୁରାତନ ବୃକ୍ଷ ନାହିଁ, ଯାହାକୁକି ଜଙ୍ଗଲ ବିଭାଗ କଟାଇ ଜାଳେଣୀ ହିସାବରେ ଲୋକଙ୍କୁ ସୁଲଭ ମୂଲ୍ୟରେ ଯୋଗାଇ ଦେଇ ପାରିବେ ।

ତେଣୁ ଜନସଂଖ୍ୟା ବିସ୍ଫୋରଣ ହିଁ ଜଙ୍ଗଲ କ୍ଷୟ ଜନିତ ପରିବେଶ ନଷ୍ଟ ପାଇଁ ଦାୟୀ । ଲୋକଙ୍କୁ ଯେତେବେଳେ ବାସସ୍ଥାନ, ଖାଦ୍ୟ ଅଭାବ ପଡ଼ିବ, ସେତେବେଳେ ସେମାନେ ପେଟ ବିକଳରେ କୌଣସି ଆଇନ କାନୁନ ମାନିବେ ନାହିଁ କିମ୍ବା କୌଣସି ପରିବେଶ ନଷ୍ଟକୁ ନଜର ଦେବେ ନାହିଁ, ପରିଣାମ ଯାହା ହେଉନା କାହିଁକି । ସେତେବେଳେ ପରିବେଶବିତ୍‌ମାନଙ୍କର ଶତଚେଷ୍ଟା ବିଫଳ ହେବ, ଏଥିରେ ସନ୍ଦେହ ନାହିଁ । ତେଣୁ ପରିବେଶବିତ୍‌ମାନେ ଅଯଥା ବନ୍ୟପ୍ରାଣୀ ସୁରକ୍ଷା ଆଳରେ ଜଙ୍ଗଲ ଅବକ୍ଷୟ ଜନିତ ପରିବେଶ ନଷ୍ଟକୁ ପ୍ରାଧାନ୍ୟ ନ ଦେଇ ପରିବେଶ ସୁରକ୍ଷା ପାଇଁ ପ୍ରକୃତ କାରଣ ଖୋଜିବାକୁ ଚେଷ୍ଟା କରନ୍ତୁ । ପୃଥିବୀର ଆବର୍ତ୍ତନ-ବିବର୍ତ୍ତନ ପ୍ରଣାଳୀରେ ବିରାଟକାୟ ''ଡାଇନାସର'' ଭଳି ଦୁର୍ଲ୍ଲଭ ପ୍ରାଣୀ ପୃଥିବୀରୁ ଲୋପ ପାଇ ଯାଇଛନ୍ତି । ସେଥିପାଇଁ ପୃଥିବୀ ଫାଟି ପଡ଼ି ନାହିଁ କି ଆକାଶ ଛିଡ଼ି ପଡ଼ିନାହିଁ । ତଥାପି ମଣିଷ ଉନ୍ନତି କରି ଚାଲିଛି ଏବଂ ଉନ୍ନତିର ଚରମ ସୀମାରେ ପହଞ୍ଚି ପାରିଛି । ତେଣୁ ପରିବେଶ ଆଳରେ କୌଣସି ଜନହିତକର ଯୋଜନାକୁ ପ୍ରତିରୋଧ କରିବା ଉଚିତ୍ ନୁହେଁ । ପରିବେଶ ସୁରକ୍ଷା ସହିତ ଜନସାଧାରଣଙ୍କର ଉନ୍ନତି କଳ୍ପେ ଯୋଜନାମାନ ଚାଲୁ ରଖିବାକୁ ସମସ୍ତେ ଚେଷ୍ଟା କରିବା ଉଚିତ୍ । ତା ନ ହେଲେ ମାନବ ସମାଜ ତିଷ୍ଠି ରହି ପାରିବ ନାହିଁ । ଦେଶ ତଥା ଜାତିର ସୁରକ୍ଷା ପାଇଁ ପରିବେଶବିତ୍‌ମାନେ ତଥା ଲୋକ ପ୍ରତିନିଧି ସରକାର ନିମ୍ନୋକ୍ତ ବିଷୟ ପ୍ରତି ବିଶେଷ ଯତ୍ନବାନ ହେଲେ ପରିସ୍ଥିତି ଯେ ନିଶ୍ଚିତ ଭାବେ ସୁଧୁରିବ, ଏଥିରେ ସନ୍ଦେହ ନାହିଁ ।

(୧) ଜନ୍ମ ନିୟନ୍ତ୍ରଣକୁ କଡ଼ାକଡ଼ି କରିବା । ଏଥିପାଇଁ ସଂପୃକ୍ତ ବିଭାଗ ପ୍ରତି ଠିକ୍ ଦୃଷ୍ଟି ଦିଆଯାଉ ନାହିଁ । ଏ ବାବଦରେ ସରକାର ବହୁତ ଅର୍ଥ ବ୍ୟବସ୍ଥା କରି ଏହାକୁ ସୁଚିନ୍ତିତ ଭାବେ ପରିଚାଳିତ କରିବାକୁ ହେବ । ଏଥିପାଇଁ କଡ଼ା ନିୟମ କାନୁନ ପ୍ରଣୟନ କରିବାକୁ ହେବ । ସଂପୃକ୍ତ ବିଭାଗ ଜନ୍ମ ନିୟନ୍ତ୍ରଣ ସଠିକ୍ ଭାବେ ପରିଚାଳନା କରୁନାହାନ୍ତି ଯାହା ଫଳରେ ଅନେକ ଅର୍ଥ ବାଟ ମାରଣା ହେଉଛି । ତେଣୁ ସରକାରଙ୍କର ସମସ୍ତ ଶକ୍ତି ଏହି ଜନ୍ମ ନିୟନ୍ତ୍ରଣ ପାଇଁ ଖଟାଯିବା ଉଚିତ୍ ।

(୨) ପୁନଃ ବନୀକରଣ । ଯେଉଁ ସବୁ ଅଞ୍ଚଳ ବା ପାହାଡ଼-ପର୍ବତ ବୃକ୍ଷ ଶୂନ୍ୟାରେ ପରିଣତ ହେଲାଣି, ସେଠି ସାରି ବନୀକରଣ କରିବା

ନିତାନ୍ତ ଆବଶ୍ୟକ । ଯଦିଓ ସରକାରଙ୍କ ଏକ ବିଭାଗ (Soil Conservation) ଏହି କାର୍ଯ୍ୟ ପାଇଁ ସ୍ୱତନ୍ତ୍ର ଭାବରେ ଦାୟୀ, ତଥାପି ଉକ୍ତ ବିଭାଗ ଠିକ୍ ଭାବରେ ତାଙ୍କ ଦାୟିତ୍ୱ ତୁଲାଇ ପାରୁ ନାହାନ୍ତି । ଶୁଣାଯାଏ ଯେ ଏହି ବିଭାଗର ଅନେକ ଅର୍ଥ ଠିକ୍ ଭାବରେ ଉପଯୋଗ ନ ହୋଇ, ବାଟ ମାରଣା ହୋଇ ଯାଉଛି । ସେଥିପାଇଁ ସରକାର, ପରିବେଶବିତମାନେ ତଥା ସ୍ୱେଚ୍ଛାସେବୀ ଅନୁଷ୍ଠାନମାନେ ଏଥିପ୍ରତି ତୀକ୍ଷ୍ଣ ଦୃଷ୍ଟି ରଖିଲେ ଏଥିରୁ ଅନେକ ସୁଫଳ ମିଳିବ ।

ଉପରୋକ୍ତ ଦୁଇଟି କାରଣ ଉପରେ ମାନବ ସମାଜର ସ୍ଥିତି ନିର୍ଭର କରୁଛି । ପରିବେଶବିତ ତଥା ସେଚ୍ଛାସେବୀ ଅନୁଷ୍ଠାନମାନେ ଉପରୋକ୍ତ ଦୁଇଟି ସମସ୍ୟାକୁ ସମାଧାନ କରିବା ପାଇଁ ଆଗେଇ ଆସିବା ଉଚିତ୍ । ଏଥିପାଇଁ ଯେଉଁ ସ୍ତରରେ ତ୍ରୁଟି ରହୁଛି ତାହାକୁ ଉନ୍ମୋଚନ କରି ସରକାରଙ୍କ ଦୃଷ୍ଟିକୁ ଆଣି ତାର ଆଶୁ ପ୍ରତିକାର ପାଇଁ ଚେଷ୍ଟା କରିବା ଉଚିତ୍ । ତା ନହେଲେ, ଅଯଥା ମରୀଚିକା ପଛରେ ଧାଇଁବା ପରି, ଦ୍ରୁତ ବର୍ଦ୍ଧିଷ୍ଣୁ ସାଧାରଣ ଲୋକଙ୍କୁ ଉଗାଇ ନଷ୍ଟ ନ କରିବାକୁ ପ୍ରବର୍ତ୍ତାଇବାର କୌଣସି ମୂଲ୍ୟ ରହିବ ନାହିଁ ।

ଅବସରପ୍ରାପ୍ତ ପ୍ରଶାସନିକ ଅଧିକାରୀ
କନିକା ଛକ, ସେଲଟର ରୋଡ୍, କଟକ

## ଗୀତାଭ୍ୟାସ ମଣିଷର ଶ୍ରେଷ୍ଠତ୍ୱ ପ୍ରତିପାଦନକରେ

*ରାଜ୍ୟପାଳ*

ଗୀତାଭ୍ୟାସ ଦ୍ୱାରା ମଣିଷ ପୂର୍ଣ୍ଣାଙ୍ଗ ହେବା ସଙ୍ଗେ ସଙ୍ଗେ ତା'ର ଶ୍ରେଷ୍ଠତ୍ୱ ପ୍ରତିପାଦନ କରିବାରେ ସକ୍ଷମ ହୋଇପାରିବ ବୋଲି ସୂଚନା ଭବନଠାରେ ବିବେକାନନ୍ଦ ସ୍ମୃତି ସଂସଦ, ଭୁବନେଶ୍ୱର ଆନୁକୂଲ୍ୟରେ ଆୟୋଜିତ ଉତ୍ସବରେ ସ୍ୱାମୀ ଚିଦ ଭାବାନନ୍ଦଜୀ ମହାରାଜ, ତିରୁପପ୍ରାଇ, ତାମିଲନାଡୁଙ୍କ ରଚିତ ଶ୍ରୀମଦ୍ ଭାଗବତ୍ ଗୀତାର ଓଡ଼ିଆ ଅନୁବାଦର ଶୁଭ ଉନ୍ମୋଚନ କରି ଓଡ଼ିଶାର ରାଜ୍ୟପାଳ ଶ୍ରୀ ଗୋପାଳ ରାମାନୁଜମ୍ ପ୍ରକାଶ କରିଛନ୍ତି । ଶାଶ୍ୱତ ଏବଂ ପ୍ରଣୀଧାନ ଯୋଗ୍ୟ ପାଞ୍ଚହଜାର ବର୍ଷଧରି ପ୍ରଚଳିତ ଗୀତାର ମାହାତ୍ମ୍ୟକୁ ଉପଲବ୍ଧି କରିବାର ଆବଶ୍ୟକତା ଉପରେ ଗୁରୁତ୍ୱାରୋପ କରି ରାଜ୍ୟପାଳ କହିଲେ ଯେ, ଗୀତାଭ୍ୟାସ ଦ୍ୱାରା କଥା ଓ କାମ ଭିତରେ ଥିବା ତାରତମ୍ୟକୁ ଅକ୍ଳେଶରେ ଦୂରକରାଯାଇ ପାରିବ । ଓଡ଼ିଆ ଭାଷାରେ ଅନୁବାଦିତ ଉକ୍ତ ଶ୍ରୀମଦ୍ ଭାଗବତ ଗୀତା ଓଡ଼ିଶାର ଜନସାଧାରଣ ବିଶେଷକରି ଓଡ଼ିଆ ବ୍ୟତୀତ ଅନ୍ୟଭାଷା ଜାଣିନଥିବା ବ୍ୟକ୍ତି ବିଶେଷଙ୍କର ଅଶେଷ ଉପକାରରେ ଆସିବା ସହ ସାଧାରଣ ଜୀବନରେ ଏହାର ଉପଲବ୍ଧି ପରିଲକ୍ଷିତ ହୋଇପାରିବ ବୋଲି ରାଜ୍ୟପାଳ ବିଶେଷ ଗୁରୁତ୍ୱ ଦେବାକୁ ଆହ୍ୱାନ ଜଣାଇଥିଲେ ।

ଉତ୍ସବକୁ ଉଦ୍‌ଘାଟନ କରି ପୁରୀର ଗଜପତି ମହାରାଜ ଶ୍ରୀ ଦିବ୍ୟସିଂହ ଦେବ କହିଲେ ଯେ ଆଧ୍ୟାତ୍ମିକ ବିଦ୍ୟାହିଁ ଶ୍ରେଷ୍ଠ ବିଦ୍ୟା । ମାନବିକତା ମୂଲ୍ୟବୋଧ ଏବଂ ଶ୍ରେଷ୍ଠ ମଣିଷ ଗଠନରେ ଗୀତାର ମାହାତ୍ମ୍ୟ ପ୍ରଣିଧାନ ଯୋଗ୍ୟ । ଆଧ୍ୟାତ୍ମିକ ପ୍ରଗତି ବିନା ଏକ ସୁସ୍ଥ ସମାଜ ବା ରାଷ୍ଟ୍ର ଗଠନ ଅସମ୍ଭବ । ନୈତିକ ଓ ଆଧ୍ୟାତ୍ମିକ ଶିକ୍ଷା କ୍ଷେତ୍ରରେ ଶ୍ରୀମଦ୍ ଭାଗବତ୍ ଗୀତାର ଆବଶ୍ୟକତା ଯଥେଷ୍ଟ ଉପଲବ୍ଧ ବୋଲି ପ୍ରକାଶ କରି ମହାରାଜା ଏହାର ବହୁଳ ପ୍ରସାର ଉପରେ ଗୁରୁତ୍ୱାରୋପ କରିଥିଲେ ।

ଅନ୍ୟମାନଙ୍କ ମଧ୍ୟରେ ମଦୁରାଇର ବିବେକାନନ୍ଦ ମହାବିଦ୍ୟାଳୟର ଉପାଧ୍ୟକ୍ଷ ପ୍ରଫେସର ଭି.ଏସ୍. ନରସିଂହା, ସ୍ୱାମୀ ପୂର୍ଣ୍ଣାନୁପାନନ୍ଦ ପ୍ରମୁଖ ଉଦ୍‌ବୋଧନ ଦେଇଥିଲେ । ପ୍ରଫେସର ହୃଦାନନ୍ଦ ରାୟ ସ୍ୱାଗତ ଭାଷଣ ଦେଇଥିଲେ ।

# ବିରଞ୍ଚି ନାରାୟଣ ମନ୍ଦିରର ଭିତ୍ତିଚିତ୍ର କଳା

ଡକ୍ଟର ବ୍ରଜକିଶୋର ପାତ୍ରୀ

ଭିତ୍ତିଚିତ୍ର ବା ସଉରୋଳନ ଚିତ୍ରକୁ ଇଂରାଜୀରେ ମୁରାଲ ଚିତ୍ର କୁହାଯାଏ । ଏହା କେଉଁ ପ୍ରାଚୀନ ଯୁଗରୁ ଆରମ୍ଭ ହୋଇଛି । ଭାରତର କେତେକ ପ୍ରଦେଶରେ ଏହି ଚିତ୍ରକଳା ଦେଖିବାକୁ ମିଳେ । ଓଡ଼ିଶା ବନ୍ଧ୍ୟାରୁ ବୋଲିଦିଏ । ଓଡ଼ିଶାର ସମ୍ବଲପୁର ଜିଲ୍ଲାର ଗଣ୍ଡପଲ୍ଲୀ ଓ ବିକ୍ରମଖୋଲ, ସୁନ୍ଦରଗଡ଼ ଜିଲ୍ଲାର ମାଣିକ ମଡ଼ା ଓ ଉଷାକୋଠି, କଳାହାଣ୍ଡି ଜିଲ୍ଲାର ଗୁଡ଼ାହାଣ୍ଡି, ନୂଆପଡ଼ା ଜିଲ୍ଲାର ଯୋଗୀମଠ ଏବଂ କେନ୍ଦୁଝର ଜିଲ୍ଲାର ସୀତାବିଞ୍ଜିଠାରେ ଏହି ଚିତ୍ରକଳା ଦେଖିବାକୁ ମିଳେ । କେନ୍ଦୁଝରର ଭଞ୍ଜବଂଶୀୟ ରାଜାମାନେ ପ୍ରଥମରୁ ହିଁ ସଉରୋଳନ ବା ମୁରାଲଚିତ୍ର ପ୍ରତି ଆକୃଷ୍ଟ ଥିଲେ । ସେମାନେ ପ୍ରାସାଦ ଭିତ୍ତିରେ ଏହି ଚିତ୍ରକଳା ଅଙ୍କନ କରୁଥିଲେ । ପ୍ରାଚୀନ ଯୁଗରେ ସଉରୋଳନ ଚିତ୍ରକଳାଗୁଡ଼ିକ ପଥର ଉପରେ, ଗୁମ୍ଫାରେ ଅଙ୍କନ କରାଯାଉଥିଲା । କ୍ରମେ ଏହା ସାଧାରଣ ଗୃହ, ମନ୍ଦିର, ମଠ ଓ ଅନ୍ୟାନ୍ୟ ସ୍ଥାନମାନଙ୍କରେ ଚିତ୍ରିତ କରାଗଲା । ଏସବୁ ଭାବରେ ଚିତ୍ରକଳାର ପ୍ରଭାବ ଘୁମୁସର ରାଜବଂଶ ଉପରେ ଅଧିକ ପଡ଼ିଥିଲା । ଏହି ଚିତ୍ରକଳା ଘୁମୁସରର ବିଭିନ୍ନ ମନ୍ଦିର, ମଠମାନଙ୍କରେ ଦେଖିବାକୁ ମିଳେ ।

ଭଞ୍ଜରାଜାମାନଙ୍କର ଦେବଦେବୀଙ୍କ ଉପାସନା ପ୍ରତି ପ୍ରବଳ ଆଗ୍ରହ ଥିଲା । ମଧ୍ୟଯୁଗର ଶେଷ ପର୍ଯ୍ୟାୟରେ ମୋଗଲ, ମରହଟ୍ଟା, ଫରାସୀ ଓ ଇଂରାଜମାନେ ହିନ୍ଦୁମାନଙ୍କୁ ଅତ୍ୟନ୍ତ ନିର୍ଯ୍ୟାତନା ଦେଉଥିଲେ । ସେମାନଙ୍କଠାରୁ ରକ୍ଷା ପାଇବା ପାଇଁ ଏବଂ ଘୁମୁସରର ସଂସ୍କୃତିକୁ ସତେଜ ରଖିବା ପାଇଁ ଭଞ୍ଜରାଜାମାନେ ଆପ୍ରାଣ ଚେଷ୍ଟା କଲେ । ଏତଦ୍‌ବ୍ୟତୀତ ଧର୍ମ ପରିବର୍ତ୍ତନକୁ ରୋକିବା ପାଇଁ ଘୁମୁସରରେ ପ୍ରତ୍ୟେକ ଗ୍ରାମରେ କୌଣସି ନା କୌଣସି ମନ୍ଦିର ନିର୍ମାଣ କରାଗଲା । ମନ୍ଦିରଗୁଡ଼ିକୁ କାରୁକାର୍ଯ୍ୟପୂର୍ଣ୍ଣ ପଥରରେ ସୌନ୍ଦର୍ଯ୍ୟ ବଢ଼ାଇବା ବହୁତ ସାପେକ୍ଷ । ଅନ୍ୟ ପକ୍ଷରେ ସଉରୋଳନ ଚିତ୍ର ବା ଭିତ୍ତିଚିତ୍ର ମନ୍ଦିରର ଶୋଭାବର୍ଦ୍ଧନ କରିବା ସଙ୍ଗେ ସଙ୍ଗେ କମ୍ ସମୟ ଓ କମ୍ ଖର୍ଚ୍ଚରେ ହୋଇପାରେ । ଭଞ୍ଜରାଜାମାନଙ୍କ ଆର୍ଥିକ ପରିସ୍ଥିତି ସ୍ୱଚ୍ଛଳ ନ ଥିଲା । ତେଣୁ ଭିତ୍ତିଚିତ୍ର କଳାକୁ ଭଞ୍ଜରାଜାମାନେ ପ୍ରସ୍ତର କଳା ଅପେକ୍ଷା ଅଧିକ ଗୁରୁତ୍ୱ ଦେଉଥିଲେ । ଏହି ଚିତ୍ରକଳାର ପରିପ୍ରକାଶ ଓ ତାକୁ ପ୍ରାଞ୍ଜଳଭାବରେ ପ୍ରସ୍ଫୁଟିତ କରିବା ନିମିତ୍ତ ମନ୍ଦିରର ନିର୍ମାଣ ଶୈଳୀରେ ପରିବର୍ତ୍ତନ ଆଣିଲେ । ଚିତ୍ରକଳାର କାରିଗରମାନେ ଏଥିପାଇଁ ରାଜାଙ୍କ ଦରବାରରେ ସମ୍ମାନିତ ଓ ଉପକୃତ ହେବା ସଙ୍ଗେ ସଙ୍ଗେ ପ୍ରୋତ୍ସାହନ ମଧ୍ୟ ପାଇଲେ ।

ଭିତ୍ତିଚିତ୍ର ଅଙ୍କନ କରିବା ପାଇଁ ସ୍ଥାନ ନିରୂପଣ କରିସାରିବା ପରେ, ସେହି ସ୍ଥାନକୁ ମସୃଣ କରିବା ପାଇଁ କେତେକ ପ୍ରଣାଳୀ ଅବଲମ୍ବନ କରାଯାଏ । ପ୍ରାଚୀନ ଯୁଗରେ ପଥର ଚଟାଣକୁ ମସୃଣ କରିସାରିବା ପରେ ସେଥିରେ ପ୍ରଥମେ ଚିତ୍ରିତ କରି ସେହି ସ୍ଥାନରେ ଖୋଦାଇ କରୁଥିଲେ କିମ୍ବା ଖୋଦାଇ କରି ତା 'ପରେ ଚିତ୍ରିତ କରୁଥିଲେ । ପଥରରେ ଫାଟ ସୃଷ୍ଟିହେଲେ କିମ୍ବା ପଥର ଯୋଡ଼ାଇ କରିବା ଦରକାର ପଡ଼ିଲେ ସେମାନେ ଏଥିପାଇଁ ଧୂପ, ଲାଖ ଏବଂ ଚୂନ, ଇତ୍ୟାଦିକୁ ମିଶ୍ରଣ କରି ଏକ ଆସ୍ତରଣ ଦେଇ ମସୃଣ କରୁଥିଲେ । ଏହା ଦକ୍ଷିଣ ଭାରତର ବହୁ ମନ୍ଦିର ଦେଖାଯାଏ । ସେମାନେ ଅଧିକ ମସୃଣ ଓ ଦୀର୍ଘସ୍ଥାୟୀ ହେବାପାଇଁ ଚୂନରେ ଚିକିଟାମାଟି, ଗୋବର, ଡେଙ୍ଗୁଚିମାଞ୍ଜିଲ ଅଠା ଇତ୍ୟାଦି ମିଶାଉଥିଲେ । ମସୃଣ ଉପରେ ଏକ ପତଳା ଚୂନର ଆସ୍ତରଣ ଦେଉଥିଲେ । ଯାହା ଫଳରେ ମସୃଣଟି ଫାଟିବାର କମ୍ ସମ୍ଭାବନା ଥିଲା ।

ଘୁମୁସରରେ ଚୂନର ପ୍ରଲେପ ଦେବାର ପ୍ରଣାଳୀ ଭିନ୍ନ । ପଥର ବା ଇଟା କାନ୍ଥରେ ସେମାନେ ଚୂନର ପ୍ରଲେପ ଦେଇଥାନ୍ତି । ପୋଡ଼ା ଶଙ୍ଖ, ମୁଦ୍ଗା ଶୁକ୍ତି ବା ଶାମୁକାକୁ ଗୁଣ୍ଡକରି ପାଣିରେ ବତୁରାଇ ପଥର ଚଟାଣରେ ଛେଚି ଏକ ମଣ୍ଡ କରନ୍ତି । ଏହି ମଣ୍ଡରେ ଗୁଡ଼, ମୁଗ, ଦହି, ବେଲର ଅଠା ମିଶାଇ ପନ୍ଦରଦିନ ଯାଏଁ ରଖନ୍ତି । ତା ପରେ ଏହି ମିଶ୍ରଣକୁ ପୁରାପୁରି ନରମ କରିବା ପାଇଁ କାଠ ଘଣା ବ୍ୟବହାର କରିଥାନ୍ତି । ନରମ ହେଲାପରେ ସେହି ମଣ୍ଡକୁ ନେଇ କାନ୍ଥରେ ପ୍ରଲେପ ଦିଅନ୍ତି । ସେମାନେ କାନ୍ଥରେ ଏହାକୁ ଅଢ଼େଇ ଇଞ୍ଚରୁ ତିନି ଇଞ୍ଚ ଯାଏଁ ପ୍ରଲେପ ଦେଇଥାନ୍ତି । କାନ୍ଥକୁ ଆବୃତି କରି, ସ୍ଥାୟୀ କରିବା ପାଇଁ ପୁଣି ଏକ ଇଞ୍ଚର ପ୍ରଲେପ ତହିଁ ଉପରେ ଦିଆଯାଏ । ବଗପଲ୍ଲୀର ବାସୁଦେବ ମନ୍ଦିରରେ ଏପରି ଦୁଇଥର ପ୍ରଲେପ ଦିଆଯାଇଛି । ଉପର ଅଂଶକୁ ସମତଳ କରିବା ପାଇଁ ଲୁହା ବା କାଠର କରଣି ଏବଂ କାଠ ଦଣ୍ଡ ବ୍ୟବହାର କରାଯାଏ । ପ୍ରାଚୀନ ଯୁଗରେ ଏବଂ ମଧ୍ୟ ଯୁଗରେ ଏହି କଳା ସମ୍ବନ୍ଧୀୟ ଅନେକ ସଂସ୍କୃତ ପୁସ୍ତକରେ ବର୍ଣ୍ଣନା କରାଯାଇଛି ।

ଯେଉଁଠାରେ ଚିତ୍ରିତ କରାଯିବ, ସେହି ସ୍ଥାନକୁ ବର୍ଗାକାର, ଆୟତାକାର ବା ଗୋଲାକାର କରି ଚିହ୍ନଟ କରାଯାଇଥାଏ । ଏହାକୁ କୋଠୀ ବା ମଣ୍ଡଳ କହନ୍ତି । ପ୍ରାଚୀନ ଯୁଗର ଚିତ୍ରରେ ଏପରି ପ୍ରାୟ କରାଯାଉନଥାଏ । ବୁଗୁଡ଼ାର ବିରଞ୍ଚିନାରାୟଣ ମନ୍ଦିରରେ ବର୍ଗାକାର ଓ ଆୟତାକାର କରାଯାଇଛି । କିନ୍ତୁ ଉପରିଭାଗରେ ଦୁଇଟି କୋଣ ହେବା ପରିବର୍ତ୍ତେ, ଦୁଇ, ତିନୋଟି ଅର୍ଦ୍ଧ ବର୍ତ୍ତୁଳାକାର କୁଣ୍ଡଦ୍ୱାରା ବକ୍ର କରାଯାଇଛି ଏବଂ ମୋଟା ପ୍ରଲେପ ସାହାଯ୍ୟରେ ସୀମାରେଖା ନିର୍ଦ୍ଧାରଣ କରାଯାଇଛି ।

ମନ୍ଦିରର ଗର୍ଭଗୃହର ଭିତର ପଟର ଶୋଭା ବର୍ଦ୍ଧନ ପାଇଁ କୌଣସି ଚିତ୍ର ବା କାରୁକାର୍ଯ୍ୟ କରାଯାଏ ନାହିଁ । କେତେଗୁଡ଼ିଏ ମନ୍ଦିରରେ ଦ୍ୱାରଦେଶରେ ଶିଳାଲିପି ବା ତାମ୍ରଲିପି ଥିବା ଦେଖାଯାଏ । ମଧ୍ୟଯୁଗର ଶେଷ ଆଡ଼କୁ ଏ ସବୁରେ ପରିବର୍ତ୍ତନ ହୋଇଛି । ବରପଲ୍ଲୀର ବାସୁଦେବ ମନ୍ଦିରର ଜଗମୋହନ ଭିତର ଦ୍ୱାରରେ ଶିଳାଲେଖ ଏବଂ କୃଷ୍ଣ ଭଞ୍ଜ ଓ ଲକ୍ଷ୍ମଣ ଭଞ୍ଜଙ୍କର ପ୍ରସ୍ତର ମୂର୍ତ୍ତି ଖୋଦିତ ହୋଇଛି । ଏହିପରି ଆଠଗଡ଼ର ଜଗନ୍ନାଥ ମନ୍ଦିରରେ ମଧ୍ୟ ଦେଖିବାକୁ ମିଳେ । ଶ୍ରୀକର ଭଞ୍ଜ ବିରଞ୍ଚି ନାରାୟଣ ମନ୍ଦିରରେ ଏଥିରେ କିଛିଟା ପରିବର୍ତ୍ତନ ଆଣିଛନ୍ତି । ସେ ଗର୍ଭଗୃହର ଭିତର କାନ୍ଥରେ ନିଜର ଭିତ୍ତିଚିତ୍ର ଅଙ୍କନ କରାଇଛନ୍ତି । ଏହି ଚିତ୍ରରେ ସେ ଯୋଡ଼ ହସ୍ତରେ ବିଗ୍ରହକୁ ପ୍ରଣାମ କଲାପରି ଚିତ୍ରିତ କରାଯାଇଛି । ତାଙ୍କର ଗୋଟିଏ ରାଜ କର୍ମଚାରୀ ହାତରେ ଆଟ ଧରି, ପଛରେ ଠିଆ ହୋଇଥିବା ଚିତ୍ର ଅଙ୍କନ କରାଯାଇଛି ।

ଆଜି ଯାଏଁ ଭିତ୍ତିଚିତ୍ର ପାଇଁ ପ୍ରାଚୀନ ଯୁଗରୁ ବିଭିନ୍ନ ପ୍ରକାର ରଙ୍ଗ ବ୍ୟବହାର କରୁଥିଲେ । ଭିତ୍ତିଚିତ୍ରରେ ସାଧାରଣତଃ ଛଅ ପ୍ରକାରର ରଙ୍ଗ ବ୍ୟବହାର କରାଯାଏ । ସେଗୁଡ଼ିକ ହେଲା, ହଳଦିଆ-ଗେରୁ, ଭାରତୀୟ-ନାଲ, ଆରକ୍ତି-କଳା, ସାଗୁଆ, ଦୀପକଳା ଏବଂ ଧଳା । ଅନ୍ୟାନ୍ୟ ମନ୍ଦିରମାନଙ୍କରେ ଜଗମୋହନର ଭିତର ପାଖରେ ଭିତ୍ତିଚିତ୍ର ଅଙ୍କିତ ହୋଇଥିବା ଦେଖିବାକୁ ମିଳେ । କିନ୍ତୁ ବିରଞ୍ଚିନାରାୟଣ ମନ୍ଦିରରେ ମନ୍ଦିରର ବାହ୍ୟ ପାର୍ଶ୍ୱର କାନ୍ଥକୁ ଭିତ୍ତିଚିତ୍ର ଅଙ୍କିତ କରିବା ପାଇଁ ଅନିଶ୍ଚିତ କରାଯାଇଛି । ଏଥିଦ୍ୱାରା କୌଣସି ପ୍ରସ୍ତର କାରୁକାର୍ଯ୍ୟ କାନ୍ଥରେ ନାହିଁ । ଅନ୍ୟ ଦୃଷ୍ଟିରୁ ଭିତ୍ତିଚିତ୍ର ବାହ୍ୟ ସୌନ୍ଦର୍ଯ୍ୟର ଶୋଭାବର୍ଦ୍ଧନ କରୁଥିଲେ ମଧ୍ୟ ବାୟୁର ଜଳୀୟ ଅଂଶ ଲୋକମାନଙ୍କର ଅଂଗ ସର୍ଶ, ସୂର୍ଯ୍ୟକିରଣ, ଧୂଳି କଣା ଏବଂ ଧୂଆଁର ସଂସର୍ଶରେ ଆସି ଏବଂ ଉଚିତ ରକ୍ଷଣାବେକ୍ଷଣର ଅଭାବ ଯୋଗୁଁ ଆଜି ଏ ରଙ୍ଗଗୁଡ଼ିକ ବର୍ଣ୍ଣହୀନ ହୋଇପଡ଼ିଛି ।

ଶ୍ରୀକର ଭଞ୍ଜ ତାଙ୍କ ରାଜତ୍ୱର ସ୍ୱଳ୍ପ ସମୟ ମଧ୍ୟରେ ଘୁମୁସରରେ ଦୁଇଶହ ପଚାଶରୁ ଅଧିକ ମନ୍ଦିର ପ୍ରତିଷ୍ଠା କରାଇପାରିଥିଲେ । ବିରଞ୍ଚିନାରାୟଣ ମନ୍ଦିର ସେ ସବୁ ମନ୍ଦିର ମଧ୍ୟରେ ସବୁଠାରୁ ଉତ୍କୃଷ୍ଟତର । ଶ୍ରୀକର ଭଞ୍ଜ ଭାରତର ଅନ୍ୟାନ୍ୟ ମନ୍ଦିରକୁ ପର୍ଯ୍ୟବେକ୍ଷଣ କରି ସେଥିରେ ଥିବା ତ୍ରୁଟିକୁ, ଏହି ମନ୍ଦିରରେ ପରିମାର୍ଜିତ କରିବାକୁ ଚେଷ୍ଟା କରିଛନ୍ତି । ଏହି ମନ୍ଦିରର ଭିତ୍ତିଚିତ୍ରକୁ ତିନି ଭାଗରେ ବିଭକ୍ତ କରାଯାଇପାରେ (କ) ବିଧଚିତ୍ର (ଖ) ଅବିଧ ଚିତ୍ର ଏବଂ (ଗ) ରେଖ ଚିତ୍ର । କୌଣସି ଜୀବନ ବୃତ୍ତାନ୍ତ, ପୌରାଣିକ ଇତ୍ୟାଦିର ରୂପାୟନକୁ ବିଧ ଚିତ୍ର କୁହାଯାଏ । ଅବିଧ ଚିତ୍ରରେ କୌଣସି ପୌରାଣିକ, ଧାର୍ମିକ ଦେବଦେବୀଙ୍କ ମୂର୍ତ୍ତି ଅଙ୍କିତ କରାଯାଇଥାଏ । ରେଖଚିତ୍ରରେ ରେଖାଦ୍ୱାରା ସ୍ଥାନ, ପୀଠ, ପୋଖରୀ ଇତ୍ୟାଦିକୁ ନକ୍ସା ଆକାରରେ ଅଙ୍କନ କରାଯାଏ । ବିରଞ୍ଚିନାରାୟଣ ମନ୍ଦିରର ବିଧ ଚିତ୍ରକୁ ଅନୁମାନ କଲେ ଜଣାଯାଏ ଯେ ଶ୍ରୀକର ଭଞ୍ଜଙ୍କ କୃଷ୍ଣ ଓ ଜଗନ୍ନାଥଙ୍କ ପ୍ରତି ଭକ୍ତି ଥିଲେ ମଧ୍ୟ ସେ ରାମଙ୍କୁ ଅତ୍ୟଧିକ ସମ୍ମାନ ଓ ଶ୍ରଦ୍ଧା ଚିତ୍ରରେ ପ୍ରସ୍ଫୁଟିତ କରାଇଛନ୍ତି । ସଂପୂର୍ଣ୍ଣରାମାୟଣକୁ ଅତି ପ୍ରାଞ୍ଜଳ ଭାବରେ ବର୍ଣ୍ଣନା କରିଛନ୍ତି । ରାମ ଲକ୍ଷ୍ମଣ, ବାଳୀ, ସୁଗ୍ରୀବ, ହନୁମାନ ଇତ୍ୟାଦିକୁ ରାମାୟଣର ପୌରାଣିକ ଧାରା ଅବଲମ୍ବନରେ ବିଭିନ୍ନ ସ୍ଥାନରେ କ୍ଷେତ୍ରର ବୈଶିଷ୍ଟ୍ୟତାକୁ ନେଇ ସେମାନଙ୍କର ଅଙ୍ଗଭଙ୍ଗୀକୁ ବିଭିନ୍ନ ପର୍ଯ୍ୟାୟରେ ଅତି ସୁନ୍ଦର ଭାବରେ ଚିତ୍ରିତ କରିଛନ୍ତି । ସମାଜକୁ କ୍ଷଣିକ ବାସନା ବା କାମନାର ଊର୍ଦ୍ଧ୍ୱରେ ରହିବାପାଇଁ ଚେତାବନୀ ଦେଇ ରାମଚନ୍ଦ୍ରଙ୍କ ମାଧ୍ୟମରେ ସ୍ୱକୀୟା ପ୍ରୀତିର ଆଦର୍ଶକୁ ଏଠାରେ ଚିତ୍ରିତ କରାଇଛନ୍ତି ।

କୃଷ୍ଣ ଚରିତରେ କୃଷ୍ଣଙ୍କ ଲାଳିତ୍ୟ ରୂପକୁ ଅତି ପୁଙ୍ଖାନୁପୁଙ୍ଖ ଭାବରେ ଚିତ୍ରିତ କରାଯାଇଛି । ତାଙ୍କର ବେଶ, ଅଳଙ୍କାର, ଭଙ୍ଗୀ, ତ୍ରିବାଙ୍କ ଚାହାଣି, ମୟୂରପୁଚ୍ଛରେ ଶୋଭିତ ମୁକୁଟ, ବଂଶୀଧାରଣ କଲାପରି ହସ୍ତଭଙ୍ଗୀ ଇତ୍ୟାଦି କୃଷ୍ଣଙ୍କୁ ଅତି ସୁନ୍ଦର ଭାବରେ ଜୀବନ୍ତ କରାଇପାରିଛି । ସେହିପରି ରାଧାଙ୍କୁ ବିଶ୍ୱମୋହିନୀ ରୂପରେ ସଜାଇବାକୁ ଯାଇ ତାଙ୍କର ଅବୟବ, ନିତମ୍ବ, ସ୍ତନ, ଅଳଙ୍କାର ଏବଂ ଅଙ୍ଗକୁ ଏପରି ଚିତ୍ରିତ କରାଯାଇଛି, ଯେପରି ସେ କୃଷ୍ଣଙ୍କୁ ଅତି ଆବେଗଭରା ହୋଇ ପ୍ରେମଭିକ୍ଷା କରୁଛନ୍ତି । ଅନେକ ସଖୀ ବା ଗୋପୀ, ପ୍ରକୃତି, ପଶୁପକ୍ଷୀ-ଇତ୍ୟାଦିଙ୍କର ଚିତ୍ର, ବିଭିନ୍ନ ଦୈତ୍ୟଙ୍କୁ ବଧ କରୁଥିବାର ଚିତ୍ର ଅତି ନିଖୁଣ ଭାବରେ ଚିତ୍ରିତ କରାଯାଇଛି । ଏଠାରେ କୃଷ୍ଣଙ୍କ ସହ ଗୋପାଙ୍ଗନାମାନଙ୍କ ପ୍ରେମଲୀଳାରେ ପରକୀୟ ପ୍ରୀତି ସ୍ପଷ୍ଟ ହୋଇଥିଲେ ମଧ୍ୟ ଗୋପୀ ପ୍ରେମରେ ଭକ୍ତି ବା ପରମାତ୍ମାଙ୍କଠାରେ ଜୀବାତ୍ମାର ସମର୍ପଣ ଭାବ ଚିତ୍ରରୁ ସହଜରେ ଜାଣି ହେଉଛି । ଚିତ୍ରକାରଙ୍କ ଦୃଷ୍ଟିରେ ରାସକ୍ରୀଡ଼ା ଭ୍ରମଣ ନୁହେଁ ବରଂ ଏହା ମୁକ୍ତି ପ୍ରୟାସୀ । ଏଥିରେ କୌଣସି ଚିତ୍ରରେ ଅଶ୍ଳୀଳତାକୁ ସ୍ଥାନ ଦିଆଯାଇ ନାହିଁ । ଅନ୍ୟ ଦିଗରେ ଉପେନ୍ଦ୍ରଭଞ୍ଜଙ୍କ ଦାର୍ଶନିକ ଚିନ୍ତାଧାରାରେ ପ୍ରଭାବିତ ହୋଇ ନାୟିକାକୁ ପାଇବାର ଯୋଗ୍ୟତା ନାହିଁ ବୋଲି ଚିନ୍ତା କରି, ଏଠାରେ କୃଷ୍ଣଙ୍କୁ କଳାରଙ୍ଗରେ ଚିତ୍ରିତ କରାଯାଇଛି ।

ରେଖ ଭିତ୍ତି ଚିତ୍ରରେ ଶ୍ରୀକର ଭଞ୍ଜଙ୍କର ଅଶେଷ ପାରଦର୍ଶିତା ଥିଲା । ଅଣ ହିନ୍ଦୁମାନଙ୍କ ଠାରୁ ଜଗନ୍ନାଥ ସଂସ୍କୃତିକୁ ବଞ୍ଚାଇବାକୁ ଯାଇ ଏବଂ ଜଗନ୍ନାଥଙ୍କୁ ବିଶ୍ୱ ବିଦିତ କରିବା ପାଇଁ ସେ ଶ୍ରୀକ୍ଷେତ୍ରର ପୂର୍ଣ୍ଣ ନକ୍ସା ଏହି ଭିତ୍ତି ଚିତ୍ର ସାହାଯ୍ୟରେ ଅଙ୍କିତ କରିଛନ୍ତି । ଏହାକୁ ଦେଖି ଯେ କୌଣସି ବ୍ୟକ୍ତି ଅତି ସହଜରେ ଶ୍ରୀକ୍ଷେତ୍ରର ପ୍ରତ୍ୟେକ ମନ୍ଦିର ରାସ୍ତା, ପୋଖରୀ ବାସଗୃହ ଇତ୍ୟାଦିର ଅବସ୍ଥାନକୁ ନିରୂପଣ କରିପାରିବ । ପ୍ରାଚୀନ ଯୁଗରେ ଜ୍ୟାମିତିକ ରେଖଚିତ୍ର ପଥର ବା ଗୁମ୍ଫାମାନଙ୍କରେ କରାଯାଉଥିଲା । ସେମାନେ ସୂର୍ଯ୍ୟ, ଚନ୍ଦ୍ର ବୃତ୍ତ, ବର୍ଗାକାର, ଆୟତାକାର ଇତ୍ୟାଦି ବା ମଣିଷ

ବା ପଶୁ ଇତ୍ୟାଦିର ଚିତ୍ର ରେଖାରେ ଟାଣି ଜାଣୁଥିଲେ । ରେଖା ଭିତ୍ତି ଚିତ୍ର ଇତିହାସ କ୍ଷେତ୍ରରେ ଶ୍ରୀକର ଭଞ୍ଜଙ୍କର ଶ୍ରୀକ୍ଷେତ୍ର ଭିତ୍ତି ନକ୍ସା ସର୍ବପ୍ରଥମ ଓ ଉତ୍କୃଷ୍ଟତର । ଏଥିରୁ ତାଙ୍କର ଗାଣିତିକ ବିଦ୍ୟାରେ ପାରିଦର୍ଶିତା ଓ ଦକ୍ଷତା ପ୍ରକାଶ କରୁଛି । ତାଙ୍କ ପୂର୍ବରୁ ଭିତ୍ତି ନକସା ଚିତ୍ରାଙ୍କନ ହୋଇଥିବା ଦୃଷ୍ଟାନ୍ତ ଓଡ଼ିଶାରେ କେଉଁଠାରେ ଦେଖିବାକୁ ମିଳେ ନାହିଁ । କାବ୍ୟ ଚିତ୍ର ଇତ୍ୟାଦି ତାଳ ପତ୍ରରେ ଲେଖାଯାଉଥିଲା । ସେହି ପଟଚିତ୍ରର ପ୍ରଭାବରେ ଶ୍ରୀକର ଭଞ୍ଜ ଭିତ୍ତିଚିତ୍ରରେ ଦେଢ଼ଫୁଟ ଚଉଡ଼ାରେ କ୍ରମାନୁଯାୟୀ ଧାଡ଼ି ଧାଡ଼ି କରି ପୌରାଣିକ ଗାଥାକୁ ଗୋଟିଏ କୋଠରୀରେ ବିଶ୍ଳେଷଣ କରି ଆଗକୁ ବଢ଼ାଇବାକୁ ଚେଷ୍ଟା କରିଛନ୍ତି ।

ଅବିଧ ଚିତ୍ରକୁ ଆଧାର କରି ସେ ବିଷ୍ଣୁଙ୍କର ଦଶଅବତାରକୁ ଅତି ସୁନ୍ଦର ଭାବେ ଚିତ୍ରିତ କରିଛନ୍ତି । ଦଶଅବତାର ଚିତ୍ରକୁ ଦେଖିଲେ ଯେ କୌଣସି ବ୍ୟକ୍ତି ସହଜରେ ଚିତ୍ରକାରର ଦକ୍ଷତାକୁ ଅନୁମାନ କରିପାରିବ ।

ଏ ସବୁ ଭିତ୍ତି ଚିତ୍ରକୁ ଦେଖିଲେ, ସ୍ପଷ୍ଟ ଅନୁମାନ କରି ହୁଏ ଯେ, ଶ୍ରୀକର ଭଞ୍ଜ ଉପେନ୍ଦ୍ର ଭଞ୍ଜଙ୍କର କାବ୍ୟ ଦ୍ୱାରା ପ୍ରଭାବିତ ହୋଇଛନ୍ତି । ତଥାପି କାବ୍ୟରେ ଥିବା ଅନେକାଂଶକୁ ସେ ତାଙ୍କର କଳାମାଧ୍ୟମକୁ ଆଣି ନାହାନ୍ତି ଏବଂ ସେଥିରୁ ଥିବା ଭୁଲଗୁଡ଼ିକ ଚିତ୍ରକଳାରେ ପରିମାର୍ଜିତ କରିଛନ୍ତି । ଉପେନ୍ଦ୍ରଭଞ୍ଜ ଅନେକ କାଳ୍ପନିକ କାବ୍ୟର ସ୍ରଷ୍ଟା । ଶ୍ରୀକର ଭଞ୍ଜ କୌଣସି କାଳ୍ପନିକ ବା କିମ୍ବଦନ୍ତୀକୁ ଚିତ୍ରରେ ସ୍ଥାନ ଦେଇ ନାହାନ୍ତି । ଉପେନ୍ଦ୍ର ଭଞ୍ଜ ବୈଦେହୀଶ ବିଳାସ କାବ୍ୟର ଗୋଟିଏ ଛାନ୍ଦରେ ରାମ, ଲକ୍ଷ୍ମଣ, ଭରତ, ଶତ୍ରୁଘ୍ନ ଚାରି ଭାଇଙ୍କୁ ଜଗନ୍ନାଥ, ବଳଭଦ୍ର ସୁଭଦ୍ରା ଓ ସୁଦର୍ଶନ ଚାରି ମୂର୍ତ୍ତି ସଙ୍ଗେ ତୁଳନା କରିଛନ୍ତି ଏବଂ ଅନ୍ୟ ଛାନ୍ଦରେ ରାମ ରାବଣକୁ ବଧ କରି ଏବଂ ଚଉଦବର୍ଷର ସମାପ୍ତି ପରେ ଫେରିବା ବେଳେ ଅଯୋଧ୍ୟା-ବାସୀଙ୍କ ସ୍ୱାଗତକୁ ଜଗନ୍ନାଥଙ୍କ ବାହୁଡ଼ା ଯାତ୍ରା ସଙ୍ଗେ ତୁଳନା କରିଛନ୍ତି । ଏହା ସମ୍ପୂର୍ଣ୍ଣରୂପେ ପୌରାଣିକ ଓ ତଥ୍ୟଗତ ଭୂଲ । ଏହାକୁ ଶ୍ରୀକର ଭଞ୍ଜ ପରିମାର୍ଜିତ କରି କ୍ରମ ଅନୁଯାତ୍ରୀ ଚିତ୍ରିତକରାଇଛନ୍ତି । ଉପେନ୍ଦ୍ରଭଞ୍ଜଙ୍କ କାବ୍ୟରେ ବର୍ଣ୍ଣିତ ଅଳଙ୍କାର ଆଭୂଷଣ ଓ ସେ ସମୟର ଘୁମୁସରବାସୀଙ୍କ ବେଶଭୂଷାକୁ ଆଖିଆଗରେ ରଖି ନାୟକ, ନାୟିକାଙ୍କ ଅଙ୍ଗମାନଙ୍କରେ ସ୍ୱର୍ଣ୍ଣ ରୌପ୍ୟ ଖଚିତ ଅଳଙ୍କାର, ଚିବୁକର ମୋତି ଜାଲି, ଚନ୍ଦ୍ରରିକା, ନାସିକାରେ ଗଜମୂରି, କଣ୍ଠରେ ମୋତିମାଳା, ମଣିବନ୍ଧରେ ସୁବର୍ଣ୍ଣଚୁଡ଼ି, ପାଦରେ ଝୁଣ୍ଟିଆ ଇତ୍ୟାଦି ଚିତ୍ରିତ କରାଯାଇଛନ୍ତି । ବିରଞ୍ଚିନାରାୟଣ ମନ୍ଦିର ଭିତ୍ତିଚିତ୍ରରେ ନାରୀକୁ ଅତି କମ ସ୍ଥାନରେ ଚିତ୍ରିତ କରାଯାଇଛି । ଯାହା ଫଳରେ ଏହାର ସ୍ଥାନ ନଗଣ୍ୟ କରିଦିଆଯାଇଛି ।

ଏପରି ସରଳୋନ୍ନତ ଚିତ୍ର ବା ଭିତ୍ତିଚିତ୍ର ଘୁମୁସର ବଡ଼ପଲ୍ଲୀର ବାସୁଦେବ ମନ୍ଦିର ହତାରେ ଥିଲା । ସମୟର କରାଳରେ ସେହି ଚିତ୍ରକଳା ସମ୍ପୂର୍ଣ୍ଣ ନଷ୍ଟ ହୋଇ କେବଳ କାଣ୍ଟଟି ଅଛି । ଜଗନ୍ନାଥ ପ୍ରସାଦରେ ଥିବା ରଘୁନାଥ ମନ୍ଦିରରେ କିଛିଟା ଏହି ଚିତ୍ରକଳା ଦେଖିବାକୁ ମିଳେ । ପୁରୁଣା ମନ୍ଦିରଟି ଭାଙ୍ଗିଦିଆଯାଇ ଏହାର ପଛରେ ଅନ୍ୟ ଏକ ମନ୍ଦିର ନିର୍ମାଣ କରି ବିଗ୍ରହ ସେହି ନୂତନ ମନ୍ଦିରରେ ସ୍ଥାପନ କରିବା ଫଳରେ ଏହି ଚିତ୍ରକଳା ନଷ୍ଟ ହୋଇଯାଇଛି କିନ୍ତୁ ଏହାର କିୟଦଂଶ ଭଙ୍ଗା କାନ୍ଥରେ ଅସଷ୍ଟ ଅବସ୍ଥାରେ ଅଛି । ଆଜିକାଲି ଏହି ଚିତ୍ରକଳାର ରକ୍ଷଣାବେକ୍ଷଣ ଓ ପ୍ରୋତ୍ସାହନର ଅଭାବ ଯୋଗୁଁ ଚିତ୍ର ଇତିହାସରୁ ବିଲୟ ହେବାକୁ ବସିଲାଣି ।

ବୁଗୁଡ଼ା,
ଗଞ୍ଜାମ, ୭୬୧୧୧୮

## ସୂଚନା ଓ ଲୋକ ସଂପର୍କ ପ୍ରଦର୍ଶନୀ ମଣ୍ଡପ ଶ୍ରେଷ୍ଠ ବିବେଚିତ

ଏପ୍ରିଲ ପହିଲାଠାରୁ ଏକ ସପ୍ତାହ ବ୍ୟାପୀ ସ୍ଥାନୀୟ ଏକ ନମ୍ବର ୟୁନିଟ୍‌ସ୍ଥ ଆଦିବାସୀ ପଡିଆଠାରେ ଅନୁଷ୍ଠିତ ଆଦିବାସୀ ମେଳାରେ ରାଜ୍ୟ ସୂଚନା ଓ ଲୋକ ସଂପର୍କ ବିଭାଗର ପ୍ରଦର୍ଶନୀ ମଣ୍ଡପଟି ସର୍ବଶ୍ରେଷ୍ଠ ବିବେଚିତ ହୋଇ ପ୍ରଥମ ପୁରସ୍କାର ଲାଭ କରିଛି ।

ଏହି ପ୍ରଦର୍ଶନୀ ମଣ୍ଡପରେ ବିଭିନ୍ନ ଆଦିବାସୀ ସଂପ୍ରଦାୟର ଫଟୋଚିତ୍ର ଓ ସେମାନଙ୍କର ଜୀବନଯାପନ ପ୍ରଣାଳୀ ଓ ସାଂସ୍କୃତିକ ପରମ୍ପରା ଉପରେ ଫଟୋଚିତ୍ରମାନ ପ୍ରଦର୍ଶିତ ହେବା ସଙ୍ଗେ ସଙ୍ଗେ ସେମାନଙ୍କ ଉନ୍ନତି ନିମିତ୍ତ ସରକାରଙ୍କ ପକ୍ଷରୁ କାର୍ଯ୍ୟକାରୀ ହେଉଥିବା ବିଭିନ୍ନ ଯୋଜନାର ସଫଳ ରୂପାୟନ ବିଶେଷ କରି ସେମାନଙ୍କ ନିମନ୍ତେ ଶିକ୍ଷା, ସ୍ୱାସ୍ଥ୍ୟ ସେବା, ବାସଗୃହ ଯୋଗାଣ ଓ ଉନ୍ନତ କୃଷି କାର୍ଯ୍ୟକ୍ରମ ସଂପର୍କରେ ମଡେଲମାନ ପ୍ରସ୍ତୁତ କରାଯାଇ ପ୍ରଦର୍ଶନ କରାଯାଇଥିଲା । ଫଳରେ ପ୍ରଦର୍ଶନୀ ମଣ୍ଡପଟି ଅତ୍ୟନ୍ତ ଆକର୍ଷଣୀୟ ହୋଇପାରିଥିଲା ।

ଏହା ସହିତ ଏହି ପ୍ରଦର୍ଶନୀ ମଣ୍ଡପରେ ଓଡ଼ିଶାର କଳା, ସଂସ୍କୃତି ଉପରେ ଆଧାରିତ ଫଟୋଚିତ୍ର ଏବଂ ସରକାରଙ୍କର ବିଗତ ଦୁଇବର୍ଷ ମଧ୍ୟରେ ବିଭିନ୍ନ ଉନ୍ନୟନମୂଳକ କାର୍ଯ୍ୟକ୍ରମର ସଫଳତା ସଂକ୍ରାନ୍ତୀୟ ଫଟୋଚିତ୍ର, ଲିଖିତ ସୂଚନା ଓ ମଡେଲ ଜନସାଧାରଣଙ୍କ ମଧ୍ୟରେ ବିଶେଷ ଆଦୃତ ହୋଇପାରିଥିଲା ।

# ଜନସଂଖ୍ୟା ନିୟନ୍ତ୍ରଣ ଓ ଜନ ସଚେତନତା

*ଶ୍ରୀ ବରଦା ପ୍ରସନ୍ନ ଦାସ*

ଦ୍ରୁତ ଜନସଂଖ୍ୟା ବୃଦ୍ଧି ଆଜି ସାରା ବିଶ୍ୱରେ ଯେପରି ଉଦ୍‌ବେଗ ସୃଷ୍ଟି କରିଛି, ସେହିପରି ଜନସଂଖ୍ୟା ନିୟନ୍ତ୍ରଣ ପାଇଁ ଆଜି ରାଷ୍ଟ୍ର ନାୟକମାନେ ମଧ୍ୟ ଚିନ୍ତିତ ହୋଇ ପଡ଼ିଛନ୍ତି । ପୃଥିବୀରେ ପ୍ରତି ସେକେଣ୍ଡରେ ୩ଟି ଶିଶୁ ଜନ୍ମ ଗ୍ରହଣ କରୁଛନ୍ତି । ଜାତିସଂଘ ପକ୍ଷରୁ ପ୍ରକାଶିତ ୧୯୯୦ ମସିହାର ବିଶ୍ୱ ଜନସଂଖ୍ୟା ରିପୋର୍ଟରୁ ଜଣାଯାଉଛି ଯେ ପ୍ରତିଦିନ ପୃଥିବୀରେ ଲୋକସଂଖ୍ୟା ଅଢ଼େଇ ଲକ୍ଷ ବୃଦ୍ଧି ହେଉଛି । ସମ୍ପ୍ରତି ପୃଥିବୀର ଲୋକସଂଖ୍ୟା ୬୦୦ କୋଟିକୁ ଟପିଯିବ ବୋଲି ଅନୁମାନ କରାଯାଉଛି । ଆମ ଦେଶ ଭାରତରେ ଏ ସମସ୍ୟା ଆହୁରି ଜଟିଳ । ସମଗ୍ର ବିଶ୍ୱରେ ଜନସଂଖ୍ୟା କ୍ଷେତ୍ରରେ ଭାରତର ସ୍ଥାନ ଦ୍ୱିତୀୟ । ଚୀନ ହେଉଛି ବିଶ୍ୱର ପ୍ରଥମ ଜନବହୁଳ ରାଷ୍ଟ୍ର । ସ୍ୱାଧୀନତା ପ୍ରାପ୍ତି ବେଳକୁ ଭାରତର ଜନସଂଖ୍ୟା ୩୪ କୋଟି ୨୦ ଲକ୍ଷ ଥିଲା । ୧୯୯୧ ମସିହା ଜନଗଣନାରୁ ଜଣାପଡ଼ିଛି ଯେ ଭାରତର ଲୋକସଂଖ୍ୟା ୮୪ କୋଟି ୩୯ ଲକ୍ଷ ୩୦ ହଜାର ୮୬୨ । ଯୋଜନା କମିଶନଙ୍କ ହିସାବ ଅନୁସାରେ ଆମ ଜନସଂଖ୍ୟାର ଏକ ଚତୁର୍ଥାଂଶରୁ ଅଧିକ ଦାରିଦ୍ର୍ୟ ସୀମାରେଖା ତଳେ ରହିଛନ୍ତି । ଓଡ଼ିଶାରେ ହୋଇଥିବା ୧୯୯୧ ଜନଗଣନାର ପ୍ରାଥମିକ ଫଳାଫଳ ଅନୁଯାୟୀ ରାଜ୍ୟର ମୋଟ ଲୋକସଂଖ୍ୟା ୩ କୋଟି ୧୫ ଲକ୍ଷ ୧୨ ହଜାର ୭୦ । ୧୯୦୧ ମସିହାଠାରୁ ୧୯୯୧ ମସିହା ୯୦ ବର୍ଷ ମଧ୍ୟରେ ଓଡ଼ିଶାର ଜନସଂଖ୍ୟା ୩ ଗୁଣରୁ କିଛି ଅଧିକ ବୃଦ୍ଧି ପାଇଥିବା ବେଳେ ଓଡ଼ିଶାର ସହରାଞ୍ଚଳଗୁଡ଼ିକର ଲୋକସଂଖ୍ୟା ୪ ଲକ୍ଷ ୧୨ ହଜାରରେ ପହଞ୍ଚିବା ଫଳରେ ଏହା ରାଜ୍ୟର ସବୁଠାରୁ ଅଧିକ ଜନସଂଖ୍ୟା ବିଶିଷ୍ଟ ସହର । ସେହିପରି କଟକ ସହର ଲୋକ ସଂଖ୍ୟା ୪ ଲକ୍ଷ ୨ ହଜାର ହୋଇଥିବାରୁ ଏହାର ସ୍ଥାନ ୨ୟରେ ରହିଛି । ସର୍ବ ଭାରତୀୟ ସ୍ତରରେ ଜନସଂଖ୍ୟା ବୃଦ୍ଧିହାର ୨.୧୧ ଭାଗ ଥିବାବେଳେ ଓଡ଼ିଶାରେ ସେହି ହାର ୧.୯୫ ଭାଗ ରହିଛି । ଏହି ହାରକୁ ହ୍ରାସ କରିବା ପାଇଁ ସରକାର ଉଦ୍ୟମ କରୁଛନ୍ତି । ଭାରତ ବିଶ୍ୱର ପ୍ରଥମ ରାଷ୍ଟ୍ର ଯେକି ତାର ପଞ୍ଚବାର୍ଷିକ ଯୋଜନାଗୁଡ଼ିକରେ ଏହି କାର୍ଯ୍ୟକ୍ରମ ଲାଗି ଯଥେଷ୍ଟ ପରିମାଣରେ ପାଣ୍ଠି ବ୍ୟବସ୍ଥା କରିଥିଲା । ବିଭିନ୍ନ ସମୟରେ ମଧ୍ୟ ଜନସଂଖ୍ୟା ନିୟନ୍ତ୍ରଣ ଲାଗି ନୂଆ ନୂଆ ଉପାୟମାନ ଗ୍ରହଣ କରାଯାଉଛି । କିନ୍ତୁ ବାଞ୍ଛିତ ଲକ୍ଷ୍ୟ ଅନୁଯାୟୀ ଜନ୍ମହାର ହ୍ରାସ କରିବା ଲାଗି ଦେଶ ସମର୍ଥ ହୋଇ ପାରୁନାହିଁ ।

ଗତ ୪୦ ବର୍ଷ ମଧ୍ୟରେ ପୃଥିବୀରେ ଜନସଂଖ୍ୟା ଅସମ୍ଭବ ଭାବେ ବୃଦ୍ଧି ପାଇଛି । ଷାଠିଏ ଦଶକରେ ପ୍ରତିବର୍ଷ ପୃଥିବୀର ଜନସଂଖ୍ୟା ୫ କୋଟି କରି ବୃଦ୍ଧି ପାଉଥିଲା । ଏବେ ଏହା ୯ କୋଟି ୫୦ ଲକ୍ଷ କରି ବୃଦ୍ଧି ପାଉଛି ।

**ଜନସଂଖ୍ୟା ବୃଦ୍ଧିହାର -** ବିଂଶ ଶତାବ୍ଦୀରେ ଓଡ଼ିଶାର ଜନସଂଖ୍ୟା ବୃଦ୍ଧିହାର ଅନୁଶୀଳନ କଲେ ସର୍ବଭାରତୀୟ ବୃଦ୍ଧିହାର ତୁଳନାରେ ଅପେକ୍ଷାକୃତ ଏକ ପୃଥକ ଛବି ଦୃଷ୍ଟିଗୋଚର ହୁଏ । ୧୯୦୧-୧୧ ମଧ୍ୟରେ ଓଡ଼ିଶାର ଜନସଂଖ୍ୟା ବୃଦ୍ଧିହାର ଶତକଡ଼ା ୧୪.୪୪ ଥିବା ବେଳେ ଭାରତର ଜନସଂଖ୍ୟା ବୃଦ୍ଧିହାର ଶତକଡ଼ା ୫.୭୫ ଥିଲା । ୧୯୨୧-୩୧, ୧୯୩୧-୪୧ ଓ ୧୯୪୧-୫୧ ମଧ୍ୟରେ ବୃଦ୍ଧିହାର ଯଥାକ୍ରମେ ଶତକଡ଼ା ୧୧.୯୪, ୧୦.୨୨ ଓ ୬.୩୮ ଥିବାବେଳେ ଭାରତର ବୃଦ୍ଧିହାର ଯଥାକ୍ରମେ ୧୧.୧,୧୪.୨୨ ଓ ୧୩.୩୧ ଥିଲା । ଅର୍ଥାତ୍ ଓଡ଼ିଶାରେ ଜନସଂଖ୍ୟା କ୍ରମାନ୍ୱୟରେ ବୃଦ୍ଧି ପାଇଲା କିନ୍ତୁ ସର୍ବଭାରତୀୟ ସ୍ତରରେ ଜନସଂଖ୍ୟା ବୃଦ୍ଧିହାର ମୋଟା ମୋଟି ଭାବେ କମ୍ ଥିଲା । ଓଡ଼ିଶାର ଜନସଂଖ୍ୟା ବୃଦ୍ଧିହାର ୧୯୫୧-୬୧ ଓ ୧୯୬୧-୭୧ ମଧ୍ୟରେ ଯଥାକ୍ରମେ ୧୯.୮୨ ଓ ୨୫.୦୫ ଥିବାବେଳେ ଭାରତର ବୃଦ୍ଧିହାର ୨୧.୫୧ ଓ ୨୪.୮୦ ଥିଲା । ୧୯୭୧-୮୧ ଓ ୧୯୮୧-୯୧ ମଧ୍ୟରେ ଉକ୍ତ ବୃଦ୍ଧିହାର ଯଥାକ୍ରମେ ୨୪.୬୬ ଓ ୨୩.୫୦ ମଧ୍ୟରେ ସୀମିତ ଥିଲେ ହେଁ ଓଡ଼ିଶାରେ ଏହା ୨୦.୧୭ କୁ ହ୍ରାସ ପାଇ ୧୯୯୧ ରେ ୧୯.୫୦ରେ ରହିଛି ।

**ଜନ୍ମହାର ଓ ମୃତ୍ୟୁହାର -** ଜନସଂଖ୍ୟା ବୃଦ୍ଧିର ପ୍ରଧାନ କାରଣ ହେଉଛି ଯେ ମୃତ୍ୟୁହାର ଯେଉଁ ପରିମାଣରେ କମିବାରେ ଲାଗିଛି, ଜନ୍ମହାର ସେହି ପରିମାଣରେ କମି ପାରୁନାହିଁ । କେତେକ ଉନ୍ନତ ଦେଶର ଜନ୍ମହାର ଓ ମୃତ୍ୟୁହାରର ହିସାବ ଦେଲେ ସେଠାରେ କାହିଁକି ଜନସଂଖ୍ୟା ବୃଦ୍ଧି ହେଉନାହିଁ, ତାର କିଛି ସୂଚନା ମିଳିପାରିବ । ୧୯୯୦ ମସିହା ବିଶ୍ୱ ଉନ୍ନୟନ ରିପୋର୍ଟରେ ପ୍ରକାଶ ପାଇଥିବା କେତେକ ହିସାବରୁ ଜଣାଯାଏ ଯେ ୧୯୮୮ ମସିହାରେ ପଶ୍ଚିମ ଜର୍ମାନୀରେ ଏକହଜାର ପିଛା ଜନ୍ମହାର ୧୧ ଓ ମୃତ୍ୟୁହାର ୧୧ । ଯୁକ୍ତରାଷ୍ଟ୍ର ଆମେରିକାରେ ଜନ୍ମହାର ୧୬ ଓ

ମୃତ୍ୟୁହାର ୯ ଓ ଜାପାନରେ ଜନ୍ମହାର ୧୧ ଓ ମୃତ୍ୟୁହାର ୭ । ଏହିରି ହିସାବରେ ଜଣେ ସହଜରେ ଜାଣିପାରିବ କାହିଁକି ଉନ୍ନତ ଦେଶରେ ଜନସଂଖ୍ୟା ବୃଦ୍ଧି ହାର କମ୍ । ମାତ୍ର ଭାରତରେ ୧୯୫୦ ରୁ ୧୯୬୦ ଭିତରେ ହଜାରେ ଜଣ ପିଛା ଜନ୍ମହାର ଥିଲା ୪୦ ଓ ମୃତ୍ୟୁହାର ୧୮ । ୧୯୬୧-୭୧ ଭିତରେ ହଜାରେ ପିଛା ଜନ୍ମହାର ୪୧.୨ ଓ ମୃତ୍ୟୁହାର ୧୯.୨ ହେଲା । ୧୯୮୯ ହିସାବରୁ ଜଣାଯାଏ ଯେ ହଜାରେ ପିଛା ଜନ୍ମହାର ୩୦.୫ ଓ ମୃତ୍ୟୁହାର ୧୦.୨ । ଏହି ହିସାବରୁ ଦେଖାଯାଉଛି ଯେ ୧୯୬୦ ରୁ ୧୯୮୯ ଭିତରେ ଜନ୍ମହାର ୪୦ ରୁ ୩୦.୫ କମିଛି । ଅଥଚ ମୃତ୍ୟୁହାର ୧୮ ରୁ ୧୦.୨ ପର୍ଯ୍ୟନ୍ତ କମିଛି । ଅର୍ଥାତ୍ ଭାରତରେ ଯେଉଁ ପରିମାଣରେ ମୃତ୍ୟୁହାର କମିଛି, ସେହିପରିମାଣରେ ଜନ୍ମହାର କମିପାରି ନାହିଁ । ଜନ୍ମ ହାର ଯଦି କମ ନ ହେବ ତା ହେଲେ ଜନସଂଖ୍ୟା ସହଜରେ ନିୟନ୍ତ୍ରିତ ହୋଇପାରିବ ନାହିଁ ।

**ନାରୀଶିକ୍ଷା ଓ ପ୍ରସୂତି ହାର :** ନାରୀ ଶିକ୍ଷା ସହିତ ପ୍ରସୂତିହାରର ଅନେକ ସମ୍ପର୍କ ରହିଛି । ନାରୀଶିକ୍ଷା ଯେତେ ଅଧିକ ହେବ, ପ୍ରସୂତିହାର ସେତେ କମ୍ ହେବ ଏବଂ ଶିଶୁ ମୃତ୍ୟୁହାର ମଧ୍ୟ ସେତେ କମ୍ ହେବ । କାରଣ ମୃତ୍ୟୁହାର ଅଧିକ ହେଲେ କୌଣସି ପରିବାର ଜନ୍ମ ନିୟନ୍ତ୍ରଣ କରିବାକୁ ଚେଷ୍ଟା କରିବେ ନାହିଁ । ଆମେରିକା , ଇଂଲଣ୍ଡ, ଜର୍ମାନୀ, ଜାପାନ ପ୍ରଭୃତି ଦେଶରେ ଶିଶୁ ମୃତ୍ୟୁହାର ଶତକଡ଼ା ୭/୮ , ଭାରତରେ ୮୦ । ଏହାର ପ୍ରଧାନ କାରଣ ହେଉଛି ସେହିସବୁ ଦେଶରେ ଅଧିକାଂଶ ନାରୀ ଶିକ୍ଷିତ; ଭାରତରେ ଖୁବ୍ କମ ନାରୀ ଶିକ୍ଷିତ ।

ଭାରତ ସରକାର ଏକ ଆନ୍ତର୍ଜାତିକ ବୈଠକରେ ନାରୀ ଶିକ୍ଷା ସହିତ ପ୍ରସୂତି ହାରର ସମ୍ପର୍କ ବିଷୟରେ ଯେଉଁ ହିସାବ ଉପସ୍ଥାପିତ କରିଛନ୍ତି, ସେଥିରୁ ଦେଖାଯାଉଛି ଯେ ଜଣେ ଅଶିକ୍ଷିତା ନାରୀର ପ୍ରସୂତି ହାର ୫.୧ ହେଲା ବେଳକୁ ଜଣେ ମାଇନର ପାଶ ନ କରିଥିବା ଶିକ୍ଷିତ ନାରୀର ପ୍ରସୂତିହାର ୪.୫ । ମାଇନର ପାଶ କରିଥିବା ଅଥଚ ମାଟ୍ରିକ ପାଶ ନ କରିଥିବା ନାରୀର ପ୍ରସୂତି ହାର ୪, ମାଟ୍ରିକ ପାଶ କରିଥିବା କିନ୍ତୁ ଗ୍ରାଜୁଏଟ ନ ହୋଇଥିବା ନାରୀର ପ୍ରସୂତି ହାର ୩.୧ ଓ ଗ୍ରାଜୁଏଟ ହୋଇଥିବା ନାରୀର ପ୍ରସୂତି ହାର ୨.୧ । ଏଥିରୁ ଜଣାଯାଏ ଯେ ନାରୀ ଶିକ୍ଷା ଯେତେ ଅଧିକ ହେବ, ପ୍ରସୂତି ହାର ସେତେ କମ ହେବ । ନାରୀ ଶିକ୍ଷାରେ ଏ ପର୍ଯ୍ୟନ୍ତ ଯଥେଷ୍ଟ ଉନ୍ନତି ହୋଇନାହିଁ । ନିମ୍ନ ପ୍ରାଇମେରୀ ଓ ଅପର ପ୍ରାଇମେରୀ ପରେ ଖୁବ୍ କମ୍ ଝିଅ ପଢୁଛନ୍ତି ଏବଂ ଯେଉଁମାନେ ବା ପଢୁଛନ୍ତି ସେମାନଙ୍କ ଭିତରୁ ଅନେକ ନିମ୍ନ ପ୍ରାଇମେରୀ କି ଅପର ପ୍ରାଇମେରୀ ପାଠ ଶେଷ କରିପାରୁ ନାହାଁନ୍ତି । ବିଶେଷ କରି ମଫସଲ ଅଞ୍ଚଳରେ ବେଶୀ ଆଦିବାସୀ ବା ହରିଜନ ବାସ କରୁଛନ୍ତି । ସେମାନେ ପଢ଼ିବାର ସୁଯୋଗ ପାଉନାହାନ୍ତି । ଦାରିଦ୍ର୍ୟ ଏଥିପାଇଁ ପ୍ରଧାନ କାରଣ । ଏହି ଛୋଟ ପିଲାମାନେ ପାରିବାରିକ ଭରଣ ପୋଷଣରେ ବାପାମାଙ୍କୁ ସାହାଯ୍ୟ କରିବାରେ ବାଧ୍ୟ ହେଉଛନ୍ତି ।

**ପୁରୁଷ ଓ ମହିଳା ସାକ୍ଷରତା ହାର :** ୧୯୯୧ ଜନଗଣନା ଅନୁସାରେ ଭାରତର ଜନ ସଂଖ୍ୟାର ଶତକଡ଼ା ୫୨ ଭାଗ ସାକ୍ଷର । ଏମାନଙ୍କ ମଧ୍ୟରେ ପୁରୁଷମାନଙ୍କ ସାକ୍ଷରତା ହାର ଶତକଡ଼ା ୬୪ ଥିବାବେଳେ ମହିଳାମାନଙ୍କ କ୍ଷେତ୍ରରେ ଏହି ହାର ଶତକଡ଼ା ୩୯ । ଉଭୟ ପୁରୁଷ ଓ ମହିଳାଙ୍କ ମଧ୍ୟରେ ସାକ୍ଷରତା ହାର ବୃଦ୍ଧି ପାଉଥିବା ସତ୍ତ୍ୱେ ସମ୍ପୂର୍ଣ୍ଣ ନିରକ୍ଷରମାନଙ୍କ ସଂଖ୍ୟା ୧୯୬୧ ମସିହାରେ ୩୩୪ ନିୟୁତରୁ ୧୯୯୧ ମସିହାରେ ୪୯୨ ନିୟୁତକୁ ବୃଦ୍ଧି ପାଇଛି । ଏପରିକି ୭ ବର୍ଷରୁ ଅଧିକ ବୟସ ଗୋଷ୍ଠୀ ଯେଉଁମାନଙ୍କ ସାକ୍ଷରତା ହାର ଗଣନା ପାଇଁ ୧୯୯୧ ମସିହା ଜନଗଣନାରେ ପଦକ୍ଷେପ ନିଆଯାଇଥିଲା; ସେହି ଗୋଷ୍ଠୀରେ ନିରକ୍ଷରମାନଙ୍କ ସଂଖ୍ୟା ବିଗତ ଦଶନ୍ଧି ମଧ୍ୟରେ ଯାହାଥିଲା, ତାହା ଆହୁରି ୨୨ ନିୟୁତ ଅଧିକ ହୋଇଥିବାର ଦେଖାଯାଉଛି । ତେଣୁ ପରିବାର ନିୟନ୍ତ୍ରଣର ଉପକାରିତାକୁ ବହୁ ବ୍ୟକ୍ତି ଏ ପର୍ଯ୍ୟନ୍ତ ମାନସିକ ସ୍ତରରେ ଗ୍ରହଣ କରିପାରି ନାହାଁନ୍ତି ।

**ପୁରୁଷ ମହିଳା ଅନୁପାତ :** ଭାରତର ଜନସଂଖ୍ୟାରେ ପୁରୁଷ ମହିଳା ଅନୁପାତ ବିଷୟ ବିଚାର କଲେ ଦେଖାଯାଏ ଯେ ପ୍ରତି ୧୦୦୦ ପୁରୁଷରେ ମହିଳାଙ୍କ ସଂଖ୍ୟା କମ୍ । ୧୯୮୧ ମସିହା ଜନଗଣନାରୁ ଜଣାଯାଏ ଯେ ପ୍ରତି ହଜାର ପୁରୁଷ ପାଇଁ ୯୩୪ ମହିଳା ଥିଲେ । ୧୯୯୧ ରେ ଏହା ହ୍ରାସ ପାଇ ୯୨୯ ହୋଇଥିଲା । ମହିଳାମାନଙ୍କ ସଂଖ୍ୟା ହ୍ରାସ ପାଇବା ସମ୍ପର୍କରେ ଯୁକ୍ତି ହେଉଛି ଯେ ଜନ୍ମ ବେଳେ ପୁଅ ଅପେକ୍ଷା ଝିଅମାନେ ଅବହେଳା ଯୋଗୁଁ ଅଧିକ ମରନ୍ତି । କେରଳରେ ପ୍ରତି ଏକ ହଜାର ପୁରୁଷଙ୍କ ପାଇଁ ୧୦୪୦ ମହିଳା ଅଛନ୍ତି । ଏହା ହେଉଛି ୧୯୯୧ ମସିହା ଜନଗଣନାର ହିସାବ । କେରଳ ହେଉଛି ଭାରତରେ ଏକମାତ୍ର ରାଜ୍ୟ ଯେଉଁଠି ପୁରୁଷଙ୍କ ତୁଳନାରେ ମହିଳାଙ୍କ ସଂଖ୍ୟା ଅଧିକ । ଏଣୁ ଭାରତରେ କନ୍ୟା ସନ୍ତାନଙ୍କୁ ଅବହେଳା କରିବା ଉଚିତ୍ ନୁହେଁ ।

**ଜନସଂଖ୍ୟା ବୃଦ୍ଧି ଯୋଗୁଁ ପରିବେଶ ପ୍ରଦୂଷଣ :** ଜନସଂଖ୍ୟା ବୃଦ୍ଧିହାର ଅବ୍ୟାହତ ରହିଲେ ପ୍ରାକୃତିକ ପରିବେଶ ଉପରେ ଏହାର ନାହିଁ ନଥିବା କୁ ପ୍ରଭାବ ପଡ଼ିବ । ପରିବେଶ ପ୍ରଦୂଷଣର କାରଣ ବହୁବିଧ ହେଲେ ମଧ୍ୟ ଅତିରିକ୍ତ ଜନସଂଖ୍ୟା ବୃଦ୍ଧି ଏକ ମୁଖ୍ୟ କାରଣ କହିଲେ ଅତ୍ୟୁକ୍ତି ହେବ ନାହିଁ । ପୃଥିବୀରେ ବାସୋପଯୋଗୀ ଓ ଚାଷଜମି ସୀମିତ । ତେଣୁ ବର୍ଦ୍ଧିତ ଜନସଂଖ୍ୟାକୁ ଖାଦ୍ୟ ଓ ବାସଗୃହ ଯୋଗାଇବା ପାଇଁ ବ୍ୟାପକ ଜଙ୍ଗଲ କଟା ଯାଇ ବାସୋପଯୋଗୀ ଓ ଚାଷଜମି ପ୍ରସ୍ତୁତ କରାଯାଉଛି । ସୀମିତ ଜମିରୁ ଅଧିକ ଫସଲ ପାଇବା ପାଇଁ ପ୍ରଚୁର ପରିମାଣ ରାସାୟନିକ ସାର ଓ କୀଟନାଶକ ଔଷଧ ପ୍ରୟୋଗ କରାଯିବା ଫଳରେ ମାଟି, ଜଳ ଓ ବାୟୁ ଦୂଷିତ ହେବା ସଙ୍ଗେ ସଙ୍ଗେ ଆମର ଅନେକ ଉପକାରୀ ଜୀବାଣୁ ମଧ୍ୟ ନଷ୍ଟ ହୋଇ ଯାଉଛନ୍ତି । ମନୁଷ୍ୟର ଆବଶ୍ୟକତାର ଅନ୍ତ ନାହିଁ । ମନୁଷ୍ୟର ଆବଶ୍ୟକତା ଯେତିକି ବଢୁଛି ଶିଳ୍ପ ମଧ୍ୟ ଅଭିବୃଦ୍ଧି ଲାଭ କରୁଛି । କିନ୍ତୁ ଶିଳ୍ପ ଅଭିବୃଦ୍ଧି ଫଳରେ ପରିବେଶ ଯେ ବହୁ ପରିମାଣରେ ପ୍ରଦୂଷିତ

ହେଉଛି ଏଥିରେ କୌଣସି ସନ୍ଦେହ ନାହିଁ । ବ୍ୟାପକ ଜଙ୍ଗଲ କଟାଯିବା ଫଳରେ ଦିନକୁ ଦିନ ଜଙ୍ଗଲର କ୍ଷେତ୍ରଫଳ କମିଯାଉଛି । ଏକ ସମୀକ୍ଷାରୁ ଜଣାଯାଇଛି ଯେ ପ୍ରତିବର୍ଷ ପ୍ରାୟ ୧୫୫,୦୦୦ ହେକ୍ଟର ଜଙ୍ଗଲ ହ୍ରାସ ହେବା ଫଳରେ ପରିବେଶ ପ୍ରଦୂଷିତ ହେବା ସଙ୍ଗେ ସଙ୍ଗେ ଅନେକ ଅଞ୍ଚଳରେ ଅନିୟମିତ ବୃଷ୍ଟି ଓ ଜଳବାୟୁରେ ପରିବର୍ତ୍ତନ ଲକ୍ଷ୍ୟ କରାଯାଉଛି । ଏହି ଅବସ୍ଥା ଲାଗି ରହିଲେ ଏସିଆ ମହାଦେଶର ବହୁ ଅଞ୍ଚଳ ମରୁଭୂମି ପାଲଟି ଯିବାର ସମ୍ଭାବନା ରହିଛି ।

**ଜନସଂଖ୍ୟା ବୃଦ୍ଧି ଯୋଗୁଁ ସାମାଜିକ ଉତ୍ତେଜନା ସୃଷ୍ଟି :** ଜନସଂଖ୍ୟା ବୃଦ୍ଧି ଘଟିଲେ ବେକାରୀ ବୃଦ୍ଧି ପାଇବ । ଫଳରେ ଆତ୍ମ ନିର୍ଭରଶୀଳ ନ ହୋଇପାରି ଯୁବକ ଓ ଯୁବତୀମାନେ ଅସାମାଜିକ କାର୍ଯ୍ୟକଳାପରେ ଲିପ୍ତ ରହିବେ । ସମାଜରେ ନାନା ବିଶୃଙ୍ଖଳା ଏମାନଙ୍କ ଦ୍ୱାରା ସଂଘଟିତ ହେବ । ଚୋରି, ଲୁଟ୍, ହତ୍ୟା, ଅପହରଣ, ମାରପିଟ ଆଦି ବୃଦ୍ଧି ପାଇ ସମାଜରେ ଉତ୍ତେଜନାମୂଳକ ପରିସ୍ଥିତି ସୃଷ୍ଟି କରିବାରେ ଜନସଂଖ୍ୟା ବୃଦ୍ଧି ସହାୟକ ହେବ ।

**ପୁତ୍ର ଓ କନ୍ୟା ସନ୍ତାନ :** ଭାରତରେ ପରିବାର କଲ୍ୟାଣ କାର୍ଯ୍ୟକ୍ରମ ତାହାର ଲକ୍ଷ୍ୟ ପୂରଣ କରି ପାରି ନାହିଁ । ଏହି କାର୍ଯ୍ୟକ୍ରମ ସଫଳ ନ ହେବାର ମୁଖ୍ୟ କାରଣ ହେଉଛି ପୁତ୍ର ଆଶା । ଗୋଟିଏ ପୁଅ ପାଇଁ ୩/୪ ଟି ଝିଅ ଜନ୍ମ ଲାଗି ବାପା ମା ମାନେ କୁଣ୍ଠିତ ହୁଅନ୍ତି ନାହିଁ । କାରଣ ହିନ୍ଦୁ ପ୍ରଥାନୁଯାୟୀ ମଲାପରେ ପୁତ୍ର ମୁଖାଗ୍ନି ଓ ନିୟମିତ ଶ୍ରାଦ୍ଧ ଦେବାର ସାମାଜିକ ବ୍ୟବସ୍ଥା ରହିଛି । ଏହାଛଡ଼ା ପିତାମାତାଙ୍କ ବାର୍ଦ୍ଧକ୍ୟାବସ୍ଥାରେ ପୁତ୍ର ସନ୍ତାନ ସେମାନଙ୍କର ଯତ୍ନ ନେବାରେ ସହାୟକ ହୋଇପାରିବ ଓ ବଂଶରକ୍ଷା କରି ପାରିବ । ମାତ୍ର କନ୍ୟା ସନ୍ତାନର ବିବାହ ପରେ ତାର ଗୋତ୍ର ବଦଳି ଯାଏ । ସେ ପୁତ୍ର ଭଳି ପିତାମାତାର ସବୁ ସମୟରେ ସହାୟତା କରିବା ସମ୍ଭବ ହୋଇ ନଥାଏ । ଏଣୁ ଗୋଟିଏ ଦୁଇଟି ପୁଅ ପାଇଁ ବାପା ମା ମାନଙ୍କର ଯେଉଁ ଇଚ୍ଛା ତାହା ମଧ୍ୟ ଜନସଂଖ୍ୟା ବୃଦ୍ଧି କରୁଛି । ଏ ପ୍ରକାର ମନୋବୃତ୍ତି ନ ବଦଳିଲେ ଭାରତରେ ଜନସଂଖ୍ୟା ନିୟନ୍ତ୍ରଣ ଲକ୍ଷ୍ୟ ହାସଲ ହୋଇପାରିବ ନାହିଁ ।

**ଜନସଂଖ୍ୟା ନିୟନ୍ତ୍ରଣ ଓ ସରକାରୀ ପ୍ରୋତ୍ସାହନ :** ଜନସଂଖ୍ୟା ନିୟନ୍ତ୍ରଣ ପାଇଁ କେନ୍ଦ୍ର ସରକାର ଓ ଆମ ରାଜ୍ୟ ସରକାର ପରିବାର କଲ୍ୟାଣ ଯୋଜନା କାର୍ଯ୍ୟକାରୀ କରୁଛନ୍ତି । ଗୋଟିଏ ବା ଦୁଇଟି ସନ୍ତାନ ଜନ୍ମ ହେବାପରେ ଯେଉଁ ସରକାରୀ କର୍ମଚାରୀ ଦମ୍ପତ୍ତି ମାନେ ସ୍ଥାୟୀ ଗର୍ଭନିରୋଧ ପଦ୍ଧତି ଗ୍ରହଣ କରୁଛନ୍ତି ସେମାନଙ୍କୁ ପ୍ରୋତ୍ସାହନ ଦେବାପାଇଁ "ସବୁଜ ପତ୍ରିକା" ଯୋଗାଇ ଦିଆଯାଉଛି । ଜଣେ ସବୁଜ ପତ୍ରିକାଧାରୀ ଗୃହବଣ୍ଟନ, ବୈଷୟିକ ଶିକ୍ଷାନୁଷ୍ଠାନରେ ପିଲାମାନଙ୍କ ପାଇଁ ସଂରକ୍ଷିତ ସ୍ଥାନ, ସ୍ୱାମୀ କିମ୍ବା ସ୍ତ୍ରୀ ସରକାରୀ କର୍ମଚାରୀ ହୋଇଥିଲେ ତାଙ୍କ ଦରମାର ଦୁଇଟି ଇନକ୍ରିମେଣ୍ଟର ସମତୁଲ ପ୍ରୋତ୍ସାହନ ଭତ୍ତା ଓ ଲଟେରୀ ଅଂଶ ଗ୍ରହଣ ଇତ୍ୟାଦି ୬ ଟି ସ୍ୱତନ୍ତ୍ର ସୁବିଧା ପାଇ ପାରିବେ । ଏହା ଛଡ଼ା ରାଜ୍ୟ ସରକାରୀ କର୍ମଚାରୀ ଗୋଟିଏ ଝିଅପରେ କିମ୍ବା ଦୁଇଟି ଝିଅପରେ ସ୍ଥାୟୀ ଗର୍ଭନିରୋଧ ପଦ୍ଧତି ଗ୍ରହଣ କରିଥିଲେ ଟ ୧୦,୦୦୦ ଓ ଟ ୫,୦୦୦ର ବିକାଶପତ୍ର ଯୋଗାଇ ଦିଆଯିବାର ବ୍ୟବସ୍ଥା ହୋଇଛି ।

ଏଠାରେ ଉଲ୍ଲେଖ କରାଯାଇପାରେ ଯେ ରାଜ୍ୟ ଲୋକସଂଖ୍ୟାର ଶତକଡ଼ା ୨ ଭାଗ ହେଉଛନ୍ତି ସରକାରୀ କର୍ମଚାରୀ । ଏଣୁ ଏହି ସୀମିତ ଲୋକମାନଙ୍କ ପାଇଁ ପ୍ରୋତ୍ସାହନ ଯୋଗାଇ ଦେଲେ ଜନସଂଖ୍ୟା ନିୟନ୍ତ୍ରଣ ସଫଳ ହେବା ଭାବିବା ଭୁଲ । ଘରକୁ ଘର ବୁଲି ଜନଗଣନା ପରି ଜନସଂଖ୍ୟା ନିୟନ୍ତ୍ରଣ ଓ ପରିବାର କଲ୍ୟାଣ ଦିଗରେ ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ବିଭାଗର ସମ୍ପୃକ୍ତ କର୍ମଚାରୀମାନେ ଜନସାଧାରଣଙ୍କୁ ଅବଗତ କରାଇଲେ ଓ ଆବଶ୍ୟକୀୟ ଖାଇବା ବଟିକା ଓ ଗର୍ଭନିରୋଧ ପଦାର୍ଥ ବଣ୍ଟନ କଲେ ଏ ଦିଗରେ ନିଶ୍ଚିତ ସୁଫଳ ନିଶ୍ଚୟ ମିଳିବ । ଗୋଟିଏ ବା ଦୁଇଟି କେବଳ କନ୍ୟା ସନ୍ତାନ ଥିବା ପିତାମାତାଙ୍କ ନିମନ୍ତେ ସରକାରଙ୍କ ଦ୍ୱାରା ମାଗଣା ନିବାସର ବ୍ୟବସ୍ଥା କରାଗଲେ ସେମାନେ ଗର୍ଭନିରୋଧ ପଦ୍ଧତିକୁ ଗ୍ରହଣ ପାଇଁ ଉତ୍ସାହିତ ହୁଅନ୍ତେ ।

**ଜନସଂଖ୍ୟା ନିୟନ୍ତ୍ରଣ ଓ ଯୁବପୀଢ଼ି :** ପରିବାର ନିୟୋଜନ କାର୍ଯ୍ୟକ୍ରମର ସଫଳତା ଅନେକାଂଶରେ ଯୁବପୀଢ଼ିର ମନୋଭାବ ଉପରେ ନିର୍ଭର କରେ । କାରଣ ସନ୍ତାନ ଜନ୍ମ ପ୍ରକ୍ରିୟାରେ ଏମାନଙ୍କର ନିରବଚ୍ଛିନ୍ନ ପ୍ରବେଶ ଅବ୍ୟାହତ ରହୁଛି । ଯୁବସମାଜ ଅଧିକ ସଚେତ ତଥା ଗର୍ଭନିରୋଧ ଉପାୟ ବହୁ ସଂଖ୍ୟାରେ ଅବଲମ୍ବନ କଲେ ଜନସଂଖ୍ୟା ବହୁଭାବେ ନିୟନ୍ତ୍ରିତ ହୋଇପାରିବ ।

**ଜନସଂଖ୍ୟା ନିୟନ୍ତ୍ରଣ ପାଇଁ ଜନଜାଗରଣ :** ବିଭିନ୍ନ ଗଣ ମାଧ୍ୟମରେ ଜନ ଜାଗରଣ ସୃଷ୍ଟି କରିବାରେ ଆମର ବିଫଳତା ପରିବାର ନିୟୋଜନ କାର୍ଯ୍ୟକ୍ରମ କ୍ଷେତ୍ରରେ ଏକ ବିରାଟ ପ୍ରତିବନ୍ଧକ ହୋଇ ରହି ଆସିଛି । ଜନସଂଖ୍ୟା ସମସ୍ୟା ସମ୍ପର୍କରେ ଚେତନା ଜାଗ୍ରତ କରିବା ଲାଗି ଜନସଂଖ୍ୟା ସଂକ୍ରାନ୍ତ ଶିକ୍ଷାଦାନ ଏବଂ ବ୍ୟାପକ ଗଣଶିକ୍ଷା କାର୍ଯ୍ୟକ୍ରମର ପ୍ରବର୍ତ୍ତନ କରାଯିବା ଆବଶ୍ୟକ । ଏହା ଜନସାଧାରଣଙ୍କ ଦୃଷ୍ଟିଭଙ୍ଗୀ ଏବଂ ମୂଲ୍ୟବୋଧରେ ପରିବର୍ତ୍ତନ ଆଣିବା ଦିଗରେ ବିଶେଷ ସହାୟକ ହେବ । ଏହି ଛୋଟ ପରିବାର ଲକ୍ଷ୍ୟ ହାସଲ ଲାଗି ଲୋକମାନେ ଏହି କାର୍ଯ୍ୟକ୍ରମକୁ ଯେପରି ସ୍ୱତଃ ପ୍ରବୃତ୍ତ ଭାବେ ଗ୍ରହଣ କରନ୍ତି ତାହା ଉପରେ ବିଶେଷ ଗୁରୁତ୍ୱ ଦେଇ ଗଣ ମାଧ୍ୟମଗୁଡ଼ିକ ପ୍ରଚାର କରିବା ଆବଶ୍ୟକ । ଭାରତ ସରକାରଙ୍କ ଜନସଂଖ୍ୟା ସମ୍ବନ୍ଧୀୟ ନୀତିର ମୁଖ୍ୟ ଆଭିମୁଖ୍ୟ ହେଉଛି ନିଜ ନିଜ ପରିବାରର ଆକାର ନିର୍ଦ୍ଧାରଣ ଲାଗି ନାଗରିକମାନଙ୍କ ଅଧିକାର ଓ ମର୍ଯ୍ୟାଦା ଉପରେ ସର୍ବାଧିକ ଗୁରୁତ୍ୱ ଦେବା ।

**ଜନସଂଖ୍ୟା ନିୟନ୍ତ୍ରଣ ଓ ଜନସାଧାରଣ :** ଅଗ୍ରାଧିକାର ଭିତ୍ତିରେ ଜନସଂଖ୍ୟା ନିୟନ୍ତ୍ରଣ କରାନଗଲେ ସବୁ ଯୋଜନା, ବିକାଶ କାର୍ଯ୍ୟକ୍ରମ ଧୂଳିସାତ ହୋଇଯିବ । ତେଣୁ ରାଜ୍ୟ ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ବିଭାଗ

ତେଣୁ ଜନ ସଚେତନ ସୃଷ୍ଟି ପାଇଁ ପ୍ରଚାର ପତ୍ରରେ ନିମ୍ନମତେ ଉଲ୍ଲେଖ କରାଯାଇଛି ।

- ଏକ ମହଙ୍ଗା ଯୁଗରେ ପରିବାର ବଢ଼ିଲେ ଚଳିବା କଷ୍ଟ ।
- ଗୋଟିଏ ବା ଦୁଇଟି ପିଲା ହେଲେ ତାଙ୍କୁ ପାଠ ପଢ଼ାଇ ମଣିଷ କରିବା ସହଜ ।
- ବଡ଼ ପରିବାରରେ ମା ତଥା ପିଲାମାନଙ୍କ ସ୍ୱାସ୍ଥ୍ୟର ଉପଯୁକ୍ତ ଯତ୍ନନେବା ଅସମ୍ଭବ ।
- ଝିଅ ଘର ଯୋଗ୍ୟା ହେଲେ ମଧ୍ୟ କୋଡ଼ିଏ ବର୍ଷ ପୂର୍ବରୁ ବିବାହ ଯୋଗ୍ୟ ହୋଇ ନଥାଏ ।
- ସ୍ତ୍ରୀକୁ ୨୩ ବର୍ଷ ହେବା ପର୍ଯ୍ୟନ୍ତ ପ୍ରଥମ ସନ୍ତାନ ପରିବାରକୁ ନ ଆସିଲେ ଭଲ ।
- ସନ୍ତାନ ଜନ୍ମ ଆକସ୍ମିକ ନ ହୋଇ ସ୍ୱାମୀ ସ୍ତ୍ରୀଙ୍କ ନିଷ୍ପତ୍ତି ଅନୁସାରେ ହେବା ଉଚିତ୍ । ସେଥିପାଇଁ ବିଭିନ୍ନ ପ୍ରକାର ଅସ୍ଥାୟୀ ଗର୍ଭନିରୋଧ ପଦ୍ଧତି ରହିଛି । ପୁରୁଷଙ୍କ ପାଇଁ ନିରୋଧ ଓ ସ୍ତ୍ରୀଙ୍କ ପାଇଁ ଖାଇବା ବଟିକା ଓ କପର-ଟି ।
- ପୁରୁଷ ଗର୍ଭନିରୋଧ ଅସ୍ତ୍ରୋପଚାର ଏକ ନିର୍ଭରଯୋଗ୍ୟ ସ୍ଥାୟୀ ଗର୍ଭନିରୋଧ ପଦ୍ଧତି । ଏଥିପାଇଁ ମାତ୍ର ୭ ମିନିଟ ସମୟ ଲାଗେ । ପୁରୁଷ ଗର୍ଭନିରୋଧ ଅସ୍ତ୍ରୋପଚାର ହୋଇଥିବା ଲୋକଠାରେ ପୁନଃ ସଂଯୋଗ ବ୍ୟବସ୍ଥା ସଫଳ ହେବାର ସମ୍ଭାବନା ଅଧିକ । ପୁରୁଷର ବଳ, କାର୍ଯ୍ୟ କରିବା ଶକ୍ତି ଓ ପୁରୁଷତ୍ୱ ଉପରେ ଏହି ଅପରେସନର କୁ ପ୍ରଭାବ ପଡ଼େ ନାହିଁ ।
- ଅସ୍ଥାୟୀ ଗର୍ଭ ନିରୋଧ ପଦ୍ଧତିଗୁଡ଼ିକ (ନିରୋଧ, କପରଟି, ଖାଇବା ବଟିକା) ବ୍ୟବହାର ପାଇଁ ସୁବିଧାଜନକ । ଏହି ପଦ୍ଧତି ଦ୍ୱାରା ନବ ବିବାହିତ ଜୀବନକୁ ଚିନ୍ତାମୁକ୍ତ କରାଯାଇପାରେ ଓ ମା ଏବଂ ଶିଶୁ ଉଭୟଙ୍କୁ ସୁସ୍ଥ ରଖିବା ପାଇଁ ସନ୍ତାନ ଜନ୍ମରେ ବ୍ୟବଧାନ ରଖିବା ନିମନ୍ତେ ସାହାଯ୍ୟ କରେ ।
- ପୁଅଭଳି ଝିଅର ମଧ୍ୟ ଉପଯୁକ୍ତ ଯତ୍ନ (ସ୍ୱାସ୍ଥ୍ୟ, ଶିକ୍ଷା ଓ ଖାଦ୍ୟ ଆଦି) ନେବା ଆବଶ୍ୟକ ।

ଏ ଦିଗରେ ଜନସାଧାରଣ ସଚେତନ ହେବା ଅତ୍ୟନ୍ତ ଜରୁରୀ ।

କେଶରପୁର (ମହାନ୍ତି ଲେନ)
କଟକ - ୭୫୩ ୦୦୧

## ଦଳିତ ଓ ନିଷ୍ପେଷିତ ବର୍ଗଙ୍କ ଉନ୍ନତି ବିନା ଦେଶର ବିକାଶ ଅସମ୍ଭବ

ଉପ ମୁଖ୍ୟମନ୍ତ୍ରୀ ଶ୍ରୀ ହେମାନନ୍ଦ ବିଶ୍ୱାଳ

ଦଳିତ, ନିଷ୍ପେଷିତ ଓ ଅବହେଳିତ ଜନଜାତିର ରାଜନୈତିକ, ଅର୍ଥନୈତିକ ଓ ସାମାଜିକ ଉନ୍ନତି ବିନା ଦେଶର ବିକାଶ
ହୋଇପାରିବ ନାହିଁ ବୋଲି ସଂପ୍ରତି ଉପ ମୁଖ୍ୟମନ୍ତ୍ରୀ ଶ୍ରୀ ହେମାନନ୍ଦ ବିଶ୍ୱାଳ ମତବ୍ୟକ୍ତ କରିଛନ୍ତି ।

ଗତ ଅପ୍ରେଲ ୫ ତାରିଖ ଦିନ ଭୁବନେଶ୍ୱରସ୍ଥ ଓଡ଼ିଶା ଆମ୍ବେଦକର ବିଚାର ମଂଚ ପକ୍ଷରୁ ଆୟୋଜିତ ଏକ ଆଲୋଚନା
ଚକ୍ରରେ ମୁଖ୍ୟ ଅତିଥି ରୂପେ ଯୋଗ ଦେଇ ଶ୍ରୀ ବିଶ୍ୱାଳ କହିଲେ ଯେ ଦେଶରେ ୮୫ ଭାଗ ଆଦିବାସୀ, ହରିଜନ ଓ ପଛୁଆ ବର୍ଗର
ଲୋକ ରହିଥିଲେ ମଧ୍ୟ ଆଶାନୁରୂପ ଭାବେ ସେମାନଙ୍କର ଉନ୍ନତି ହୋଇପାରି ନାହିଁ । ଏଣୁ ଏହି ବର୍ଗର ଲୋକଙ୍କ ଉନ୍ନତି ପାଇଁ
ସମସ୍ତେ ସଂଗଠିତ ଭାବେ ସଂଗ୍ରାମ କରି ଆମ୍ବେଦକରଙ୍କର ସ୍ୱପ୍ନକୁ ସାକାର କରିବାକୁ ସେ ଆହ୍ୱାନ ଦେଇଥିଲେ । ଅର୍ଥନୈତିକ
କ୍ଷେତ୍ରରେ ପଛୁଆ ବର୍ଗର ଜନସାଧାରଣଙ୍କୁ ସଚେତନ କରିବାର ସମୟ ଆସିଛି ବୋଲି ସେ ମତବ୍ୟକ୍ତ କରିଥିଲେ । ଆମ୍ବେଦକରଙ୍କ
ଆଦର୍ଶ ଓ ପରାମର୍ଶକୁ କାର୍ଯ୍ୟକାରୀ କରି ଏକ ସମୃଦ୍ଧ ଦେଶ ଗଠନରେ ନିଜକୁ ନିୟୋଜିତ କରିବା ନିମନ୍ତେ ସେ ପରାମର୍ଶ
ଦେଇଥିଲେ ।

ସମ୍ମାନିତ ଅତିଥି ରୂପେ ଯୋଗ ଦେଇ ପୂର୍ବତନ ମନ୍ତ୍ରୀ ଶ୍ରୀ ଭାଗବତ ବେହେରା କହିଲେ ଯେ ନିଜର ନ୍ୟାଯ୍ୟ ଦାବୀ ତଥା
ଅଧିକାର ସଂପର୍କରେ ଦଳିତ ବର୍ଗ ସଚେତନ ହୋଇନଥିବା ଯୋଗୁଁ ସେମାନେ ଦୀର୍ଘ ୫୦ ବର୍ଷ ଧରି ପଛରେ ରହିଆସିଛନ୍ତି ।
ତେଣୁ ସମସ୍ତେ ନିଷ୍ଠାପର ଉଦ୍ୟମ କରି ଜାତି ତଥା ଦେଶର ଉନ୍ନତି ପାଇଁ ଉଦ୍ୟମ କରିବା ଉଚିତ୍ ।

ଏହି ଉତ୍ସବରେ ଅଧ୍ୟକ୍ଷତା କରି ପୂର୍ବତନ କେନ୍ଦ୍ରମନ୍ତ୍ରୀ ତଥା ସଂଗଠନର ଅଧ୍ୟକ୍ଷ ଶ୍ରୀ ଭଜନ ବେହେରା କହିଲେ ଯେ ଦଳିତ
ବର୍ଗର ଉନ୍ନତି ପାଇଁ ଆମ୍ବେଦକରଙ୍କ ସୁଚିନ୍ତିତ ପରାମର୍ଶକୁ ଜାତି, ଧର୍ମ ନିର୍ବିଶେଷରେ ସମସ୍ତେ ଗ୍ରହଣ କରିବା ଉଚିତ୍ ।

ଅନୁଷ୍ଠାନର ସାଧାରଣ ସଂପାଦକ ଶ୍ରୀ ମୋହନ ଜେନା ସ୍ୱାଗତ ଭାଷଣ ଦେଇଥିଲେ ।

ଏଥିରେ ଅନ୍ୟମାନଙ୍କ ମଧ୍ୟରେ ପୂର୍ବତନ ମନ୍ତ୍ରୀ ଶ୍ରୀ ଚୈତନ୍ୟ ପ୍ରସାଦ ମାଝୀ, ବିଧାୟକ ଶ୍ରୀମଙ୍ଗଳା କିସାନ ଓ ଶ୍ରୀ ଘାସିରାମ
ମାଝୀଙ୍କ ସମେତ ପ୍ରତି ଜିଲ୍ଲାରୁ ଆସିଥିବା ପ୍ରତିନିଧିମାନେ ଯୋଗ ଦେଇଥିଲେ ।

# ନଈ ବାଲିରେ ଆଳୁଚାଷ

ଶ୍ରୀ ଜୟକୃଷ୍ଣ ତ୍ରିପାଠୀ

ଓଡ଼ିଶାରେ ୧୯୬୪-୬୫ ମସିହାରେ ସର୍ବପ୍ରଥମେ ଆଳୁଚାଷ ଆରମ୍ଭ କରାଯାଇଥିଲା । ଲୋକଙ୍କ ମନରେ ଅନ୍ଧବିଶ୍ୱାସ ରହିଥିବା ଯୋଗୁଁ ମାଟିତଳ ଫସଲ ଚାଷ କରିବାକୁ ସେତେବେଳେ ସେମାନେ ଆଗ୍ରହ ପ୍ରକାଶ କରୁ ନ ଥିଲେ । ମାତ୍ର ତତ୍‌କାଳୀନ କୃଷି ବିଭାଗର ଅଫିସରମାନଙ୍କର ଅକ୍ଳାନ୍ତ ଉଦ୍ୟମ ଫଳରେ ସର୍ବପ୍ରଥମେ ସୁନ୍ଦରଗଡ଼ ଜିଲ୍ଲାର ଲହୁଣିପଡ଼ା, କୁଲିପୋଷ ରାଉରକେଲା ନିକଟବର୍ତ୍ତୀ କୁଆଁର ମୁଣ୍ଡା, ବୌଦ୍ଧ, କଟକ ଜିଲ୍ଲାର ବ୍ୟାରିଷ୍ଟ ମୌଜା, ଢେଙ୍କାନାଳ ଜିଲ୍ଲାର ଭୁବନ, ଭୋଦ୍ରାପଡ଼ା ଓ ବଲାଙ୍ଗୀର ଜିଲ୍ଲାର ଆଖପାଖ ଅଞ୍ଚଳରେ ଥିବା ଚାଷୀମାନଙ୍କୁ ମାଗଣାରେ ଆଳୁ ବିହନ ଯୋଗାଇ ଉକ୍ତ ଚାଷ ଆରମ୍ଭ କରାଯାଇଥିଲା । ଏହି ଚାଷ କାଳକ୍ରମେ ଲୋକପ୍ରିୟତା ହାସଲକରି ୧୯୭୦-୭୨ ମସିହା ବେଳକୁ ତିରିଶ ହଜାର ହେକ୍ଟର ଜମିରେ କରାଯାଇପାରିଥିଲା । ପରେ ଉକ୍ତ ଚାଷ ପ୍ରତି ଉପକୂଳବର୍ତ୍ତୀ ଅଞ୍ଚଳର ଚାଷୀ ଭାଇମାନେ ଆଗ୍ରହ ପ୍ରକାଶ କରିବାରୁ କାଳକ୍ରମେ ଏହା ଉପକୂଳବର୍ତ୍ତୀ ଅଞ୍ଚଳରେ ପ୍ରସାର ଲାଭକଲା । ସମୟକ୍ରମେ ଚିନାବାଦାମ ଓ ଆଖୁଚାଷ ପ୍ରତି ଚାଷୀମାନଙ୍କର ଆଗ୍ରହ ପ୍ରକାଶ ପାଇବାରୁ ଆଳୁ ଜମିରେ ଚିନାବାଦାମ ଓ ଆଳୁଚାଷ କରାଯିବା ଫଳରେ ୮୦-୯୦ ଦଶକ ବେଳକୁ ରାଜ୍ୟରେ ଆଳୁଚାଷ ୧୦,୦୦୦ ହେକ୍ଟର ଜମିକୁ ଖସି ଆସିଲା । ଅନ୍ୟ ପକ୍ଷରେ ଜମିରେ ବାରମ୍ବାର ଆଳୁଚାଷ କରିବାରୁ ମାଟିରେ କବକ ଜନିତ କେତେକ ରୋଗ ତଥା ଝାଉଁଳା ଆଦି ରୋଗ ଆଳୁ ଫସଲରେ ଲାଗିରହିବାରୁ ଏହି ଚାଷ ରାଜ୍ୟରେ କମିବାକୁ ଲାଗିଲା । ପ୍ରକାରାନ୍ତରେ ଆଳୁଚାଷର ବ୍ୟୟ ବହୁଳତା ତଥା ଶୀତଳ ଭଣ୍ଡାରର ଅସୁବିଧା ସାଙ୍ଗକୁ ଚିନାବାଦାମ ଓ ଆଳୁଚାଷର ପ୍ରତିଯୋଗିତାମୂଳକ ପ୍ରସାର ଯୋଗୁଁ ଚାଷୀମାନେ ଉକ୍ତ ଚାଷ ପ୍ରତି ବିମୁଖ ହୋଇ ପଡ଼ିଲେ । ଯାହା ଫଳରେ କି ୧୯୯୦ ରୁ ୯୬ ମସିହା ମଧ୍ୟରେ ରାଜ୍ୟରେ ୧୦,୦୦୦ ରୁ ୧୨,୦୦୦ ହେକ୍ଟର ଜମିରେ ଆଳୁ ଉତ୍ପାଦନ ସୀମିତ ରହିଲା ଓ ପ୍ରତିବର୍ଷ ହାରାହାରି ୨୦୦ କୋଟି ଟଙ୍କାରୁ ଊର୍ଦ୍ଧ୍ୱ ଆଳୁ ଆମର ପଡ଼ୋଶୀ ରାଜ୍ୟ ପଶ୍ଚିମ ବଙ୍ଗଳାରୁ ଆମଦାନୀ କରାଗଲା । ରାଜ୍ୟରେ ଆବଶ୍ୟକତାକୁ ମେଣ୍ଟାଇବା ପାଇଁ ୧୯୯୬-୯୭ ମସିହାରେ ନଦୀ ବାଲିରେ ଆଳୁଚାଷ ରାଜ୍ୟ ଉଦ୍ୟାନ ବିଭାଗ ଓ ଆନ୍ତର୍ଜାତିକ ଆଳୁ ଅନୁଷ୍ଠାନ ସଂସ୍ଥା ମିଳିତ ସହଯୋଗରେ ଆରମ୍ଭ କରାଯାଇଛି । ଆଳୁ ଆମ ରାଜ୍ୟବାସୀଙ୍କର ଏକ ମୁଖ୍ୟ ପରିବା ଫସଲ ହୋଇଥିବାରୁ ଏହାର ଉତ୍ପାଦନ ଓ ଉତ୍ପାଦିକା ଶକ୍ତି ବୃଦ୍ଧି ନିମନ୍ତେ ନୂତନ କୃଷିନୀତି ସମନ୍ୱିତ କାର୍ଯ୍ୟକ୍ରମକୁ ତ୍ୱରାନ୍ୱିତ କରାଯାଇଛି । ମାଟିରେ ଆଳୁ ଅମଳ ପ୍ରତି ଏକରରୁ ୮୦-୧୦୦ କ୍ୱିଣ୍ଟାଲ୍ ମିଳୁଥିଲାବେଳେ ନଦୀ ବାଲିରେ ଆଳୁଚାଷ କରାଯାଇ ଏକର ପ୍ରତି ୨୫୦-୩୦୦ କ୍ୱିଣ୍ଟାଲ ଆଳୁ ଅମଳ ମିଳିପାରୁଛି ।

"ନଈ ବାଲିରେ ଆଳୁଚାଷ" ସମ୍ପର୍କରେ ସୂଚନା ଦେଇ ଉଦ୍ୟାନ ବିଭାଗ ନିର୍ଦ୍ଦେଶକ ଶ୍ରୀ ସୂର୍ଯ୍ୟ ନାରାୟଣ ବେହେରା କୁହନ୍ତି ଯେ, ଓଡ଼ିଶାରେ ୨୦,୦୦୦ ରୁ ୨୫,୦୦୦ ହେକ୍ଟର ନଦୀବାଲି ରହିଛି ଯାହାକି ଆଳୁଚାଷ ପାଇଁ ଏକାନ୍ତ ଉପଯୋଗୀ । ନଦୀବାଲି ରୋଗ ଜୀବାଣୁ ମୁକ୍ତ ହୋଇଥିବାରୁ ଏଥିରେ କବକ ଜନିତ ଝାଉଁଳା ରୋଗ କିମ୍ବା ମୃତ୍ତିକା ଜନିତ ରୋଗ ପ୍ରାୟ ହୁଏ ନାହିଁ । ମାଟିରେ ଜୋଡ଼ାଖୁସା, ହୁଡ଼ାଦିଆ ତଥା ପାଣିଦେବାର ଆବଶ୍ୟକତା ପଡ଼େ ନାହିଁ । ୨୦୦୦ ମସିହା ସୁଦ୍ଧା ରାଜ୍ୟର ପାଞ୍ଚ ଲକ୍ଷ ମେଟ୍ରିକ ଟନ୍ ଆଳୁ ଚାହିଦାକୁ ମେଣ୍ଟାଇବା ପାଇଁ ସ୍ୱତନ୍ତ୍ର କାର୍ଯ୍ୟକ୍ରମମାନ ଚାଲୁ କରାଯାଉଛି । ନଦୀବାଲିରେ ଆଳୁଚାଷ, ଆଳୁମଞ୍ଜି (ଟି.ପି.ଏସ୍) ର ବହୁଳ ବ୍ୟବହାର ପିଣ୍ଡ ଓ ପ୍ରମାଣୀକୃତ ବିହନର ଉତ୍ପାଦନ ଓ ବଣ୍ଟନ ଆଦି କାର୍ଯ୍ୟକ୍ରମମାନ ଉଦ୍ୟାନ ବିଭାଗ ପକ୍ଷରୁ ନିଆଯାଉଛି । ପରୀକ୍ଷାମୂଳକ ଭାବେ ଚଳିତ ବର୍ଷ ପ୍ରାୟ ୨୦୦ ଏକର ନଈବାଲିରେ ଆଳୁଚାଷ କରାଯାଇ ପ୍ରାୟ ୧ ଲକ୍ଷ ୫୦ ହଜାର କ୍ୱିଣ୍ଟାଲ ଆଳୁ ମିଳିପାରିଛି । ଏତଦ୍‌ବ୍ୟତୀତ ରାଜ୍ୟର ୧୨,୦୦୦ ହେକ୍ଟର ଜମିରୁ ଉତ୍ପାଦିତ ହୋଇଥିବା ଆଳୁ ମିଶାଇ ଚଳିତ ବର୍ଷ ପ୍ରାୟ ୨ ଲକ୍ଷ ମେଟ୍ରିକ ଟନ୍ ଆଳୁ ମିଳିପାରିଛି ।

ଶ୍ରୀ ବେହେରା ପୁଣି କହିଥିଲେ ଯେ, ଏବେ ରାଜ୍ୟରେ ଚାରି ଲକ୍ଷ ପଚାଶ ହଜାର ମେଟ୍ରିକ ଟନ୍ ଆଳୁର ଆବଶ୍ୟକତା ରହିଛି । ୧୯୯୫-୯୬ ରେ ଆମ ରାଜ୍ୟରେ ଏକ ଲକ୍ଷ ପଚାଶ ହଜାର ଟନ୍ ଆଳୁ ଉତ୍ପାଦନ ହୋଇଥିଲା । ରାଜ୍ୟବାସୀଙ୍କର ଚାହିଦା ମେଣ୍ଟାଇବା ପାଇଁ ରାଜ୍ୟ ବାହାରୁ ୩ ଲକ୍ଷ ଟନ୍ ଆଳୁ ଅଣାଯାଉଥିଲା । ରାଜ୍ୟକୁ ଆଳୁରେ ସ୍ୱାବଲମ୍ବନଶୀଳ କରିବା ତଥା କୃଷକମାନଙ୍କ ଅର୍ଥନୈତିକ ମାନଦଣ୍ଡକୁ ସୁଦୃଢ଼ କରାଇବା ପାଇଁ ଲୋକପ୍ରିୟ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଓ କୃଷି ରାଷ୍ଟ୍ରମନ୍ତ୍ରୀ ଶ୍ରୀ ରମାକାନ୍ତ ମିଶ୍ରଙ୍କ ଅକ୍ଳାନ୍ତ ଉଦ୍ୟମ ଫଳରେ ନଦୀ ବାଲିରେ ଆଳୁଚାଷ ଆରମ୍ଭ କରାଗଲା । ପ୍ରଥମ ପର୍ଯ୍ୟାୟରେ ଉପକୂଳବର୍ତ୍ତୀ ଅଞ୍ଚଳ ଯଥା ବାଲିଅନ୍ତା, ବାଲିପାଟଣା, ବାଲେଶ୍ୱର, ଭଦ୍ରକ, ନୟାଗଡ଼, କେନ୍ଦ୍ରାପଡ଼ା, ଜଗତ୍‌ସିଂହପୁର, ପୁରୀ, ଯାଜପୁର, ତିର୍ତ୍ତୋଲ, ଭୁବନେଶ୍ୱର ଏବଂ ଆଦିବାସୀ ବହୁଳ ବଲାଙ୍ଗୀର, ଅନୁଗୁଳ ପାରଳାଖେମୁଣ୍ଡି, କେନ୍ଦୁଝର, ନବରଂଗପୁର, ବୌଦ୍ଧ, ରଞ୍ଜନଗର ଓ ଖରିଆର ଆଦି ୪୮ ଟି ସ୍ଥାନରେ ଆଳୁଚାଷ କରାଯାଇ ଏଥିରୁ ଆଶାନୁରୂପ ସଫଳତା ମିଳିଲା ।

ପରେ ଏହି ଚାଷକୁ ସଂପ୍ରସାରିତ କରାଯାଉ ୨୦୦୦ ମସିହା ସୁଦ୍ଧା ପ୍ରାୟ ୫୦୦୦ ଏକର ଜମିରେ ଆଳୁଚାଷ କରାଯାଉ ରାଜ୍ୟବାସୀଙ୍କ ଚାହିଦା ମେଣ୍ଟାଇବା ସାଙ୍ଗକୁ ବାହାର ରାଜ୍ୟକୁ ଆଳୁ ରପ୍ତାନି କରିବା ପାଇଁ ଓଡ଼ିଶା ସମର୍ଥ ହୋଇପାରିବ ଏବଂ ନିର୍ଦ୍ଦିଷ୍ଟ ଚାଷୀମାନଙ୍କ ଜମିରେ ପ୍ରମାଣିକୃତ ଆଳୁ ବିହନ ଉତ୍ପାଦନ କରାଯାଉ ତାହାକୁ ସରକାରୀ ନିର୍ଦ୍ଧାରିତ ମୂଲ୍ୟରେ କିଣାଯାଇ ଶୀତଳ ଭଣ୍ଡାରଗୁଡ଼ିକରେ ସାଇତି ରଖାଯିବା ବିଷୟ ଶ୍ରୀ ବେହେରା ପ୍ରକାଶ କରିଥିଲେ ।

ବର୍ତ୍ତମାନ ''ନଈବାଲିରେ ଆଳୁଚାଷ'' ର ପଦ୍ଧତି ସମ୍ପର୍କରେ ଆଲୋଚନା କରାଯାଉ ।

**ସ୍ଥାନ ନିରୂପଣ** :- ନଦୀପାଣି ଧାରର ପାଖାପାଖି ବାଲୁକା ଶଯ୍ୟା ଆଳୁଚାଷ ପାଇଁ ଉପଯୁକ୍ତ । ଏହା ସମ୍ପୂର୍ଣ୍ଣ ବାଲୁକାମୟ ହେବା ଉଚିତ୍ । ଏଥିରେ ମାଟି କିମ୍ବା ପଟୁଅଂଶ ଆଦୌ ନଥିବା ଆବଶ୍ୟକ । ଲୁଣିପାଣି ଆଳୁଚାଷ ପାଇଁ ଅନୁପଯୁକ୍ତ । ଆଳୁଚାଷ ପାଇଁ ନିରୂପିତ ବାଲୁକାଶଯ୍ୟା ନିକଟସ୍ଥ ପାଣିଧାରର ସ୍ତର ନଭେମ୍ବର ମାସଠାରୁ ଫେବୃଆରୀ ମାସ ପର୍ଯ୍ୟନ୍ତ ସ୍ଥିର ରହିବା ଉଚିତ୍ । କାରଣ ଧାରର ପାଣି ବେଶୀ ହେଲେ ଆଳୁ ପଚିଯିବ କିମ୍ବା ଚାଷ-ବାଲୁକା ଶଯ୍ୟାଠାରୁ ପାଣିଧାର ଦୂରେଇ ଗଲେ ପାଣି ଅଭାବରୁ ଚାଷ କ୍ଷତିଗ୍ରସ୍ତ ହେବ ।

**ଜମି ପ୍ରସ୍ତୁତି** : ଆଳୁଚାଷ ପାଇଁ ସ୍ଥିରୀକୃତ ବାଲୁକାଶଯ୍ୟାକୁ ପ୍ରଥମେ ଉତ୍ତମ ଭାବେ ସମତୁଳ କରିବା ଦରକାର; ଯେପରିକି ବାଲୁକା ଶଯ୍ୟାର ଠିକ ୨୫-୩୦ ସେ.ମି. (୧୦''ରୁ ୧୨'') ତଳେ ଜଳସ୍ତର ନିୟନ୍ତ୍ରିତ ହେବ । ଏଥିପାଇଁ ପ୍ରଥମେ ବାଲୁକାଶଯ୍ୟାକୁ ଚାଷ କରାଯାଏ । ଅନାବନା ପଦାର୍ଥ ବାହାର କରି ଯଦି କୌଣସିଠାରେ ପଟୁ ଅଂଶ ଥାଏ ତାକୁ ମଧ୍ୟ ବାହାର କରାଯାଏ । ଏହାପରେ ଟ୍ରାକ୍ଟର ଲେଭଲର କିମ୍ବା ବଳଦଦ୍ୱାରା ଟଣା ସମତୁଳ ଯନ୍ତ୍ର (କୋଡ଼ି) ସାହାଯ୍ୟରେ ବାଲିଶଯ୍ୟାକୁ ସମତୁଳ କରାଯାଏ, ଯେପରିକି କ୍ଷେତର ସବୁଆଡ଼େ ଜଳସ୍ତର ଶଯ୍ୟାର ୨୫ ରୁ ୩୦ ସେ.ମି ତଳେ ରହିବ ।

ଜଳସ୍ତରକୁ ୨୫-୩୦ ସେ.ମି. ତଳେ ସବୁ ସମୟରେ ନିୟନ୍ତ୍ରିତ କରିବା ପାଇଁ ମୁଖ୍ୟଧାରରୁ ଗୋଟିଏ ପାଣିନାଳି କିଆରୀର ଅପର ପାର୍ଶ୍ୱରେ ଖୋଳି ନେଇ ମୁଖ୍ୟ ସ୍ରୋତରେ ପୁନର୍ବାର ମିଶାଇ ଦିଆଯାଏ ।

**ଆଳୁ ଲଗାଇବା ପ୍ରଣାଳୀ** : ଜମି ସମତୁଳ କରିସାରିବା ପରେ ଫାଉଡ଼ା ସାହାଯ୍ୟରେ ୮'' (୨୦ସେ.ମି.) ଚଉଡ଼ା ଓ ୬'' (୧୫ ସେ.ମି) ଗଭୀର ସିଆର ଖୋଳି ସେଥିରେ ସଢ଼ା ଶୁଖିଲା ଗୋବରଖତ ପ୍ରୟୋଗ କରାଯାଏ । ଏହାପରେ ଆବଶ୍ୟକ ଅନୁମୋଦିତ ଯବକ୍ଷାରଜାନ, ପୋଟାସ ଓ ସୁପରସାର ଭରି ସିଆରରେ କେଇ ୧୦ ସେ.ମି. (୪'') ଉଚ୍ଚତାରେ ବାଲି ସାରୁ ଉପରେ ଘୋଡ଼ାଇ ଦିଆଯାଏ । ଏହାପରେ କଟା ଆଳୁଖଣ୍ଡ କିମ୍ବା ଗୋଟାଆଳୁ ୨୦ ସେ.ମି. (୮'') ବ୍ୟବଧାନରେ ସିଆରରେ ଆଖି ଉପରକୁ ରଖି ତା ଉପରେ ୫ ସେ.ମି. ବା (୨'') ବହଳର ବାଲି ଘୋଡ଼ାଇ ଦିଆଯାଏ । ଖତସାର କିମ୍ବା ଆଳୁମଞ୍ଜି ଘୋଡ଼ାଇବା ପାଇଁ ଆବଶ୍ୟକ ବାଲି ପରବର୍ତ୍ତୀ ସିଆର ଖୋଳାରୁ ବ୍ୟବହାର କରାଯାଏ ।

**ସାର ଓ ଖତ** : ଏକ ଏକର ଜମିପାଇଁ ଅନୁମୋଦିତ ଖତ ଓ ସାର ନିମ୍ନଲିଖିତ ପରିମାଣ ଆବଶ୍ୟକ ।

FYM - 10 MT ନାଇଟ୍ରୋଜେନ - ୧୪୦ କି.ଗ୍ରା ସୁପର - ୧୨୦ କି.ଗ୍ରା ଓ ପୋଟାସ - ୧୨୦ କି.ଗ୍ରା ।

ଏହାକୁ ପାଇବାକୁ ହେଲେ ଖତ ୩ ଟ୍ରକ ବା ୨୦ ଶଗଡ଼, ଡ଼ି.ଏ.ପି - କ୍ୱି ୨ ଓ ୫୦ କେ.ଜି. ଆମୋନିୟମ ସଲଫେଟ - କ୍ୱି ୪.୫୦ କି., ଏମ୍.ଓ.ପି. କ୍ୱି ୨.୦୦ କିମ୍ବା ଆମୋନିୟମ ସଲଫେଟ - କ୍ୱି ୭.୦୦ ସିଙ୍ଗଲ ସୁପର ଫସଫେଟ କ୍ୱି ୮.୦୦ ଓ ମ୍ୟୁରିଏଟ ଅଫ ପୋଟାସ୍ - କ୍ୱି ୨-୦୦ । ଗ୍ରୋମୋର - କ୍ୱି ୪-୦୦ ସିଙ୍ଗଲ ସୁପର ଫସଫେଟ - ୫୦ କି.ଗ୍ରା ଆମୋନିୟମ ସଲଫେଟ-କ୍ୱି ୧-୫୦ ଏବଂ ମ୍ୟୁରିଏଟ ଅଫ ପୋଟାସ - କ୍ୱି ୨-୦୦ ଆବଶ୍ୟକ ।

**ଲଗାଇବା ସମୟ** : ଓଡ଼ିଶାରେ ନଭେମ୍ବର ୧୫ ମଧ୍ୟରେ ନଦୀ ଶଯ୍ୟାରେ ଆଳୁ ଲଗାଇବା ପାଇଁ ଉପଯୁକ୍ତ ସମୟ ।

**ଆଳୁବିହନ** : ୫-୧୦ ଗ୍ରାମ ଓଜନର ଗୋଟିଏ କିମ୍ବା ଦୁଇଟି ଆଖିଥାଇ ଆଳୁ ଖଣ୍ଡ ବିହନ ଭାବରେ ଲଗାଯାଏ । ଏକର ପ୍ରତି ୧୦ କ୍ୱିଣ୍ଟାଲ ଆଳୁ ଆବଶ୍ୟକ ହୁଏ । ଛୋଟ ଆଳୁ ହୋଇଥିଲେ ଗୋଟା ଆଳୁ ଲଗାଯାଏ ।

**ଆଳୁ ମଞ୍ଜି ବିଶୋଧନ** : କଟାଆଳୁ ମଞ୍ଜିକୁ ୦.୨ ଇଣ୍ଡୋଫିଲ-ଏମ୍-୪୫ (ଏକ ଲିଟର ପାଣିରେ ୨ ଗ୍ରାମ) କିମ୍ବା ୦.୧ ବାଭିଷ୍ଟିନ (୧ ଲିଟର ପାଣିରେ ଏକ ଗ୍ରାମ) ହିସାବରେ ଦ୍ରବଣ କରି ଲଗାଇବା ପୂର୍ବରୁ ବିଶୋଧନ କରିବା ଆବଶ୍ୟକ । ଏହା ଦ୍ୱାରା ବିହନ ପଚିବା ରୋକାଯାଇପାରିବ । ଆଳୁ ବିହନକୁ ୧୫ ମିନିଟ ବିଶୋଧନ ଘୋଳରେ ବୁଡ଼ାଇ ୧୨ ରୁ ୨୪ ଘଣ୍ଟା ଛାଇରେ ଶୁଖାଯାଏ ।

**ଅମଳ** : ନଈବାଲି ଶଯ୍ୟାରୁ ଆଳୁକୁ ଖାଲିହାତରେ ବାଲିତାଡ଼ି ଅମଳ କରାଯାଏ । ଏହାଦ୍ୱାରା ଆଳୁ କଟାଯାଏ ନାହିଁ କିମ୍ବା ନଷ୍ଟ ହୁଏ ନାହିଁ । ଅମଳ କରିସାରିବା ପରେ ଆଳୁକୁ ଖୋଲା ଯାଗାରେ ଛାଇରେ ଶୁଖାଇ ଦିଆଯାଏ । ପବନ ବାଜି ଆଳୁର ଚୋପା ଶକ୍ତ ହୋଇଯାଏ । ଏହାପରେ ଆଳୁକୁ ବିଭିନ୍ନ ଆକାର ଅନୁଯାୟୀ ବାଛି ଅଲଗା କରାଯାଏ ଏବଂ ସିଧା ବଜାରରେ ବିକ୍ରିପାଇଁ ବ୍ୟବସ୍ଥା କରାଯାଏ ।

**ଆଦାୟ** : ଭଲଭାବରେ ଚାଷକଲେ ଏକରପ୍ରତି ୨୦୦ ରୁ ୨୪୦ କ୍ୱିଣ୍ଟାଲ ପର୍ଯ୍ୟନ୍ତ ଆଳୁ ଆଦାୟ ହୁଏ । ମୋଟା ମୋଟି ନଈ ବାଲୁକାଶଯ୍ୟାରେ ଚାଷ କରାଯାଇଥିବା ଆଳୁ ଅମଳ ମାଟି କିଆରିରେ କରାଯାଇଥିବା ଆଳୁ ଅମଳଠାରୁ ଦୁଇଗୁଣରୁ ଅଧିକ ।

ନଈବାଲିରେ ଆଳୁଚାଷ ଏକ ଅର୍ଥକରୀ ଫସଲ । ଉଦ୍ୟାନ ବିଭାଗର ଅଫିସରମାନେ ନିଷ୍ଠାର ସହିତ ଏହି କାର୍ଯ୍ୟକ୍ରମକୁ ଆଗେଇ ନେଇ ଚାଷୀମାନଙ୍କୁ ସହାୟତା ଯୋଗାଇ ଦେଲେ ଆଗାମୀ ୨୦୦୦ ମସିହା ସୁଦ୍ଧା ଆମରାଜ୍ୟ ଆଳୁ ଉତ୍ପାଦନରେ ସ୍ୱାବଲମ୍ବନଶୀଳ ହୋଇ ପାରିବା ସଙ୍ଗେ ସଙ୍ଗେ ପଡ଼ୋଶୀ ରାଜ୍ୟକୁ ଆଳୁ ରପ୍ତାନୀ କରି ତାର ଅର୍ଥନୈତିକ ସ୍ଥିତି ସୁଦୃଢ଼ କରିପାରିବ ।

ସ୍ୱତନ୍ତ୍ର ପ୍ରତିନିଧି
ନବ ଭାରତ ଓ ଏମ.ପି. କ୍ରନିକାଲ
ପ୍ଲା.ନଂ. ଭି.ଆର. ୪/୧,
ୟୁନିଟ - ୩, ଭୁବନେଶ୍ୱର - ୧



ଭୁବନେଶ୍ୱର ହୋଟେଲ ସ୍ୱସ୍ତିଠାରେ ଭାରତ-ତୁର୍କୀସ୍ଥାନ ଆର୍ଥିକ ନୀତି ପରିସ୍ଥିତି ସମ୍ମିଳନୀକୁ
ମାନ୍ୟବର ରାଜ୍ୟପାଳ ଶ୍ରୀ ଗୋପାଳ ରାମାନୁଜମ୍ ଉଦ୍‌ଘାଟନ କରୁଛନ୍ତି



ଆଦିବାସୀ ମେଳାର ଉଦ୍‌ଘାଟନ ଉତ୍ସବରେ ମାନ୍ୟବର ରାଜ୍ୟପାଳ ଶ୍ରୀ ଗୋପାଳ ରାମାନୁଜମ୍
ସୂଚନା ଓ ଲୋକସମ୍ପର୍କ ବିଭାଗକୁ ପ୍ରଥମ ପୁରସ୍କାର ପ୍ରଦାନ କରୁଛନ୍ତି



ପଠାଣି ସାମନ୍ତ ପ୍ଲାନେଟୋରିୟମ୍‌ଠାରେ ମାନ୍ୟବର ରାଜ୍ୟପାଳ ଶ୍ରୀ ଗୋପାଳ ରାମାନୁଜମ୍



ପ୍ରଧାନମନ୍ତ୍ରୀ ଶ୍ରୀ ଇନ୍ଦ୍ର କୁମାର ଗୁଜରାଲଙ୍କ ସହିତ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ



ସଚିବାଳୟ ସମ୍ମିଳନୀ କକ୍ଷରେ ଅନୁଷ୍ଠିତ ରାଜ୍ୟ ସୈନିକ ବୋର୍ଡର ବୈଠକରେ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଅଧ୍ୟକ୍ଷତା କରୁଛନ୍ତି



ପୁରୀ ଶ୍ରୀଜଗନ୍ନାଥ ବିଶ୍ୱବିଦ୍ୟାଳୟ ବାର୍ଷିକ ଉତ୍ସବରେ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ କୃତୀ ଛାତ୍ରଛାତ୍ରୀମାନଙ୍କୁ ପୁରସ୍କାର ପ୍ରଦାନ କରୁଛନ୍ତି

କଲିକତାସ୍ଥିତ ଯୁକ୍ତରାଷ୍ଟ୍ର ଆମେରିକାର କନ୍‌ସଲ ଜେନେରାଲ ଶ୍ରୀମତୀ ବେରିକ୍ କେ. ସିମ୍
ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କୁ ତାଙ୍କ ସଚିବାଳୟ ପ୍ରକୋଷ୍ଠରେ ସାକ୍ଷାତ କରୁଛନ୍ତି

କଳାହାଣ୍ଡି ଓ ଝାରସୁଗୁଡା ଜିଲ୍ଲାରେ ଆଲୁମିନା ଓ ଆଲୁମିନିୟମ୍ କାରଖାନା ପ୍ରତିଷ୍ଠା ନିମନ୍ତେ ଭାରତ ଷ୍ଟରଲାଇଟ
କମ୍ପାନୀର ମୁଖ୍ୟ ପରିଚାଳନା ନିର୍ଦ୍ଦେଶକ ଶ୍ରୀ ଅନିଲ ଅଗ୍ରୱାଲ୍ ଓ ଶ୍ରୀ ଭଗବାନ ପ୍ରସାଦ ଦାସ ଏକ ବୁଝାମଣା ପତ୍ରରେ
ସ୍ୱାକ୍ଷର କରୁଛନ୍ତି । ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ, ଉପମୁଖ୍ୟମନ୍ତ୍ରୀ ଶ୍ରୀ ବସନ୍ତ କୁମାର ବିଶ୍ୱାଳ
ଓ ଶିଳ୍ପମନ୍ତ୍ରୀ ଶ୍ରୀ ନିରଞ୍ଜନ ପଟ୍ଟନାୟକ ଉପସ୍ଥିତ ଅଛନ୍ତି

ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ଉପସ୍ଥିତିରେ ଓଡ଼ିଶା ଖଣି ନିଗମର ପରିଚାଳନା ନିର୍ଦ୍ଦେଶକ ଶ୍ରୀ କେ. ପି.
ଦାସ ଓ ଜାପାନ କର୍ପୋରେସନ୍ ଡିରେକ୍ଟରର ଅଧ୍ୟକ୍ଷ ଶ୍ରୀ [illegible] ମଧ୍ୟରେ ଏକ ବୁଝାମଣା ପତ୍ର ସ୍ୱାକ୍ଷରିତ



ଉତ୍କଳଗୌରବ ମଧୁସୂଦନ ଦାସଙ୍କ ୧୫୦ ତମ ଜୟନ୍ତୀ ପାଳନ ଅବସରରେ ବିଧାନସଭା ପରିସର ମଧ୍ୟରେ ଥିବା ତାଙ୍କ ପ୍ରତିମୂର୍ତ୍ତି ନିକଟରେ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ପୁଷ୍ପଗୁଚ୍ଛ ଅର୍ପଣ କରି ଶ୍ରଦ୍ଧାଞ୍ଜଳି ଜ୍ଞାପନ କରୁଛନ୍ତି



ଅଶୋକାଷ୍ଟମୀ ଉପଲକ୍ଷେ ଲିଙ୍ଗରାଜ ମହାପ୍ରଭୁଙ୍କ ରୁକୁଣା ରଥଯାତ୍ରା



ଭୁବନେଶ୍ୱରଠାରେ ଆୟୋଜିତ ଜାତୀୟ ବନ୍ଧୁ-ଚିତ୍ତରଞ୍ଜନଙ୍କ ୫୭ତମ ଶହୀଦ ଦିବସ ପାଳନ ଅବସରରେ ଅବକାରୀ ମନ୍ତ୍ରୀ ଶ୍ରୀ ସୁରେଶ କୁମାର ରାଉତରାୟ ଉଦ୍‌ବୋଧନ ଦେଉଛନ୍ତି




ଚନ୍ଦ୍ରଶେଖରପୁରଠାରେ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ବନ ବିଭାଗର ମୁଖ୍ୟ ଦପ୍ତର ଗୃହ ଉଦ୍‌ଘାଟନ କରୁଛନ୍ତି



ଭିଙ୍ଗାରପୁରଠାରେ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ କୁଶଭଦ୍ରା ନଦୀ ଉପରେ ନିର୍ମାଣ ହେବାକୁ ଯାଉଥିବା ସେତୁର ଶିଳାନ୍ୟାସ କରୁଛନ୍ତି



ନିଶ୍ଚିନ୍ତକୋଇଲିଠାରେ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ପ୍ରହ୍ଲାଦ ମହାବିଦ୍ୟାଳୟର ନୂତନ ଗୃହ ଉଦ୍‌ଘାଟନ କରୁଛନ୍ତି

ଭୁବନେଶ୍ୱର ନାବାର୍ଡ ଆଞ୍ଚଳିକ କାର୍ଯ୍ୟାଳୟଠାରେ ଅନୁଷ୍ଠିତ ବାର୍ଷିକ କୃଷକ ସମ୍ମିଳନୀରେ ମାନ୍ୟବର ରାଜ୍ୟପାଳ ଶ୍ରୀ ଗୋପାଳ ରାମାନୁଜମ୍ କୃଷକମାନଙ୍କୁ ପୁରସ୍କାର ପ୍ରଦାନ କରୁଛନ୍ତି

ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଭୁବନେଶ୍ୱର ରାଜ୍ୟ ଅଭିଲେଖାଗାରଠାରେ ଓଡ଼ିଆ ଜାଗୃତି ଓ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଅଭିଲେଖ ପ୍ରଦର୍ଶନୀ ବୁଲି ଦେଖୁଛନ୍ତି

କଟକ ପ୍ରାଙ୍ଗଣରେ ଆୟୋଜିତ ଜାତୀୟ ସଂଗ୍ରାମରୁ 'ଏବଂ' ଏହାର ପୃଷ୍ଠଭୂମି ଉପରେ ଆଧାରିତ ଫଟୋଚିତ୍ର ପ୍ରଦର୍ଶନୀକୁ ଭାରତର ପୂର୍ବତନ ମୁଖ୍ୟ ବିଚାରପତି ଶ୍ରୀ ରଙ୍ଗନାଥ ମିଶ୍ର ବୁଲି ଦେଖୁଛନ୍ତି



ଏ. ଇ. ଏସ୍.ର ପରିଯୋଜନା ନିର୍ଦ୍ଦେଶକ ଶ୍ରୀ ବ୍ରୁହିଆଲା ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ସହ ସଚିବାଳୟ କାର୍ଯ୍ୟାଳୟରେ ସୌଜନ୍ୟମୂଳକ ସାକ୍ଷାତ କରୁଛନ୍ତି



ରାଜ୍ୟ ସୂଚନାଭବନଠାରେ ଆୟୋଜିତ ୧୦୬ ତମ ରାଜ୍ୟସ୍ତରୀୟ ଆମ୍ବେଦକର ଜୟନ୍ତୀ ପାଳନ ଅବସରରେ ଉପମୁଖ୍ୟମନ୍ତ୍ରୀ ଶ୍ରୀ ହେମାନନ୍ଦ ବିଶ୍ୱାଳ, ମନ୍ତ୍ରୀ ଶ୍ରୀ ଜୟଦେବ ଜେନା, ଶ୍ରୀ ଭଗବାନ ବେହେରା ଓ ଲୋକସମ୍ପର୍କ ନିର୍ଦ୍ଦେଶକ ଶ୍ରୀ ଶଶଧର ପାଣିଗ୍ରାହୀ




ରାଜ୍ୟ ସୂଚନା ଓ ଲୋକସମ୍ପର୍କ ବିଭାଗ ଆନୁକୂଲ୍ୟରେ ଆୟୋଜିତ ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବଙ୍କ ରାଜ୍ୟସ୍ତରୀୟ ଜୟନ୍ତୀ ସମାରୋହରେ ମୁଖ୍ୟଅତିଥି ସୂଚନା ଓ ଲୋକସମ୍ପର୍କ ବିଭାଗ ମନ୍ତ୍ରୀ ଶ୍ରୀ କେଦାରନାଥ ମଲ୍ଲିକ, ମୁଖ୍ୟବକ୍ତା ଶ୍ରୀ ସୌମ୍ୟ କୁମାର ଗୁପ୍ତ ଓ ଲୋକସମ୍ପର୍କ ଶାସନ ସଚିବ ଶ୍ରୀରାମ ବେହେରା



ରାଜ୍ୟ ସୂଚନା ଭବନଠାରେ ଆୟୋଜିତ ଏକ ଉତ୍ସବରେ ରାଜ୍ୟପାଳ ଶ୍ରୀ ଗୋପାଳ ରାମାନୁଜମ୍ ସ୍ୱାମୀ ଚିଦ୍ଭବାନନ୍ଦଙ୍କ ଦ୍ୱାରା ଲିଖିତ ଶ୍ରୀମଦ୍ ଭଗବତ ଗୀତାର ଓଡ଼ିଆ ଅନୁବାଦ ଉନ୍ମୋଚନ କରୁଛନ୍ତି



ଗୀତଗୋବିନ୍ଦଠାରେ ତଥ୍ୟ କର୍ମୀଙ୍କ ଦ୍ୱାରା ମୁଦ୍ରଣ କରାଯାଉଥିବା ଅଭିଯାନ କାର୍ଯ୍ୟକ୍ରମକୁ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଅନୁଧ୍ୟାନ କରୁଛନ୍ତି



ରାଜ୍ୟ ସୂଚନା ଭବନଠାରେ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଦୈନିକ ସମ୍ବାଦପତ୍ର "ଉତ୍କଳିକା" ଉନ୍ମୋଚନ କରୁଛନ୍ତି

# ଗୋପାଳଦାଶଙ୍କ ଅପେରାରେ ଦ୍ୱାରୀ

*ଅଧ୍ୟାପକ ଡକ୍ଟର ନୀଳମଣି ଲେଙ୍କା*

ଓଡ଼ିଆ ଲୋକ ସାହିତ୍ୟର ମୁକୁଟବିହୀନ ସମ୍ରାଟ, ନାଟ୍ୟ ଜୋଭିନ ଗଣକବି ଗୋପାଳଦାଶ ଏକ ଅମ୍ଳାନ ପ୍ରତିଭା । ଲୋକନୃତ୍ୟ ସମନ୍ୱିତ ଯାତ୍ରାର ସଂସ୍କାର ଆଣିବା ଦିଗରେ ସେ ଜଣେ ଅପ୍ରତିଦ୍ୱନ୍ଦ୍ୱୀ ନାଟ୍ୟକାର । ପରାଧୀନ ଭାରତବାସୀ ଯେତେବେଳେ ଇଂରେଜ ସରକାରଙ୍କ ଶାସନ ଦ୍ୱାରା ଅବହେଳିତ ହେଉଥିଲେ ଠିକ୍ ସେହି ସମୟରେ ନାଟ୍ୟାଚାର୍ଯ୍ୟ ଗୋପାଳଦାଶଙ୍କ ଆଶ୍ୱାସନା ଭାରତବାସୀଙ୍କ ପାଇଁ ଛୋଟ କଥା ନୁହେଁ । ଏହି କୁଶଳୀ ଅଭିନେତା, ଉଚ୍ଚକୋଟୀର ଯାତ୍ରାଲେଖକ, ସୁସଂଗୀତଜ୍ଞ, ନାଟ୍ୟସଂଗଠକ, ବାଦ୍ୟଯନ୍ତ୍ରର ନିପୁଣଶିଳ୍ପୀ ସର୍ବୋପେକ୍ଷା ନାଟ୍ୟ ଓସ୍ତାଦ ଗୋପାଳଦାଶଙ୍କ ଆବିର୍ଭାବ ହୋଇଥିଲା ୧୮୭୬ ମସିହା ମଇମାସ ୩୦ ତାରିଖରେ କେନ୍ଦ୍ରାପଡ଼ା ଜିଲ୍ଲା ତଥା ପଟ୍ଟାମୁଣ୍ଡାଇ ତହସିଲ ଅନ୍ତର୍ଭୁକ୍ତ ପଳସିଂହା ଗ୍ରାମରେ । ତାଙ୍କ ରଚିତ ସମୁଦାୟ ୭୮ ଖଣ୍ଡ ଗୀତାଭିନୟ ମୁଖ୍ୟତଃ ରାମାୟଣ, ମହାଭାରତ, ଶ୍ରୀମଦ୍ ଭାଗବତ, କାଳ୍ପନିକ ମୂଳକ ଥିଲା । ଗ୍ରାମୀଣ ଭାଷା ତଥା ପାତ୍ର ଉପଯୋଗୀ ସଂଳାପଦ୍ୱାରା ସମାଜର କୁସଂସ୍କାର, କୁଶାସନଗୁଡ଼ିକ ଦର୍ଶକମାନଙ୍କ ପାଖରେ ଉପସ୍ଥାପନା କରିବାରେ ସେ ଧୂରନ୍ଧର ଥିଲେ । ନିଜ ଯାତ୍ରାଦଳର କଳାକାରମାନଙ୍କୁ ସେ ନୀତି ନିୟମ ଭିତରେ ବାନ୍ଧି ରଖୁଥିଲେ । ନିଜେ ଯେତେବେଳେ କଂସ, ଦଣ୍ଡ, ଦୁର୍ଯ୍ୟୋଧନ, ଜରାସନ୍ଧ ଇତ୍ୟାଦି ରାଜା ଭୂମିକାରେ ଅବତୀର୍ଣ୍ଣ ହେଉଥିଲେ, ସେତେବେଳେ ଦର୍ଶକମାନଙ୍କ ମଧ୍ୟରେ ଉନ୍ନୟଭାବ ସୃଷ୍ଟି ହେଉଥିଲା ।

ଏଯାବତ୍ ଲୋକମାନେ ଭୁଲିପାରି ନାହାନ୍ତି ଗୋପାଳଦାଶଙ୍କୁ । ଭୁଲି ନାହାନ୍ତି ପିତାରାଣୀ, ମଣିଆ ଦୁଆରୀଙ୍କର ଅଭିନୟକୁ । ଏବେ ମଧ୍ୟ ଲୋକମାନଙ୍କ ମୁଖରୁ ଶୁଣାଯାଏ- ''ଗୋପାଳ ଦାଶ ରାଜାକୁ ପିତା ବଣିଆରାଣୀ'' । ରାଜାରାଣୀ ଇତ୍ୟାଦି ଅନ୍ୟାନ୍ୟ ଚରିତ୍ରଗୁଡ଼ିକୁ ବାଦ ଦେଲେ ଦର୍ଶକ ମାନଙ୍କର ବିଶେଷ ଆକର୍ଷଣ ଥାଏ ଦୁଆରୀ ପ୍ରତି । ସମସ୍ତ ସାମାଜିକ ଚରିତ୍ରଗୁଡ଼ିକରେ ଦ୍ୱାରୀ ପ୍ରଧାନ । ତାର କର୍ତ୍ତବ୍ୟ ଦ୍ୱାର ଜଗିବା ହେଲେ ମଧ୍ୟ ଭୂମିକା ଅନେକ ଗୁରୁତ୍ୱପୂର୍ଣ୍ଣ । ସେ ଅଟାଡାମସା କରେ । କିନ୍ତୁ ଉଚ୍ଚସ୍ତରଙ୍କୁ ଚାଟୁ କରେ ନାହିଁ । ସେ ଚାସ୍ତୁବାକ୍ । ଆଡ଼ବାୟାଗଳି ସେ ବେଳେ ବେଳେ ଅଭିନୟ କରେ । ସେ ରାଜାଙ୍କର ବୟସ୍ୟ ବିଦୂଷକ ନୁହେଁ, ବରଂ ରଙ୍ଗରସର ଆଧାର । ହାସ୍ୟରସ ପରିବେଷଣ କରି ଦର୍ଶକଙ୍କୁ ଆନନ୍ଦ ପ୍ରଦାନ କରିବା ତାର ଲକ୍ଷ୍ୟ । ତେଣୁ ସେ ହାସ୍ୟରସିକ, ବ୍ୟଙ୍ଗକାରୀ । ସମାଜରେ ଘଟୁଥିବା ଦୁର୍ନୀତି, ଅନାଚାର, ଦୁରବସ୍ଥା ଗୁଡ଼ିକୁ ନିଜର ଗୀତ ମାଧ୍ୟମରେ ବିଭିନ୍ନ ଅଙ୍ଗଭଙ୍ଗୀ ଦ୍ୱାରା ପ୍ରକଟାଏ । ଏକଥା ସତ୍ୟ ଯେ ଦ୍ୱାରୀ ବିନା ଲୀଳା, ସୁଆଙ୍ଗ ବା ଯାତ୍ରାର ଅଙ୍ଗହାନୀ ହୋଇନଥାନ୍ତା । କିନ୍ତୁ ସରସତା ରହିନଥାନ୍ତା ଏହିଦ୍ୱାରୀ ଭୂମିକା ସମୟାନୁସାରେ ଭିନ୍ନ ରୂପ ନେଇଛି । ଊନବିଂଶ ଶତାବ୍ଦୀରେ ଓ ବିଂଶଶତାବ୍ଦୀର ପ୍ରଥମ ଦଶନ୍ଧିରେ ସେ ଦ୍ୱାରୀ ପରବର୍ତ୍ତୀ ପର୍ଯ୍ୟାୟରେ ଡଗର ବା ଦୂତ ଭାବରେ ଆତ୍ମପରିଚୟ ଦେଇଛି । ଗୋପାଳଦାଶଙ୍କ ଯାତ୍ରାର ଅନ୍ୟତମ ବିଶେଷ ଆକର୍ଷଣ ଥିଲା ମଣିଦୁଆରୀ । ନାମ ତାର ମଣିଜେନା । ଜନ୍ମସ୍ଥାନ ପଟ୍ଟାମୁଣ୍ଡାଇ ନିକଟସ୍ଥ ଅରଡ଼ପାଲ୍ଲୀ ଗ୍ରାମରେ । ଘରଭିତରର ପତ୍ନୀ ମଣିଦେବୀ ଓ ଘର ବାହାରର ଦ୍ୱାରୀ ମଣିଜେନା, ଏହି ମଣିଦ୍ୱୟ ସତେଯେପରି ଦାଶଙ୍କ ପ୍ରତିଭାକୁ ଆହୁରି ବିକଶିତ କରିଥିଲେ । କଲିକତାର କାନନବାଗରେ ବୈଷ୍ଣବପାଣି ଏବଂ ଗୋପାଳଦାଶଙ୍କ ମଧ୍ୟରେ ହୋଇଥିବା ବାଦିଯାତ୍ରାରେ ଦାଶ ଚିଡ଼ିଆର ସୁନାଗଣ୍ଡା ଏବଂ ଅନ୍ୟାନ୍ୟ ଉପହାର ଆଣିବା ଦ୍ୱାରା ପାଣି କ୍ଷୁବ୍ଧ ହୋଇ ତୀବ୍ର ସମାଲୋଚନା କରିଥିଲେ ।

ସମ୍ଭୁଦି - ଆ, ଆ ସମ୍ଭୁଦୁଣୀ ଦେଖିଯିବା ନାଟ
ସମ୍ଭୁଦୁଣୀ - କହନି ସମ୍ଭୁଦି ହେବ କେତେ ବାଟ
ସମ୍ଭୁଦି - ରାଜା ତ ଗୋପାଳ ଦାଶ ତାକୁ ସାଠିଏ ବରଷ
ସମ୍ଭୁଦୁଣୀ - ଦାନ୍ତ ପଡ଼ି ଓଠ ହୁଏ ଠକ ଠକ
ସମ୍ଭୁଦି - ଦେହ ତାର ସୁନାତାର ଦେଖିବାକୁ ମନୋହର
ସମ୍ଭୁଦୁଣୀ - ମଣିଜେନା ତାର ଡାରିପଟ

ମଣିଆ ଦୁଆରୀ ରାଜାଙ୍କ ଡାକରାରେ ଆଜ୍ଞା ନକହି ଆଗ୍ୟା କହେ । ତାର କହିବା ଠାଣି ଦେଖି ଦର୍ଶକମାନେ ହସି ହସି ବେଦମ୍ ହୋଇଯାଉଥିଲେ । ତା'ଠାରୁ ଅଧିକ ପରିମାଣର ଖୁସି ହେଉଥିଲେ ତାର ବେଶଭୂଷା ଦେଖି । ସେ ବିଭିନ୍ନ ଛିଟ ପୋଷାକ ପିନ୍ଧିଥାଏ । ନିଶର ଗୋଟିଏ ପାର୍ଶ୍ୱକଳା ଆଉ ପାର୍ଶ୍ୱଟି ଧଳାଥାଏ । ଗୋଟିଏ ପାର୍ଶ୍ୱ କଳି ଗାଲପାଖକୁ ଲମ୍ବିଥାଏ ଏବଂ ଅପର ପାର୍ଶ୍ୱଟି ନଥାଏ । ସେ ହସି ହସି ଅନ୍ୟକୁ ହସାଏ । ତାର ଅଭିନୟ ସମ୍ପର୍କରେ ଅନେକ ପ୍ରବାଦ ଏଯାବତ୍ ପ୍ରଚଳିତ । ଇନ୍ଦୁପୁର

ନିକଟସ୍ଥ ନିକିରାଉରେ ଥରେ ଯାତ୍ରା ହେଉଥାଏ । ପ୍ରବଳ ଭିଡ଼ । ଗାଁଟା ଯାକ ଶୂନଶାନ । କାରଣ ଗୋପାଳବାଣ ଦଳର ଯାତ୍ରା । ଦୁର୍ଯୋଗକୁ ଜନୈକ ବ୍ୟକ୍ତିଙ୍କ ଘରୁ ସେହି ରାତିରେ ଚୋରି ହୋଇଥାଏ । ମଣି ନେଳା ନିଜର ଅଭିନୟ ସାରି ଦୈବାତ୍ ସେହି ଘରର ପିଣ୍ଡାରେ ଶୋଇପଡ଼ିଲା । ସକାଳୁ ଦେଖାଗଲା ମଣି ଯେଉଁ ଘରର ପିଣ୍ଡାରେ ଶୋଇଛି ସେ ଘରୁ ଚୋରି ହୋଇଛି । ପୋଲିସ୍ ସନ୍ଦେହରେ ତାକୁ ଥାନାକୁ ନେଇ ପଚାରିଲେ, ତୁମେ ଚୋରି କରିଛ ? ମଣି ଥଙ୍ଗ ଥଙ୍ଗ ହୋଇ କହିଲେ - ଆପଣ କିପରି ଆଜ୍ଞା ଜାଣିଲେ । ପୋଲିସ ଜୁଲମ୍ ଅଧିକ ହେବାରୁ ଉପସ୍ଥିତ ବୁଦ୍ଧି ଖଟାଇ କହିଲା, ବାବୁ ଆପଣ କୁହନ୍ତୁ ତ ଏ ଥାନା ପିଣ୍ଡାରେ କେତୋଟି ଖୁଣ୍ଟ ଅଛି । ବାବୁ- ଚୁପ୍ । ମଣି କହିଲା, ଆପଣ ସବୁଦିନେ ଏଠାକୁ ଆସି ପିଣ୍ଡାରେ କେତୋଟି ଖୁଣ୍ଟ ଅଛି ଯଦି କହିନ ପାରୁଛନ୍ତି ତେବେ ମୁଁ ଘଣ୍ଟାକ ପାଇଁ ପିଣ୍ଡାରେ ଶୋଇ କିପରି କହିବି କିଏ ଚୋରି କରିଛି । ହାସ୍ୟମୁଖର ପରିବେଶଟିଏ ସୃଷ୍ଟି ହୋଇଗଲା । ମଣି ମୁକ୍ତିପାଇ ଫେରିଆସିଲା ।

ଦ୍ୱାରୀର ଭୂମିକା ଅତୀବ ଗୁରୁତ୍ୱପୂର୍ଣ୍ଣ । ଅନ୍ୟ ଏକ ପ୍ରବାଦ ହେଉଛି, କଲିକତାର ମଇଦାନରେ ହେଉଥିବା ସିରାଜଦୌଲା ନାଟକ । ରଙ୍ଗମଞ୍ଚରେ ରାଣୀଙ୍କ ଦୁଃଖର କାରଣ ପଚାରିଲେ ନବାବ । ରାଣୀ ଗୀତ ବୋଲି ଉତ୍ତର ଦେଲେ । ଦର୍ଶକମାନଙ୍କ ମଧ୍ୟରୁ ଜଣେ ମୁସଲମାନ ଯୁବକ ଉପହାର ସ୍ୱରୂପ କେତେକ ଟଙ୍କା ଆଣି ରାଣୀଙ୍କ ଛାତିରେ ଲଗାଇଦେଲେ । ନବାବ କ୍ଷୁବ୍ଧ ହୋଇ ଦ୍ୱାରୀକୁ ନିର୍ଦ୍ଦେଶ ଦେଲେ ତାକୁ ବନ୍ଦୀ କରିବା ପାଇଁ । ଦ୍ୱାରୀ ଉପସ୍ଥିତ ବୁଦ୍ଧି ପ୍ରୟୋଗ କରି ଦର୍ଶକମଣ୍ଡଳୀକୁ ମସ୍‌ଗୁଲ କରି ରଖେ । ଗୋପାଳଙ୍କ ଦ୍ୱାରୀ ଯେତେବେଳେ ମଞ୍ଚକୁ ଆସେ ସେତେବେଳେ ସେ ନିଜ ମୁଖରେ ବିଭିନ୍ନ କଥା ଉପସ୍ଥାପନ କରେ ।

ଆସଉ ଦୁଆରୀ ହୋଇ ନିଶଙ୍କୀ
କାମ କରି କରି ହେଲାଣି ବଙ୍କା
ଘରର ଘରଣୀ ଅଟେ ମୋ ଓଲଣୀ
ପିନ୍ଧିବ ନାହିଁ ସେ ହାତର ଶଙ୍ଖା
ରାଣୀପୁଅ ହୁଣା ନିତିଖାଏ ଚୁଣା
ଜଗନ୍ନାଥ ଦ୍ୱାରୀ ମୋ ନାମ ଲେଖା ।

ଏହି ଦ୍ୱାରୀ ରାୟଗୁରୁ, ଧ୍ରୁବ ଦାରିକ, ମାଗୁଣି ସାହୁ, ଦ୍ୱାରିକାନାଥ ମହାପାତ୍ର, ବୈଷ୍ଣବ ପାଣିଙ୍କ ଭଳି ନୁହେଁ । କାରଣ ଗୋପାଳଙ୍କ ଦ୍ୱାରୀର ଏକ ସ୍ୱତନ୍ତ୍ରତା ଥିଲା । ଏହାର ବେଶଭୂଷା, ନୀତି ଓ କଥନ ଭଙ୍ଗୀ ସାଧାରଣତଃ ହାସ୍ୟୋଦ୍ଦୀପକ ଥିଲା । ଗୋପାଳଙ୍କ ଯାତ୍ରାର ମଣିଆ ଦୁଆରୀ ପରବର୍ତ୍ତୀ ସମୟରେ ହଳିଆ ଦୁଆରୀ ମଞ୍ଚଉପରେ ଅଶ୍ଳୀଳ ଭାଷା ପ୍ରୟୋଗ କରିଥାଏ । ରାଣୀଙ୍କ କାନରେ ଗୋଡ଼ପକାଇବା ଠାରୁ ଆରମ୍ଭ କରି ରାଜାଙ୍କ ସହିତ ଥଟ୍ଟା ତାମସା କରିଥାଏ । କେବେ କେବେ ଏହି ଦ୍ୱାରୀର ଅଭିନୟ ରୁଚିହୀନ ହୋଇ ଦର୍ଶକଙ୍କୁ ବିରକ୍ତ କରିଥାଏ । କେବେ କେବେ ପାତ୍ରୋଚିତ ଜ୍ଞାନ ରହେ ନାହିଁ । କିମ୍ଭୂତ କଥା ସେ କହେ । ରାଜାରାଣୀଙ୍କ ମୁହଁ ପାଖରେ ଆଙ୍ଗୁଠି ହଲାଇ କଥାବାର୍ତ୍ତା କରେ ଏବଂ ମଞ୍ଚର ଚାରିପାଖକୁ ଧାଁ ଧପଡ଼ କରିଥାଏ । ଏହି ଦ୍ୱାରୀ ଭିନ୍ନ ଭିନ୍ନ ମୁହୂର୍ତ୍ତରେ ଭିନ୍ନ ଭିନ୍ନ ଅଭିନୟ କରେ । କେତେବେଳେ ବିଦୂଷକତ କେତେବେଳେ ରଜକ ହୋଇ ଗୀତ ବୋଲି ସମାଜର ନିମ୍ନଜାତି ପ୍ରତି ସହାନୁଭୂତି ପ୍ରଦର୍ଶନ କରିଥାଏ । ଯଥା -

ରଜକ ହେଲା ବାହାର ହୋ, ରଜକ ହେଲା ବାହାର
ତିନିଦିନ ହେଲା ଜ୍ୱର ପଡ଼ିଥିଲି,
ହରକିଓ ରଙ୍ଗୀଆ ବୋଉ
ମୋ ଘରୁ ନୋହିଲା ବାହାର
ରାଜାଙ୍କ ହୁକୁମ୍ ଭାରିଲୋ, ରାଜାଙ୍କ ହୁକୁମ ଭାରି
ରଙ୍ଗସଭା ଯାତ ହୋଇଛି ଭାରି
ହଉକିଲୋ ରଙ୍ଗୀଆ ବୋଉ
ମୋ ଲୁଗା ଦେ ବେଗି କରି ।

ହାସ୍ୟରସ ପରିବେଷଣ କରିବା ଏହାର ଲକ୍ଷ୍ୟ । ଭକ୍ତିରସ ପାନ କରି ଦର୍ଶକ ଯେତେବେଳେ ଭାରାକ୍ରାନ୍ତ ହୋଇପଡ଼େ ସେତେବେଳେ ଏହି ଦ୍ୱାରୀର ଆବଶ୍ୟକତା ପଡ଼େ । ଗୋପାଳଙ୍କ ରଙ୍ଗ ସଭା ଗୀତିନାଟ୍ୟରେ କଂସର ଡାକରାରେ ଦ୍ୱାରୀ ଆସିବା ସମୟରେ ନିଜେ ନିଜର ପରିଚୟ ପ୍ରଦାନ କରିଛି ।

ଭାଇଗୋଟେ କଳା ଆଉ ଗାଲ ଧଳା
ଚିତ୍ରକର ମୋତେ ଚିତ୍ର କରିଛି ହୋ
ଗୋପାଳ ଚରଣ କହି
କିଛି ଭୟକରନା ହୁଁ
ରାଜାଙ୍କ ଛାମୁରେ ମୁଣ୍ଡ ବିକିଛି ମୁଁ ।

ବ୍ରଜଲୀଳା ଗୀତିନାଟ୍ୟରେ ଏହି ଦ୍ୱାରୀ ଚଉକିଦାର ଭୂମିକାକୁ ଓହ୍ଲାଇ ଆସିଛି । ତତ୍କାଳୀନ ବଇଦମାନଙ୍କୁ କଟୁ ସମାଲୋଚନା ସେ କରିଛି ।

ଏତେ ରାତିକି ବାହାର ଚଉକିଦାରହେ ।
ତିନିଦିନ ହେଲା ମୋତେ ହୋଇଛି ଜରହେ ।
ବଇଦ ଲାଗିଛନ୍ତି ଗୋଟା ପନ୍ଦର ହେ
ଔଷଧ ଦେଲେ ମୋତେ ସିଝୁ ପତର
(ବାବୁ) ବାଉଁଶଚେର, ବେଙ୍ଗଲାଙ୍ଗୁଡ଼,
ମାଈଗୋବର ହେ ।
ବଇଦଙ୍କ ଘର ଅଟେ ସମ୍ବଲପୁର

(ବାବୁ) ସେ ସୋନପୁର, ବିରିକାଉର, ଉଦରଖାର ହେ ।
ଟଙ୍କା ମୋଠୁଁ ଠକି ନେଲେ ନ' ବାରିତେର
(ବାବୁ) ସାତ ଛ ତେର, ଏଗାର ଦୁଇ ତେର, ବାର ଏକ ତେର ।
ଗୋପଳ ବୋଲେ ଚିଜିସା କାଞ୍ଜିପାଣିର
(ବାବୁ) ଲେମ୍ବୁ ରସର, କନ୍ଦ ପଣାର, ମାଛ ଝୋଳର ହେ ।

ବିଲଙ୍କା ରାମାୟଣରେ ରାମଚନ୍ଦ୍ର ବିଲଙ୍କା ଭୁବନ ନିକଟସ୍ଥ ହେଲାପରେ ଦ୍ୱାରୀର ଭୂମିକା ଖୁବ୍ ହାସ୍ୟରୋଳ ସୃଷ୍ଟି କରେ । ସାମୟିକ ଆନନ୍ଦ ପାଇଁ ଏହି ଚରିତ୍ରର ଅବତାରଣା ଗୋପାଳଙ୍କର ଏକ ବାହାଦୁରୀ । ସମାଜର ଉଦ୍ଧତା ନାରୀପ୍ରତି କଟୁକ୍ତି ପ୍ରକାଶ ପାଇଛି ଦ୍ୱାରୀ ମୁହଁରେ ।

ଦ୍ୱାରୀ ଦ୍ୱାରୀ କିଏ ଡାକୁଛି
ଦ୍ୱାରେ ଦ୍ୱାରେ ବୁଲି ତଣ୍ଟି ଶୁଖୁଛି
ଯିବାକୁ ଝିଆରୀ ଆସିଛି ଦୁଆରୀ
ଭଣ୍ଡାରିକି ସାଉ ସାଉ ଖୋଜୁଛି
ଭାରିଜା ମୋ ସାକ୍ଷାତ ଚଣ୍ଡୀ
ମୋତେ ଦେଉଅଛି ସେ ଗଣ୍ଡି
ଦିନରାତି ତାର ଗୋଡ଼ ନଘଷିଲେ
ପିଠିରେ ଝାଡୁପାହାର ଖାଉଛି ।

ତାପରେ ଦ୍ୱାରୀଠାରୁ ରାମଚନ୍ଦ୍ର ଯୁଦ୍ଧପାଇଁ ଆସିଥିବା ଖବର ପାଇ ବିଲଙ୍କା ରାମଙ୍କ ନିକଟକୁ ସୈନ୍ୟସାମନ୍ତଙ୍କ ସହିତ ଗମନ କରିଛି ।

ଦ୍ୱାରୀ, ରାଜା ରାଣୀ ଏମାନେ ସମସ୍ତେ ଆବଶ୍ୟକ ସ୍ଥଳେ ମଞ୍ଚ ଉପରେ ନାଚନ୍ତି । ଗୀତ ବୋଲନ୍ତି ମଧ୍ୟ । ମଣିଆ ଦୁଆରୀ ସ୍ୱତନ୍ତ୍ର କଳା ଦ୍ୱାରା ଦର୍ଶକମାନଙ୍କୁ ମୁଗ୍ଧ କରିପାରୁଥିଲା । ଯାହାକୁ ଏ ପର୍ଯ୍ୟନ୍ତ ଲୋକମାନେ ଭୁଲିପାରିନାହାନ୍ତି । ଏବେ ମଧ୍ୟ କେତେଜଣଙ୍କ ମୁଖରୁ ଶୁଣାଯାଏ -

ଆଉ ଆସିବକି ମଣିଦୁଆରୀ
ରାଜାଙ୍କ ପାଖରେ କରି ଗୁହାରୀ
ଠିଆହେବ ଓଠେ ଠେଙ୍ଗା ଲଗାଇ
କରିବକି ମଞ୍ଚ ସେ ହଇଚଇ

ଅଧ୍ୟକ୍ଷ, ବଡପଦା ମହାବିଦ୍ୟାଳୟ
ବଡପଦା, କେନ୍ଦ୍ରାପଡ଼ା
୭୫୪ ୨୪୫

## କାନାଡ଼ା କମ୍ପାନୀ ସହ ଆଲୁମିନା-ଆଲୁମିନିୟମ ପ୍ରକଳ୍ପ ପ୍ରତିଷ୍ଠା ପାଇଁ ବୁଝାମଣାପତ୍ର ସ୍ୱାକ୍ଷରିତ

ବଲାଙ୍ଗୀର ଓ ବରଗଡ଼ ଜିଲ୍ଲାରେ ଗଚ୍ଛିତ ବକ୍ସାଇଟର ଉପଯୋଗ ପାଇଁ ରାଜ୍ୟ ଖଣି ନିଗମ ଓ କାନାଡାର କଣ୍ଟିନେଣ୍ଟାଲ ରିସୋର୍ସେସ ଲିମିଟେଡ଼ ମଧ୍ୟରେ ଏକ ବୁଝାମଣାପତ୍ର ସ୍ୱାକ୍ଷରିତ ହୋଇଛି ।

ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ, ଉପମୁଖ୍ୟମନ୍ତ୍ରୀ ଶ୍ରୀ ବସନ୍ତ କୁମାର ବିଶ୍ୱାଳ ଓ ଶିଳ୍ପମନ୍ତ୍ରୀ ଶ୍ରୀ ନିରଞ୍ଜନ ପଟ୍ଟନାୟକଙ୍କ ଉପସ୍ଥିତିରେ ମୁଖ୍ୟମନ୍ତ୍ରୀଙ୍କ ସମ୍ମିଳନୀ ପ୍ରକୋଷ୍ଠରେ ଏହି ବୁଝାମଣାପତ୍ର ସ୍ୱାକ୍ଷରିତ ହୋଇଥିଲା । ରାଜ୍ୟ ଖଣି ନିଗମ ପକ୍ଷରୁ ପରିଚାଳନା ନିର୍ଦ୍ଦେଶକ ଶ୍ରୀ କେ.ପି. ଦାସ ଓ କଣ୍ଟିନେଣ୍ଟାଲ ରିସୋରସେସ ଲିମିଟେଡ଼ର ଅଧ୍ୟକ୍ଷ ମିଃ ଆଇଭାନ୍ ସ୍ନେଡ୍ ଏହି ବୁଝାମଣାପତ୍ରରେ ସ୍ୱାକ୍ଷର ଦେଇଥିଲେ ।

କେଣ୍ଟିନେଣ୍ଟାଲ ରିସୋରସେସ୍ ଲିମିଟେଡ୍, କାନାଡ଼ାର ଉଦ୍ୟମରେ ବଲାଙ୍ଗୀର ଜିଲ୍ଲାରେ ଏକ ନିୟୁତ ଟନର ଆଲୁମିନା କାରଖାନା ବସାଯିବ । ଏହି କମ୍ପାନୀ ବଲାଙ୍ଗୀର ବା ପ୍ରସ୍ତାବିତ ଧାମରା ବନ୍ଦର ନିକଟରେ ୫ ଲକ୍ଷ ଟନ ଉତ୍ପାଦନ କ୍ଷମତା ବିଶିଷ୍ଟ ଆଲୁମିନିୟମ କାରଖାନା ସ୍ଥାପନ କରିବ ।

# ଶିଶୁ ଶ୍ରମିକ ସମସ୍ୟା

ଶ୍ରୀ ବିଭୁ ପ୍ରସାଦ ମହାପାତ୍ର

ଶିଶୁ ଦେଶର ଭବିଷ୍ୟତ । ଆଜିର ଶିଶୁ କାଲିର ନାଗରିକ । ଦେଶର କର୍ଣ୍ଣଧାର । ଉନ୍ନତିର ବାହକ ସାମାଜିକ, ଅର୍ଥନୈତିକ, ନୈତିକ ଦୃଷ୍ଟିରୁ ସମାଜ ବହୁତ ଉନ୍ନତି କଲାଣି । ମାତ୍ର ଏଭଳି ଅନେକ ସମସ୍ୟା ଉଠିଛି ଯାହା ସମଗ୍ର ସମାଜର ଉନ୍ନତିରେ ପ୍ରତିବନ୍ଧକ ସୃଷ୍ଟି କରୁଛି । ତନ୍ମଧ୍ୟରୁ ଶିଶୁଶ୍ରମିକ ଅନ୍ୟତମ । ଏଥିରେ କେବଳ ଶିଶୁମାନଙ୍କର ଜୀବନ ନଷ୍ଟ ହେଉନାହିଁ, ଦେଶର ବହୁ ଅବନତି ସାଧିତ ହେଉଛି । ବିଶ୍ୱର ଅନ୍ୟରାଷ୍ଟ୍ରମାନଙ୍କ ତୁଳନାରେ ଭାରତରେ ଏ ସମସ୍ୟା ଉତ୍କଟ ହୋଇଛି ।

ଭାରତୀୟ ଆର୍ଥିକ ମାନଦଣ୍ଡକୁ ଏପ୍ରଥା ସମ୍ପୂର୍ଣ୍ଣ ଦୋହଲାଇ ଦେଉଛି । ଶିଶୁଶ୍ରମିକ ସମାଜ ଦ୍ୱାରା ବିଭିନ୍ନ ଦିଗରୁ ଶୋଷିତ ହେଉଛନ୍ତି । ଏହା ଏକ ପ୍ରକାରର ଦାସତ୍ୱପ୍ରଥା । ଭାରତୀୟ ସମ୍ବିଧାନର ଧାରା ୨୪ ଅନୁଯାୟୀ ୧୪ ବର୍ଷ ପର୍ଯ୍ୟନ୍ତ ଶିଶୁ ଉଦ୍ୟୋଗ କିମ୍ବା କାର୍ଯ୍ୟରେ ନିୟୋଜିତ ହୋଇପାରିବେ ନାହିଁ । ଧାରା ୪୫ ଅନୁଯାୟୀ ୧୪ ବର୍ଷ ପର୍ଯ୍ୟନ୍ତ ଶିଶୁଙ୍କୁ ବାଧ୍ୟତାମୂଳକ ଓ ମାଗଣା ଶିକ୍ଷା ଦିଆଯିବ । ମାତ୍ର ଭାରତ ଭଳି ଏକ ବିରାଟ ଗଣତାନ୍ତ୍ରିକ ରାଷ୍ଟ୍ରରେ ସମସ୍ତ ଶିଶୁ ଏହି ସୁବିଧା ପାଇ ପାରୁ ନାହାନ୍ତି ।

ଆଜି ଭାରତର ଶିଶୁମାନଙ୍କ ମଧ୍ୟରୁ ଶତକଡ଼ା ୪୨ ଭାଗ ଶିଶୁ ଶ୍ରମିକ । ବିଭିନ୍ନ ଉଦ୍ୟୋଗ ଓ ଖଣିରେ ୨୦% ଶିଶୁ ଶ୍ରମିକ ନିୟୋଜିତ ।

ଲୋକସଂଖ୍ୟା ବୃଦ୍ଧି ଫଳରେ ଏହାର ପରିମାଣ ବୃଦ୍ଧି ପାଉଛି । ଶିଶୁ ଶ୍ରମିକ ବୃଦ୍ଧିର ପ୍ରଥମ କାରଣ ହେଉଛି ଦାରିଦ୍ର୍ୟ । ଭାରତର ଶତକଡ଼ା ୮୦ ଭାଗ ଲୋକ ଦାରିଦ୍ର୍ୟର ସୀମାରେଖାତଳେ । ବଡ଼ପରିବାରର ସ୍ୱଚ୍ଛଳତା ଅଭାବ ଯୋଗୁଁ ଶିଶୁଶ୍ରମିକ ପ୍ରଥା ବଢୁଛି । ଶିଶୁ ଉପରେ ପାରିବାରିକ ତଥା ମାନସିକ ଚାପଫଳରେ ସେ କାମ କରିବାକୁ ବାଧ୍ୟ ହେଉଛି । ମୁଖ୍ୟତଃ ଦେଶର ସବୁ ସ୍ଥାନରେ ଶିକ୍ଷାର ପ୍ରସାର ଘଟିନାହିଁ । ଶିକ୍ଷାର ଅଭାବ ଯୋଗୁଁ ଶିଶୁ ଶ୍ରମିକ ସଂଖ୍ୟା ଦ୍ରୁତ ବେଗରେ ବଢ଼ିଯାଉଛି ।

ଯେତେବେଳେ ଆମର ପିଲାମାନେ ବ୍ୟାଗ ଧରି ଯିବା କଥା ସେତେବେଳେ ସେମାନେ ମୁଣ୍ଡରେ ଭାର ବୋହି ବିପଦ ସଂକୁଳ ସ୍ଥାନକୁ ଯାଉଛନ୍ତି । ପର୍ବପର୍ବାଣୀରେ ନୂଆ ପୋଷାକ ପିନ୍ଧିବା ପରିବର୍ତ୍ତେ ଚିରାଫଟା ପୋଷାକ ପିନ୍ଧି ଭଲି ଯାଉଛନ୍ତି । ଖେଳିବାରେ ଖେଳିବା ବୟସରେ ସେମାନେ ପରିବାରର ଭରଣପୋଷଣ କରୁଛନ୍ତି । କଲମଧରି ପଢ଼ିବା ବୟସରେ ସେମାନେ ହାତରେ ବିଡ଼ି ବଳୁଛନ୍ତି । ଏହା ସମାଜ ପକ୍ଷରେ ଏକ ଲଜ୍ଜାର ବିଷୟ ।

ଆଜି ଯେଉଁଠି ବୟସ୍କ ଲୋକ ଯାଇ କାମକରି ପାରୁନାହାନ୍ତି, ସେଠାରେ ଶିଶୁ ଶ୍ରମିକମାନେ ନିଯୁକ୍ତ । ନାନା ବିପଦ ସଂକୁଳ ସ୍ଥାନରେ କାମକରି ସେମାନେ ନାନା ରୋଗରେ ପୀଡ଼ିତ । ବିଭିନ୍ନ ଭାବରେ ସେମାନେ ନିର୍ଯ୍ୟାତିତ, ଘୃଣିତ, ନିଷ୍ପେଷିତ ।

ପ୍ରତି ଘରେ ଘରେ ଶିଶୁଶ୍ରମିକ ନିୟୋଜିତ । ପ୍ରତି ଖାଦ୍ୟାଳୟରେ ସେମାନେ କାର୍ଯ୍ୟରତ । ବଡ଼ ବଡ଼କାରଖାନାରେ ସେମାନଙ୍କ ସଂଖ୍ୟାକମ୍ ନୁହେଁ । ସମାଜ ଆଜି ସେମାନଙ୍କୁ ଅତି ହୀନ ଚକ୍ଷୁରେ ଦେଖୁଛି । ସତେ ଅବା ସେମାନେ ସମାଜର ପରିତ୍ୟକ୍ତ ପ୍ରାଣୀ ।

ଏକ ସର୍ବେରୁ ଜଣା ଯାଇଛି ଭାରତରେ ପ୍ରତି ତିନୋଟି ପରିବାରରୁ ଗୋଟିଏ ପରିବାରରେ ଶିଶୁ ଶ୍ରମିକଟିଏ ନିଯୁକ୍ତ । ଦେଶର ସାମଗ୍ରିକ ଉତ୍ପାଦନରେ ଶତକଡ଼ା ୨୦ ଶିଶୁ ଶ୍ରମିକ କାର୍ଯ୍ୟରତ । ୧୯୯୧ ଜନଗଣନାନୁସାରେ ଓଡ଼ିଶାର ଶିଶୁ ଶ୍ରମିକ ସଂଖ୍ୟା ୭ଲକ୍ଷ ୮୨ ହଜାର । ଓଡ଼ିଶାରେ ଶତକଡ଼ା ୪୪.୭ ଭାଗ ଶିଶୁଶ୍ରମିକ ଅଛନ୍ତି । ତା'ତଳକୁ ବିହାର, ମଧ୍ୟପ୍ରଦେଶ, ଉତ୍ତରପ୍ରଦେଶ, ତାମିଲନାଡୁ, ଶିଶୁଶ୍ରମିକଙ୍କ ମଧ୍ୟରୁ ଅଧିକାଂଶ ହରିଜନ, ଆଦିବାସୀ ଶ୍ରେଣୀୟ । ସେମାନଙ୍କ ମଧ୍ୟରୁ ଶତକଡ଼ା ୮୨ ଭାଗ କୃଷିକ୍ଷେତ୍ରରେ, ଶତକଡ଼ା ୧୮ ଭାଗ ଶିଳ୍ପ କ୍ଷେତ୍ରରେ ନିଯୁକ୍ତ ।

ଶିଶୁ ଶ୍ରମିକ ପ୍ରଥା ଏକ ଘୃଣ୍ୟ ପ୍ରଥା । ସମାଜର ଏକ କଳଙ୍କ । ଏହାକୁ ଲୋପ କରିବା ପାଇଁ ସ୍ୱେଚ୍ଛାସେବୀ ସଂଗଠନମାନେ ତତ୍ପର ହେବା ଉଚିତ୍ । ଏଥିପାଇଁ ଜନସଚେତନତା ସୃଷ୍ଟି ହେବା ଦରକାର । ସବୁ ଶିଶୁଙ୍କୁ ସମାନ ଦୃଷ୍ଟିରେ ଦେଖିଲେ ଏପ୍ରଥା ଲୋପହେବ ।

ଶିଶୁ ଉପରେ ଦେଶର ଉନ୍ନତି ନିର୍ଭର କରେ । ଜଣେ ମନିଷୀ କହିଥିଲେ । "Give me the chiled and I will change the nation" ଆମେ ଶିଶୁର ସୁରକ୍ଷା କଲେ ଦେଶର ଭବିଷ୍ୟତ ସୁଦୃଢ଼ କରି ପାରିବା ।

କ୍ୱା.ନଂ - ୨ଆର.ବି. ୧୧/୧,
ୟୁନିଟ - ୮ ଭୁବନେଶ୍ୱର

# କେନ୍ଦୁଝରର ପାରମ୍ପରିକ ଲୋକନୃତ୍ୟ : ପାଇକାଳି

ଡକ୍ଟର କୃତ୍ତିବାସ ନାୟକ

**କେ**ନ୍ଦୁଝର ନାମଟି ଯେଉଳି ପ୍ରାଚୀନ, ଠିକ୍ ସେହିଉଳି ଏହାର ସାଂସ୍କୃତିକ ପରଂପରା ମଧ୍ୟ ଅତି ପ୍ରାଚୀନ । ସାଂସ୍କୃତିକ ବିଭବଶାଳୀ ଏହି କେନ୍ଦୁଝରର ବଣ-ପାହାଡ଼ ଘେରା ପଲ୍ଲୀ ଅଞ୍ଚଳରେ ହୃଷ୍ଟ-ପୁଷ୍ଟ ଅସଂଖ୍ୟ ପାରଂପରିକ ଲୋକନୃତ୍ୟ ସଂପ୍ରତି ତାର ମୌଳିକତାକୁ ହରାଇ ବସିଛି । ସେହିଭଳି ଏକ ଚିତ୍ତାକର୍ଷକ ଲୋକନୃତ୍ୟ ପାଇକାଳିକୁ କେନ୍ଦୁଝରର ଆଭିଜାତ୍ୟ ସଂପନ୍ନ ପାଇକମାନେ ଦିନେ ଆଦରି ନେଇଥିଲେ, ଯାହା ସାଧାରଣ ଜନମାନସକୁ ମନୋରଞ୍ଜନର ଉପଯୁକ୍ତ ଖୋରାକ ଯୋଗାଇ ପାରୁଥିଲା । ଓଡ଼ିଶାର ପାଇକମାନେ କୃଷି କାର୍ଯ୍ୟରେ ଲିପ୍ତଥିବା ସଂଗେ ସଂଗେ ତତ୍‌କାଳୀନ ଶାସକମାନଙ୍କ ତରଫରୁ ରାଜ୍ୟରକ୍ଷା କରିବାର ଦାୟିତ୍ୱ ମଧ୍ୟ ତୁଲାଉଥିଲେ । ଧନୁଶର, ଖଣ୍ଡା ଓ ବର୍ଚ୍ଛା ପ୍ରଭୃତି ଅସ୍ତ୍ରଚାଳନା କରିବାକୁ ପଡୁଥିବାରୁ ଏହି ଅସ୍ତ୍ରର ଶିକ୍ଷା ଓ ସମରାଭ୍ୟାସର ଆବଶ୍ୟକ ପଡୁଥିଲା । ଅବସର ସମୟକୁ ଉପଯୁକ୍ତ ଭାବେ ବିନିଯୋଗ କରିବା ଉଦ୍ଦେଶ୍ୟରେ ମଧ୍ୟ ଏହି (Mock Fight) ଖେଳ ସମର ହେଉଥିଲା । ପରବର୍ତ୍ତୀକାଳରେ ଏହା ଏକ ମାର୍ଜିତ ରୂପ ନେଇ ମନୋରଞ୍ଜକ ଧର୍ମୀ ପାଇକାଳି ନୃତ୍ୟରେ ପରିଣତ ହୋଇଯାଇଥିଲା ।

ଓଡ଼ିଶାର ଉତ୍ତରାଞ୍ଚଳ କେନ୍ଦୁଝର ଓ ମୟୂରଭଞ୍ଜ ହେଉଛି ଦୁଇଟି ଗଡ଼ଜାତ ରାଜ୍ୟ । ଏହି ଦୁଇଟି ପ୍ରାଚୀନ ରାଜ୍ୟର ସଂସ୍କୃତି ଓ କଳା ପ୍ରାୟତଃ ସମାନ । ଏହି ଅଞ୍ଚଳରେ ପାଇକମାନଙ୍କର ସଂଖ୍ୟା ନଗଣ୍ୟ ହୋଇ ଥିବାରୁ ବିଭିନ୍ନ ପାର୍ବତ୍ୟ ଅଞ୍ଚଳରେ ଗଣ୍ଡଜାତିର ଲୋକମାନଙ୍କୁ ପାଇକ ବୃତ୍ତି କରିବାର ସୁଯୋଗ ପ୍ରଦାନ କରାଯାଇଥିଲା ।

ବିଭିନ୍ନ ସଂଜ୍ଞାଧାରୀ ପାଇକମାନଙ୍କ ସମେତ ସ୍ଥାନୀୟ ଆଦିବାସୀ ସଂପ୍ରଦାୟର ଯୁଦ୍ଧପ୍ରିୟ ବୀରମାନେ ଏହାକୁ ଆଦରି ନେଇ ସାମୟିକ ନୃତ୍ୟ-ସଂଗୀତରେ ମାତି ଉଠୁଥିଲେ । ସାଧାରଣତଃ ରାଜାମାନଙ୍କର ଆଗମନ କାଳରେ ଆବଶ୍ୟକ ହେଉଥିବା ଅଭିନନ୍ଦନ ନୃତ୍ୟ ପାଇଁ ଏମାନେ ସର୍ବଦା ପ୍ରସ୍ତୁତ ହୋଇ ରହୁଥିଲେ । ରାଜାଙ୍କର ଶିକାର କାଳରେ ଏବଂ ଦଶହରା ମେଳଣ ସମୟରେ ମଧ୍ୟ ଏମାନେ ସମର ରସପୂର୍ଣ୍ଣ ନୃତ୍ୟ ପରିବେଷଣ କରି ଦେଖଣାହାରୀଙ୍କର ମନୋରଞ୍ଜନ କରିପାରୁଥିଲେ ।

ନୃତ୍ୟରତ ଶିଳ୍ପୀମାନେ ହସ୍ତରେ କଙ୍କଣ, ମଥାରେ ପାଗ, କର୍ଣ୍ଣରେ କୁଣ୍ଡଳ, କଟିରେ ଘଣ୍ଟ, କପାଳରେ ସିନ୍ଦୁର ଟିକା ଏବଂ ରଂଗବେରଂଗ ବସ୍ତ୍ର ଦ୍ୱାରା ଭୂଷିତ ହେଉଥିଲେ । ସେମାନେ ବାମ ହସ୍ତରେ ଢ଼ାଲ ଏବଂ ଦକ୍ଷିଣ ହସ୍ତରେ ଦୀର୍ଘ ଖଣ୍ଡା ଧାରଣ ପୂର୍ବକ ବୀରରସରେ ସିକ୍ତ ହୋଇ ଗାଇ ଉଠନ୍ତି :-

"ଝାଲୁମେ ଡାବୁ ଘଣ୍ଟି,
ବାହାମେ ବାପ ମୁହିଁ ବାନ୍ଧୁନି,
ପାଦେ ପାମେରୀ କୁନୁଝୁନୁ ବାଜେ,
ସିପାଂ ମିରିଗା- କନ୍ଧେ ବିରାଜେ ।
ଅଖଣ୍ଡ ବିଭୂତି କପାଳକୁ ସାଜେ ।"

ବଦର ନାମକ ଲୌହ ନିର୍ମିତ ଅସ୍ତ୍ରଟିଏ ଏହି ନୃତ୍ୟରେ ବ୍ୟବହାର କରାଯାଏ । ବଦର ହେଉଛି - ଶାବଳ ଭଳି ମଜବୁତ ଅସ୍ତ୍ର । ଏହାର ଅଗ୍ରଭାଗ ସର୍ପଫଣା ସଦୃଶ ବକ୍ର ଏବଂ ତୀକ୍ଷ୍ଣ । ମୁଖ୍ୟତଃ ରାଜାମାନଙ୍କର ରାଜ୍ୟ ଭ୍ରମଣ କାଳରେ ପାଇକାଳି ନୃତ୍ୟଶିଳ୍ପୀମାନେ ନିଜର ବୀରତ୍ୱ ପ୍ରଦର୍ଶନ କରି ଏହି ବଦର ଅସ୍ତ୍ର ଦ୍ୱାରା ରାଜାଙ୍କ ହସ୍ତୀର ପଥରୋଧ କରିଥାନ୍ତି । ଫଳ ସ୍ୱରୂପ ବୀର ପାଇକଙ୍କୁ ରାଜା ପୁରସ୍କୃତ କରିଥାନ୍ତି । ପ୍ରତିଦାନରେ ପାଇକାଳି ନୃତ୍ୟରତ ଶିଳ୍ପୀମାନେ ରାଜାଙ୍କ କୀର୍ତ୍ତି ବର୍ଣ୍ଣନା କରି ଅଭିନନ୍ଦନ ଜଣାନ୍ତି । ଯଥା - " ବୀର ଶ୍ରୀ ଗଜପତି ଗଜଗଣ୍ଡେଶ୍ୱର, ଅଖଣ୍ଡ ମହୀମଣ୍ଡଳ - ଉଟାଟ କଳେବର ।" ଇତ୍ୟାଦି

ଦୁର୍ଗାପୂଜା ସମୟରେ ପାଇକାଳି ନୃତ୍ୟ ଶିଳ୍ପୀମାନେ ରାଜଦଳ ଖଡ଼୍‌ଗ, ବଦର, ଧନୁ, ବନ୍ଧୁକ ପ୍ରଭୃତି ଅସ୍ତ୍ର ଓ ଢ଼ାଲକୁ ପୂଜା କରି ବଳି ଦେଇଥାନ୍ତି । ଏ ସମସ୍ତ ଖର୍ଚ୍ଚ ରାଜାଙ୍କଠାରୁ ପ୍ରାପ୍ତ ହୋଇଥାଏ । ଦଶହରା ଦିନ ଅପରାହ୍ନରେ ଶିଳ୍ପୀମାନେ ନିଜର ଅସ୍ତ୍ରଶସ୍ତ୍ରଧାରଣ ପୂର୍ବକ ବୀରରସପୂର୍ଣ୍ଣ ସଂଗୀତ ସହ ନିଜର ବୀରତ୍ୱପୂର୍ଣ୍ଣ କଳା ପ୍ରଦର୍ଶନ ଆରମ୍ଭ କରନ୍ତି ଯଥା :-

"ଗାଙ୍ଗେଗଣପତି ଭଦ୍ର କାଳିକା,
ପରଙ୍କେ ପାର୍ବତୀ ରହିଛି ଏକା ।
ଗଣ୍ଡାରେ ବ୍ରହ୍ମା କରିଛନ୍ତି ଘର,
ଅଭୟ ଅଛି, ଅଭୟ ପଞ୍ଜିର,
ଆହୁତି ପରେ ବାଉଟି ଅଛି
ସିଂହଦ୍ୱାରେ ସିଂହ ବାହିନୀ ରହିଛି ।

ମଥାରେ ରହିଛି ରାହୁ,

ଏତେ ବୋଲି ଖଣ୍ଡା ଉଞ୍ଚୁରିଯାଉ ।"

ଏହାପରେ ଦର୍ଶକମାନଙ୍କ ସମ୍ମୁଖରେ ସେମାନେ ଲାଖବିନ୍ଧା ପ୍ରଦର୍ଶନ କରନ୍ତି । ବିଜୟୀ ଧନୁର୍ଦ୍ଧାରୀଙ୍କ ମଥାରେ ରାଜବର ପାଟଶାଢ଼ୀ ବନ୍ଧାଯାଏ ।

ପାଇକାଳି ନୃତ୍ୟର ଅନ୍ୟ ଏକ ମୁଖ୍ୟ ଅବସର ହେଉଛି - ମକରମେଳା । ଏଥିପାଇଁ ପୂର୍ବରୁ ସ୍ଥାନୀୟ ଆଖଡ଼ାରେ ଗୁରୁ ବିଭିନ୍ନ ଯୁଦ୍ଧ କୌଶଳ ଶିକ୍ଷା ଦେଇଥାନ୍ତି । ଆଖଡ଼ାରେ ପ୍ରଥମେ କାଠିଖେଳ ଏବଂ ପରବର୍ତ୍ତୀକାଳରେ ଖଣ୍ଡା ଓ ଢାଲ ଦ୍ୱାରା ଯୁଦ୍ଧର ବିଭିନ୍ନ କୌଶଳ ପ୍ରଭୃତି ଶିକ୍ଷାଦାନ କରାଯାଏ ।

ପାଇକାଳି ନୃତ୍ୟ ଦଳର ବିଶ୍ୱାସ ଯେ, ଗ୍ରୀଷ୍ମକାଳର ପୂର୍ଣ୍ଣିମାର ଶୁକ୍ଳପକ୍ଷକୁ ପୂଜା କଲେ, ଶିଷ୍ୟମାନେ ସେମାନେ ସେହି ବେଶରେ ନିଜ ଶରୀରକୁ ତଥା ନିଜର ଅସ୍ତ୍ରଶସ୍ତ୍ରକୁ ସଂଚାଳନ କରିପାରିବେ । ତେଣୁ ଏହି ନୃତ୍ୟଶିକ୍ଷା ଖଣ୍ଡିଆ ଭୂତରେ ପୂଜୁଥିବା ପକ୍ଷପୂଜା ହିଁ ଆରମ୍ଭ ହେଉଥିଲା । ନାଗରା ଓ ସାହାନାଇ ବାଦନର ତାଳେ ତାଳେ ନୃତ୍ୟକାରୀମାନେ ଏକ ଅପୂର୍ବ ଉନ୍ମାଦନା ଆଚରଣ କରନ୍ତି । ବରପକ୍ଷୀ ଖଚିତ ନୂତନ ଟୋପି ପରିଧାନ କରି ନୃତ୍ୟ ଶିକ୍ଷା ଆରମ୍ଭ କରନ୍ତି । ଏହି ନୃତ୍ୟଶିକ୍ଷା ପାଇଁ ଗ୍ରାମ୍ୟଯୁବକମାନଙ୍କ ମଧ୍ୟରେ ସ୍ୱୟଂ ପ୍ରବଳ ଆଗ୍ରହ ତଥା ପ୍ରତିଯୋଗିତା ମନୋଭାବ ଜାଗ୍ରତ ହେଉଥିଲା । ସେହିଭଳି ଏହି ନୃତ୍ୟରେ ବ୍ୟବହୃତ ବାଦ୍ୟ ଓ ସାହାନାଇ ବାଦକ କ୍ଷେତ୍ରରେ ପାରଦର୍ଶିତା ଲାଭ କରିବାକୁ ପଡୁଥିଲା ।

ଯଦିଓ ରାଜାମାନଙ୍କ ଦ୍ୱାରା ଏହି ନୃତ୍ୟ ପୃଷ୍ଠପୋଷକତା ଲାଭ କରୁଥିଲା, ତଥାପି ବିଭିନ୍ନ ସଂପ୍ରଦାୟର ବିବାହ ଉତ୍ସବକୁ ପାଇକାଳି ନୃତ୍ୟଦଳକୁ ଆମନ୍ତ୍ରଣ କରାଯାଉଥିଲା । ସେଥିରୁ ନୃତ୍ୟଦଳ ଆର୍ଥିକ ଏବଂ ମାନସିକ ସହଯୋଗ ଲାଭ କରୁଥିଲେ । କୁର୍ମି ସଂପ୍ରଦାୟର କଳାପ୍ରେମୀ ଲୋକ ଥିଲେ, ଏହି ନୃତ୍ୟର ମୁଖ୍ୟ ପୃଷ୍ଠପୋଷକ ।

କାଳର କରାଳ ଗତିରେ ପ୍ରତ୍ୟେକ ପଦାର୍ଥର ପରିବର୍ତ୍ତନ ଘଟେ । ସଂସ୍କୃତିର ବିଘଟନ ହୁଏ, ଅସଂଖ୍ୟ କଳାକୃତି ଭଗ୍ନ ସ୍ତୂପରେ ପରିଣତ ହୋଇଯାଏ । ଅନେକ ଲୋକକଳା ଅବଲୁପ୍ତ ହୁଏ । କେତେକର ରୂପାନ୍ତର ଘଟି, ଅନ୍ୟ ଏକ ନୂତନ ପରିଚୟନେଇ ଉନ୍ନତମାନର କଳାଭାବେ ଉଚ୍ଚ ଆସନ ମାଡିବସେ । ଏହାହିଁ ପ୍ରକୃତିର ନିୟମ ।

କେନ୍ଦୁଝରର ଲୋକନୃତ୍ୟ ପାଇକାଳି କ୍ଷେତ୍ରରେ ମଧ୍ୟ ତାହା ହିଁ ଘଟିଯାଉଛି । ସଂପ୍ରତି କେତେକ ବରିଷ୍ଠ କଳାକାରଙ୍କ ବ୍ୟତୀତ ଅନ୍ୟମାନେ 'ପାଇକାଳି' ଯେ ଏକ ନୃତ୍ୟ ଥିଲା, ଏକଥାକୁ ମଧ୍ୟ ଭୁଲିଗଲେଣି । କଳା ବଞ୍ଚେ, ପ୍ରେରଣା ଏବଂ ପୃଷ୍ଠପୋଷକତାର ପୃଷ୍ଠଭୂମିରେ । ଯାହା ଦିନେ ମାନବ ସମାଜକୁ ମନୋରଞ୍ଜନ ଯୋଗାଉଥିଲା, ଶାସକମାନଙ୍କୁ ସୁରକ୍ଷା ଦେଉଥିଲା; ତାର କ୍ରମକ୍ଷୟଯଷ୍ଟି ବିବର୍ତ୍ତନ, କାଳର ସମାଧି ଭିତରକୁ ଟାଣି ନେଉଛି । ପାଇକାଳି ସଂପ୍ରତି ଲୁପ୍ତପ୍ରାୟ । କେତେକ ମତ ଦିଅନ୍ତି, ଛଉନୃତ୍ୟ ହେଉଛି - ବୀରରସପୂର୍ଣ୍ଣ ପାଇକାଳିର ମାର୍ଜିତ ରୂପ । ଛଉ ନୃତ୍ୟର ଆଦର ବୃଦ୍ଧି ଫଳରେ ପାଇକାଳି ନିଜର ପ୍ରାଧାନ୍ୟ ବଜାୟ ରଖି ପାରି ନ ଥିଲା । ସେ ଯାହା ହେଉ, ଲୁପ୍ତପ୍ରାୟ ଏହି ଲୋକନୃତ୍ୟ ଭରତ ଓଡ଼ିଶା ସଂସ୍କୃତିକୁ ଯେ ଗରିମାନ୍ତ କରିଛି, ଏକଥାକୁ କେହି ଅସ୍ୱୀକାର କରି ପାରିବେ ନାହିଁ ।

ପ୍ରୋଗ୍ରାମ ଏକ୍‌ଜିକ୍ୟୁଟିଭ
ଆକାଶବାଣୀ, କେନ୍ଦୁଝର

---

## ବନ ବିଭାଗର ମୁଖ୍ୟ ଦପ୍ତର 'ଅରଣ୍ୟ ଭବନ' ମୁଖ୍ୟମନ୍ତ୍ରୀଙ୍କ ଦ୍ୱାରା ଉଦ୍‌ଘାଟିତ

ରାଜ୍ୟରେ ଜଙ୍ଗଲ ସଂପଦର ସୁରକ୍ଷା ଓ ଅଭିବୃଦ୍ଧି ପାଇଁ ଜଙ୍ଗଲ ବିଭାଗର କର୍ମଚାରୀମାନେ ନିଷ୍ଠାପର ଉଦ୍ୟମ କରିବା ପାଇଁ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ପରାମର୍ଶ ଦେଇଛନ୍ତି ।

ଗତ ଏପ୍ରିଲ ୭ ତାରିଖରେ ଚନ୍ଦ୍ରଶେଖରପୁର ଠାରେ ବନ ବିଭାଗର ମୁଖ୍ୟ କାର୍ଯ୍ୟାଳୟର ନବନିର୍ମିତ ସୁରମ୍ୟ ପ୍ରାସାଦ 'ଅରଣ୍ୟଭବନ' ଉଦ୍‌ଘାଟନ କରି ମୁଖ୍ୟମନ୍ତ୍ରୀ କହିଲେ ଯେ, ରାଜ୍ୟର କ୍ଷୟଗ୍ରସ୍ତ ଜଙ୍ଗଲକୁ ପୁଣି ପୂର୍ବାବସ୍ଥାକୁ ଫେରାଇ ଆଣିବାପାଇଁ କାର୍ଯ୍ୟକ୍ରମ ଗ୍ରହଣ କରାଯିବ । ଓଡ଼ିଶାରେ ଜଙ୍ଗଲ ପରିମାଣ ଭୌଗୋଳିକ ଆୟତନର ଶତକଡ଼ା ୩୬ ଭାଗ ବୋଲି କୁହାଯାଉଥିଲେ ହେଁ ପ୍ରକୃତ ଘଂଚ ଜଙ୍ଗଲର ପରିମାଣ ୧୬ ଭାଗରୁ ଅଧିକ ହେବ ନାହିଁ, ଏହାକୁ ଅଧିକ ବଢ଼ାଯାଇପାରିଲେ ରାଜ୍ୟର ଐଶ୍ୱର୍ଯ୍ୟ ବୃଦ୍ଧି ହେବା ସଙ୍ଗେ ସଙ୍ଗେ ଆଦର୍ଶ ପରିବେଶ ସୃଷ୍ଟି ହେବ ବୋଲି ସେ କହିଥିଲେ ।

ମୁଖ୍ୟମନ୍ତ୍ରୀ କହିଲେ ଯେ, ଜଙ୍ଗଲକୁ ଆଧାର କରି ଭାରତବର୍ଷର ସଂସ୍କୃତି ଗଢ଼ା ହୋଇଛି । ବୈଦିକ ଯୁଗ ପରେ ମନ୍ତ୍ରଦ୍ରଷ୍ଟା ଓ ଦାର୍ଶନିକମାନେ ଜଙ୍ଗଲ ମଧ୍ୟରେ ହିଁ ଆରଣ୍ୟକ ଓ ଉପନିଷଦ ଆଦି ରଚନା କରିଛନ୍ତି । ପୃଥିବୀ, ଜଳ, ବାୟୁଆଦି ପ୍ରକୃତି ଓ ପରିବେଶର ସମସ୍ତ ବିଭାଗକୁ ବୃକ୍ଷଲତା ନିୟନ୍ତ୍ରିତ କରିଥାନ୍ତି ।

ମୁଖ୍ୟମନ୍ତ୍ରୀ ଶ୍ରୀ ପଟ୍ଟନାୟକ କହିଲେ ଯେ, ଜଙ୍ଗଲ ସଂପଦର ସୁରକ୍ଷା ଦିଗରେ ରାଜ୍ୟରେ ଭଲ କାମ ହୋଇଛି । ଚନ୍ଦକାର ଉଚ୍ଚତା ଜଙ୍ଗଲ ବର୍ତ୍ତମାନ ଘଂଚ ଅରଣ୍ୟାନୀରେ ପରିଣତ ହେଲାଣି । ଏଠାରେ ହସ୍ତୀ ସଫାରୀ ପ୍ରତିଷ୍ଠା ଦିଗରେ ଓଡ଼ିଶା ସାରା ଭାରତବର୍ଷରେ ପ୍ରଥମ । ବୃକ୍ଷରୋପଣ ଅପେକ୍ଷା ପୁରୁଣା ଜଙ୍ଗଲର ନବୀକରଣ ଉପରେ ଅଧିକ ପ୍ରାଧାନ୍ୟ ଦେବାପାଇଁ ମୁଖ୍ୟମନ୍ତ୍ରୀ ପରାମର୍ଶ ଦେଇ ସମ୍ପୃକ୍ତ ଲୁଚେ ଲୁଚେ ଘନଜଙ୍ଗଲର ଜଙ୍ଗଲ ସୃଷ୍ଟି କରାଗଲେ ତାହା ଉପକୂଳବର୍ତ୍ତୀ ଅଂଚଳର ଲୋକଙ୍କୁ ବାତ୍ୟାରୁ ସୁରକ୍ଷା ଦେଇପାରିବ ବୋଲି ମତବ୍ୟକ୍ତ କରିଥିଲେ । ଗ୍ରାମ୍ୟ ଜଙ୍ଗଲର ଉନ୍ନତି ପରିଚାଳନା ପାଇଁ ଏହାର ମାଲିକାନା ଦାୟିତ୍ୱ ଗ୍ରାମବାସୀମାନଙ୍କ ଉପରେ ନ୍ୟସ୍ତ ରହିବ ଏବଂ ବନବିଭାଗର କର୍ମଚାରୀମାନଙ୍କର ନ୍ୟାୟୋଚିତ ଦାବୀ ପୂରଣ କରିବା ପାଇଁ ସରକାର ପ୍ରସ୍ତୁତ ବୋଲି ସେ ପ୍ରକାଶ କରିଥିଲେ ।

ଉତ୍ସବରେ ରାଜ୍ୟ ଜଙ୍ଗଲ ଓ ସାଧାରଣ ଉଦ୍ୟୋଗ ମନ୍ତ୍ରୀ ଶ୍ରୀ କିଶୋର ଚନ୍ଦ୍ର ପଟେଲ ଅଧ୍ୟକ୍ଷତା କରିଥିଲେ ଏବଂ ବିଭାଗୀୟ ଶାସନ ସଚିବ ଶ୍ରୀ ଅରବିନ୍ଦ ବେହେରା ସ୍ୱାଗତ ଭାଷଣରେ ବନ ବିଭାଗର କାର୍ଯ୍ୟକ୍ରମ ସଂପର୍କରେ ସୂଚନା ଦେଇଥିଲେ । ମୁଖ୍ୟମନ୍ତ୍ରୀ ଶ୍ରୀ ପଟ୍ଟନାୟକ ବନ ବିଭାଗ ଦ୍ୱାରା ପ୍ରକାଶିତ 'ୱାଇଲଡ୍ ଲାଇଫ ଷ୍ଟେଟସ ଅଫ ଓଡ଼ିଶା' ଶୀର୍ଷକ ଏକ ପୁସ୍ତକ ଉନ୍ମୋଚନ କରିଥିଲେ । ପ୍ରଧାନ ମୁଖ୍ୟ ବନ ସଂରକ୍ଷକ ଚୌଧୁରୀ ଗୌରହରୀ ମିଶ୍ର ଧନ୍ୟବାଦ ଅର୍ପଣ କରିଥିଲେ । ୪୫୦୦୦ ବର୍ଗଫୁଟ ଆୟତନ ବିଶିଷ୍ଟ ଏହି ଚାରି ମହଲା ପ୍ରାସାଦର ନିର୍ମାଣ ଓ ଅଭ୍ୟନ୍ତରୀଣ ସାଜସଜ୍ଜାରେ ମୋଟ ୩ କୋଟି ୧୨ ଲକ୍ଷ ଟଙ୍କା ଖର୍ଚ୍ଚ ହୋଇଛି । ଏହି ଦାୟିତ୍ୱ ଇନ୍‌କୋ ଉପରେ ନ୍ୟସ୍ତ କରାଯାଇଥିଲା ।

# ଅନେକ ସ୍ୱପ୍ନର ଝର : ଦେଉଳଝରୀ

ଡକ୍ଟର ଶୁଭେନ୍ଦୁ ମୋହନ ଶ୍ରୀଚନ୍ଦନସିଂହ

**ରଂଗଭୂମି : ଅଷ୍ଟମଲ୍ଲଙ୍କର ;**

ଛବିଳ ଉତ୍କଳେ ମଂଜୁଳବିପଣୀ
ଅଷ୍ଟମଲ୍ଲ ରଂଗଭୂମି,
ଦ୍ୱାରପାଳ ଯା'ର ନୀଳ ଶୈଳମାଳ
ସୁନୀଳ ଅଂବରଚୁମୀ'' । (୧)

ଆଜିର ଆଠମଲ୍ଲିକ ଦିନେ ଅଷ୍ଟମଲ୍ଲିକ, ମଲ୍ଲପୁର ଥିଲା । ଅଷ୍ଟମଲ୍ଲ କହିଲେ କଂସ ରାଜାର ମଲ୍ଲବୀରମାନଙ୍କ କଥା ସ୍ମୃତିକୁ ଆସେ । ସେ ପୁରାଣର କଥା । ଇଏ ଇତିହାସର । ସିଏ ମଥୁରାର । ଇଏ ଓଡ଼ିଶାର । ଅଷ୍ଟମଲ୍ଲଂକୁ ପରାସ୍ତ କଲେ ପ୍ରତାପ ଦେଓ । ମହାନ ପ୍ରତାପୀ । କଦଂବ ବଂଶୀ । କଦଂବମାନେ ଦକ୍ଷିଣରୁ ଆସି ଥିବା କୁହାଯାଏ । ଓଡ଼ିଶାରେ ବାଣାସୁରର ରାଜ୍ୟ ବଣେଇ, ପଂଚଖଂଡା ରାଜ୍ୟ ରେଢ଼ାଖୋଲ ଓ ପଂଚଧାର ରାଜ୍ୟ ଆଠମଲ୍ଲିକରେ କଦଂବମାନେ ରାଜୁତି କରୁଥିଲେ ।

ଉତ୍କଳର ପ୍ରକୃତି ଛବିଳ । ଆଠମଲ୍ଲିକ ପ୍ରକୃତିର ଚାରୁ ଚିତ୍ରଶାଳା । ଏମିତି ସୁନ୍ଦର ଭୂଇଁ ଜଗତେ କୋଉଠି ନାହିଁ । ଦେଖିଲେ ପେଟ ପୂରିଯିବ । ମନ ଉଡ଼ିଯିବ ଅପୂର୍ବ କଳ୍ପନାରେ । ଏହାର ମନୋଜ୍ଞ ଚିତ୍ର ବର୍ଣ୍ଣିତ ହୋଇଛି ପଂଚଧାର (୨), ଆଠମଲ୍ଲିକ ଅନୁଭୂତି (୩), ଶିଶୁବିଦ୍ରୋହ ଗାଥା (୪) ପ୍ରଭୃତି ଅନେକ ଗ୍ରନ୍ଥରେ । ଏ ଗ୍ରନ୍ଥରାଜିର ମହାନ୍ ବିଦ୍ୱାନମାନେ ଆଠମଲ୍ଲିକ ମଂଜୁଳ ପ୍ରକୃତିର ଜୟଗାନରେ ମୁଖର ହୋଇଉଠିଛନ୍ତି । ପୁରାଣ ଯୁଗରେ ବଳରାମ ଦାସଂକ ରାମାୟଣ ଅଯୋଧ୍ୟା କାଣ୍ଡରେ ଓ ମହାଭାରତରେ ମଧ୍ୟ ଆଠମଲ୍ଲିକର ବର୍ଣ୍ଣନା ଅଛି । ସେତେବେଳେ ଏହାଥିଲା-ମହୋଦରପୁର ।

ପୌରାଣିକ ଆଠମଲ୍ଲିକର ସୀମାରେଖା ସମୟ କେବେ ଲିଭେଇ ଦେଇଗଲା । ଇତିହାସ ତା'ର ଏବେ ବି ପରିଚ୍ଛନ୍ନ ନୁହେଁ । ଆଜି ଭୌଗୋଳିକ ସୀମାରେଖା ଖୋଜିଲେ ଦିଶେ ଦକ୍ଷିଣରେ ସୁରେଶ୍ୱରୀ ପର୍ବତମାଳା । ଦେବୀ ସୁରେଶ୍ୱରୀ ଏହାର ଶିଖର ସୀମାରେ ମା ଭୈରବୀ ରୂପେ ଉଚାରଣ କରୁଛନ୍ତି । ସୁରେଶ୍ୱରୀ ଜଳପ୍ରପାତ ଓ ସୁରେଶ୍ୱରୀ ଝରଣା ଏହାଙ୍କ ଆଶୀର୍ବାଦ ।

ଉତ୍ତର ସୀମାରେ ମହାନଦୀ । ଜନିର ଗଙ୍ଗା । ଏହାର ତୀରଦେଶରୁ ଅଳ୍ପ ଉତ୍ତରକୁ ପଞ୍ଚଧାର । ଆଠମଲ୍ଲିକ ଏକ ବିସ୍ତୀର୍ଣ୍ଣ ଉପତ୍ୟକା । ବିଭିନ୍ନ ଜାଗାରେ ଛୋଟ ବଡ଼ ପାହାଡ଼ । କୁହାଯାଏ ପଞ୍ଚପାଣ୍ଡବ ଏ ଭୂଇଁରେ କାଟିଥିଲେ ସେମାନଙ୍କ ବନବାସୀ ଜୀବନ । ତୃଷାର୍ତ୍ତ ପାଣ୍ଡବମାନଙ୍କ ତୃଷା ନିବାରଣ ପାଇଁ ପଞ୍ଚଧାର ସୃଷ୍ଟି ହୋଇଥିଲା । ଅନ୍ୟ କିଂବଦନ୍ତୀ କହେ ଯେ ଶ୍ରୀକୃଷ୍ଣଙ୍କ ତୃଷାକୁ ପରିତୃପ୍ତ କରିବା ପାଇଁ ଅର୍ଜ୍ଜୁନ ଶର ସନ୍ଧାନ କରନ୍ତି । ଗଙ୍ଗା ପଞ୍ଚଧାରରେ ପ୍ରବାହିତ ହୁଅନ୍ତି । ସେଇ ପଞ୍ଚଧାରକୁ ବୋହି ଚାଲିଚି ପର୍ବତ ପଞ୍ଚଧାର କାଳ କାଳ ଧରି ।

**ଲୋକଶ୍ରୁତି ଓ ଐତିହାସିକତାର ଗନ୍ତାଘର :**

ପ୍ରକୃତି ଯେମିତି ଆଠମଲ୍ଲିକ ଦେହରେ ନାନା ରଙ୍ଗର ତୁଳୀ ମାରିଚି; ଲୋକଶ୍ରୁତି, କିମ୍ବଦନ୍ତୀ ଓ ଐତିହାସିକ କୀର୍ତ୍ତିରାଜି ଏହାକୁ ସେମିତି ମହିମାମଣ୍ଡିତ କରିଚି । ସେମିତି ରହସ୍ୟମୟତା ଓ ପାବନତାରେ ଅଭିମଣ୍ଡିତ କରିଚି । କୁହାଯାଏ କୌଣସି ଏକ ନିର୍ଜ୍ଜନ ରାତିରେ ହରପାର୍ବତୀ ଆସିଥିଲେ ପୃଥିବୀ ଭ୍ରମଣରେ । ସେତିକିବେଳେ ଦେବୀଙ୍କ କପାଳରୁ ନିର୍ଗତ ହେଲା ସ୍ୱେଦ । ସେଇ ସ୍ୱେଦବିନ୍ଦୁ ତଳେ ପଡ଼ି ସୃଷ୍ଟି ହେଲା ସୁରେଶ୍ୱରୀ ଝରଣା ଆଉ ଦେବୀ ସୁରେଶ୍ୱରୀ ସେଇ ସ୍ମୃତିର ସ୍ମାରକୀ । ସେମିତି ନଟିକେତାଙ୍କ କଳ୍ପସ୍ଥଳୀ ଆଜିର 'ନାକ୍ଟି' ଓ ଉଦ୍ଦାଳକଂକ ଆଶ୍ରମସ୍ଥଳୀ ଆଜିର 'ଉଡ଼ଲ' ।

ଏହାର ପଥରଗଡ଼ର କାହାଣୀ ଏବେ ବି ଅନାବିଷ୍କୃତ । 'ଯୋଗୀପଥର' ଗାଁ ତ ଯୋଗୀ ମାନଙ୍କ ତପସ୍ୟା କାହାଣୀ କହିଚାଲିଚି । 'ଭୀମବସା ପର୍ବତ' ଭୀମପୀଢ଼', 'ଭୀମରୋଡ଼ି', 'ଭୀମଲଙ୍ଗଳ, ଭୀମପାଦ', 'ପଞ୍ଚମହଲା', 'ପଞ୍ଚବଉଣି', 'କୁଟଗାଁ' ପଞ୍ଚକୂଳ ପାଇଁ କୂଳ)ପଂଧୋଉ ପ୍ରଭୃତି ପଞ୍ଚିକକୁ ନେଇଯାଆନ୍ତି ସେଇ ସୁଦୂର ଅତୀତକୁ ଯୋଉଠି ସେ କଳ୍ପନାରେ ଭେଟେ ପାଣ୍ଡବ ରାଜକୁମାର ଓ ଦେବୀ ଦ୍ରୌପଦୀଙ୍କି । ଏମିତି ହଜାର ଲୋକଶ୍ରୁତି । ହଜାର ହଜାର ସ୍ମୃତି ।

**ସହସ୍ର ସ୍ୱପ୍ନର ଝର :**

ତା' ନାଁ 'ଦେଉଳଝରୀ' । କେହି କେହି କହନ୍ତି 'ଦଉଳଝର' । କେତେ ନା କେତେ କାହାଣୀ ପିଠିରେ ତା'ର । ସମୟ ପ୍ରଷ୍ଠ ପ୍ରଷ୍ଠ କରି ଲେଖି ଯାଉଚି ସହସ୍ର ସ୍ୱପ୍ନ ଏହାରି ପିଠିରେ । ଲେଖିଚି ଲିଭେଇଚି । ଲେଖିବା ଓ ଲିଭାଇବାର ଏକସ୍ରୋତ ବହି ଚାଲିଚି ଅନେକ କାଳରୁ । ପୁରୁଷ ପୁରୁଷ ଧରି ବହିଆସିଚି ସେ ଧାରା । ବାପା, ଜେଜେ, ନାତି । ନୂଆ ମଣିଷ

ସେ କାହାଣୀ ଶୁଣେ । ଚମକିତ ହୁଏ । ହାତଯୋଡେ ସେ ମାଟିକି । ଧୂଳି ତା'ର ମୁଣ୍ଡରେ ମାରେ ।'

**ଉଷ୍ଣ ପ୍ରସ୍ରବଣ ଓ ବୈଚିତ୍ର୍ୟ :**

ଓଡ଼ିଶାରେ ତିନୋଟି ଜାଗା ଉଷ୍ଣ ପ୍ରସ୍ରବଣ ପାଇଁ ପ୍ରସିଦ୍ଧ । ତପ୍ତପାଣି ଗଞ୍ଜାମର । ଅତ୍ରି ଖୋର୍ଦ୍ଧାର । ତୃତୀୟଟି ଏଇ ଦେଉଳଝରୀର । ଅନ୍ୟ ଦୁଇଟି ଲୋକମାନଙ୍କ ଭିତରେ ଖୁବ୍ ପରିଚିତ । ସେଠାକୁ ଯିବାପାଇଁ ସୁନ୍ଦର ରାଜପଥ ରହିଛି । ପର୍ଯ୍ୟଟନ କ୍ଷେତ୍ରଭାବେ ପର୍ଯ୍ୟଟନ ମାନଚିତ୍ରରେ ଚିହ୍ନିତ । ଦେଉଳଝରୀର ସେ ସୌଭାଗ୍ୟ ହୋଇନି । ପଞ୍ଚଧାରର ଅନ୍ତରାଳରେ ଲୁଚି ଯାଉଛି ସେ । ଏଠାକୁ ଯିବାପାଇଁ ସେଭଳି ମୁଖ୍ୟ ରାସ୍ତା ନାହିଁ । ପାଖ ଆଖରେ ସେଭଳି ଇଣ୍ଡଷ୍ଟ୍ରିଆଲ୍ କମ୍ପ୍ଲେକ୍ସ ନାହିଁ । ଖଣି ଖାଦାନ ବି ନାହିଁ । ବେଦବ୍ୟାସର ପ୍ରସିଦ୍ଧି ଥିଲା । ରାଉରକେଲା ହେଲା । ବେଦବ୍ୟାସର ମହିମା ବହୁଳ ପ୍ରଚାରିତ ହେଲା । ଅବଶ୍ୟ ଆମର ଖୁବ୍ ସେଭଳି ପର୍ଯ୍ୟଟନ ବାତାବରଣ ସେଠି ତଥାପି ପ୍ରସ୍ତୁତ ହୋଇନି ।

ଏହାର ଉଷ୍ଣ ପ୍ରସ୍ରବଣ ବହୁଧାର । କୁହାଯାଏ ଏଠାରେ ଚଉରାଶୀଟି କୁଣ୍ଡ ଥିଲା । ସବୁ କୁଣ୍ଡରେ ବନ୍ଦୀ କରାଯାଇଥିଲା ଗୋଟେ ଗୋଟେ ଧାରକୁ । ହିନ୍ଦୁମାନେ ବିଶ୍ୱାସ କରନ୍ତି ଚଉରାଶୀ କର୍ମରେ । କୁହାଯାଏ ଏଇ କୁଣ୍ଡଗୁଡ଼ିକରେ ସ୍ନାନ କରି ପାରିଲେ ସମସ୍ତ ପାପ ପ୍ରକ୍ଷାଳିତ ହୋଇଯାଏ । ଲେଖିଛନ୍ତି କବିବର ରାଧାନାଥ :

''ପଞ୍ଚଧାର ଜଳ ବେଦ-କେଳି ମଞ୍ଜରୀ
କେତକୀ ନିକୁଞ୍ଜେ ଯା'ର ଝରଇ ଅଦୂରେ
ତପ୍ତପୂତ ପ୍ରସ୍ରବଣ ରୁଦ୍ର ଅଧିଷ୍ଠାନେ
ଏ ଆଦି ବିଶାଳ ଶୃଙ୍ଗ କୂଳେ ବିରାଜିତ
ଉତ୍କଳ-କଳିଙ୍ଗ ବପୁ ମଣ୍ଡିଚି ଶିଖରୀ
ମଧ୍ୟେ ଦ୍ୱିଖଣ୍ଡିତ ହୋଇ ଏହି ଦେବ ଖାତେ
ଅନ୍ତ୍ରିକ ବଚନେ ସର୍ବେ ସେହି ପୂତନୀରେ
ଅବଗାହି ଭକ୍ତି ଭାବେ ଦେଲେ ଜଳାଞ୍ଜଳି
ପିତୃଲୋକେ, ସେ ବିକଟ ସଙ୍କଟୁ ବାହାରି
ଚାଲିଲେ-କାଂତର୍ଯ୍ୟ ପଥେ ପଶ୍ଚିମାଶା ମୁଖେ ।(୪)''

କିମ୍ବଦନ୍ତୀ କହେ ସ୍ୱର୍ଗାରୋହଣ ବେଳେ ପାଣ୍ଡବମାନେ ଦେଉଳଝରୀ ପବିତ୍ର କୁଣ୍ଡଗୁଡ଼ିକରେ ସ୍ନାନ କରିଥିଲେ ଏବଂ ପିତୃପୂଜା କରି ପୁଣି ସେମାନଙ୍କ ମହାଯାତ୍ରାର ପଥିକ ହୋଇଥିଲେ । ଅବଶ୍ୟ ବନବାସ ସମୟରେ ତ ସେମାନେ ଏ ଅଞ୍ଚଳରେ ରହିଥିଲେ ବହୁଦିନ । ଏହି ଚଉରାଶୀ କୁଣ୍ଡ ଆଜି ନାହିଁ । ମାତ୍ର ଛବିଶଟି କୁଣ୍ଡକୁ ଚିହ୍ନିତ କରାଯାଇଛି । ସେଥିରୁ କେତେକ କୁଣ୍ଡର ପାଣିର ଉତ୍ତାପ ୧୩୪° ସେଣ୍ଟିଗ୍ରେଡ୍ ବୋଲି କହି ରଖେ. ଏତେ ସଂଖ୍ୟକ ଉଷ୍ଣ ପ୍ରସ୍ରବଣ ଅତ୍ରି ବା ତପ୍ତ ପାଣିରେ ନାହିଁ । (୬)

ଏଠାରେ ଉଷ୍ଣ ପ୍ରସ୍ରବଣର ସବୁଠୁ ବଡ ବୈଚିତ୍ର୍ୟ ହେଉଛି ଏହାର ଜଳଧାର । ସିଦ୍ଧେଶ୍ୱରଙ୍କ ମନ୍ଦିର ପାଖରେ କୁଣ୍ଡ ଦୁଇଟି ଲଗାଲଗି । ଗୋଟିକରେ ଉଷ୍ଣଜଳ, ଅନ୍ୟଟିରେ ଶୀତଳଜଳ । କେହି କେହି କହନ୍ତି ଏଇଥିପାଇଁ ଦେଉଳଝରୀ ସମଗ୍ର ଏସିଆ ଭୂଖଣ୍ଡରେ ଅନନ୍ୟ ।

ହଁ, ଚୌରାଶୀ କୁଣ୍ଡରେ ନାଁ ଥିଲା : କ୍ଷୀରକୁଣ୍ଡ, ଘିଅକୁଣ୍ଡ, ଦହିକୁଣ୍ଡ, ରକ୍ତ କୁଣ୍ଡ, ହିମ କୁଣ୍ଡ, ଅଗ୍ନି କୁଣ୍ଡ ପ୍ରଭୃତି । ବହୁତ ପୋତି ହୋଇ ଗଲାଣି । ନାହିଁ ସେମାନଙ୍କ ଅସ୍ତିତ୍ୱ । କବି କହନ୍ତି :

କାହିଁ ଭାସିଗଲା କାଳ ସୁଅଧାରେ
ସେ ତପୀ କୁଟୀର ରାଜି,
ଚୌରାଶୀ କୁଣ୍ଡରେ ଚିହ୍ନ ନାହିଁ ପାତ୍ର ।
ଚୌରାଶୀ ପ୍ରଗନା ଆଜି । (୭)

ଚୌରାଶୀ ପ୍ରଗନା ଆଠ ମଲ୍ଲିକର ଚାରି ପ୍ରଗନାରୁ ଅନ୍ୟତମ । ଏଇ ପ୍ରଗନାରେ ଅଛି ଦେଉଳଝରୀ, ଯୋଉଠି ଥିଲା ଚୌରାଶୀ କୁଣ୍ଡ ।

**ପରିବେଶ, ଭୂପ୍ରକୃତି ଓ ପ୍ରତ୍ନ ସଂପଦ :**

କିଆ, କୁରୁବକ, ଶାଳ, ବେଲ, ବାଉଁଶର ବଣ । ବିରାଟ କିଆବଣ । ମହାଦେବଙ୍କ କିଆ ପ୍ରିୟ ତ ! ଚେନା ଚେଲା ନାଗ ସାପ ।

ସନ୍ତସନ୍ତିଆ ମାଟି । ଗନ୍ଧକର ମହକ । ସ୍ଥାନେ ସ୍ଥାନେ ଚୋରା ପଙ୍କ । ଦଲ ଦଲ । ତଥାପି ତା' ଭିତରେ ରତ୍ନ କିଆଫୁଲ ସଂଗ୍ରହ କରନ୍ତି । ବିଭିନ୍ନ କୁଣ୍ଡ ଦର୍ଶନ କରନ୍ତି । ସେ ପାଣି ମୁଣ୍ଡରେ ଦିଅନ୍ତି ।

ସୁନ୍ଦର ପ୍ରକୃତି । ଏଇଠି ଠିଆ ହୋଇ ଚାହିଁଲେ ଉତ୍ତରରେ ଦିଶେ ପଞ୍ଚଧାର । ଅଦୂରରେ । ମହାନଦୀ ଦକ୍ଷିଣରେ । ସେ ପାରିକି ବୌଦ୍ଧର ପର୍ବତ ମାଳା । ପୂର୍ବ ଓ ପଶ୍ଚିମରେ ଧାନ କ୍ଷେତ । ଦିଗନ୍ତ ବିସ୍ତାରୀ ।

ଏହା ଏକ ଶୈବ ପୀଠ । ଆଗେ ଦେବୀ ମାହେଶ୍ୱରୀ ବି ଏଠି ପୂଜା ପାଉଥିଲେ । ମାହେଶ୍ୱରୀଙ୍କ ଆଦ୍ୟପୀଠ ତ ଦେଉଳଝରୀ । ଦେବୀ ଏଠାରୁ ଗଲେ ହଣ୍ଡପା, ପୁରୁଣାଗଡ଼ ଓ କର୍ଣ୍ଣେଇଗଡ଼ । ରାଜଧାନୀ ପରିବର୍ତ୍ତନ ସଙ୍ଗେ ପୂଜା ପୀଠ ବଦଳିଚି । ତେବେ ସିଦ୍ଧେଶ୍ୱର ଏଠାର ପୀଠ ଦେବତା । ଜାଗେଶ୍ୱର, ଗୁପ୍ତେଶ୍ୱର ମଲ୍ଲେଶ୍ୱରଙ୍କ ମନ୍ଦିର ବି ଅଛି । ଅଛି ଦେବୀ ମାହେଶ୍ୱରୀ ଓ ଖମ୍ଭେଶ୍ୱରୀଙ୍କ ମନ୍ଦିର । ଶିବ ଚତୁର୍ଦ୍ଦଶୀରେ ବିରାଟ ମେଳା ବସେ ।

ଏଠାରେ ଅନେକ ଭଗ୍ନ ମୂର୍ତ୍ତି । ସେଗୁଡ଼ିକୁ ସାଇତି ରଖେନି । ସେଗୁଡ଼ିକ ଅଯତ୍ନ ରକ୍ଷା । କେହି ଖଣ୍ଡାଂଶ । କି ହାନିମାନ ! ହଳ କରୁ କରୁ ଲୋକେ ପାଆନ୍ତି ପଥର ମୂର୍ତ୍ତି । ଏଣେ ତେଣେ ବିକ୍ଷିପ୍ତ ହୋଇ ପଡ଼ିଚି ମୂର୍ତ୍ତିର ସେମିତି ଗୋଟିଏ କାର୍ତ୍ତିକେୟ ମୂର୍ତ୍ତି ମିଳିଥିଲା ୧୯୪୫-୪୬ ରେ । ସୁନ୍ଦର ଭାସ୍କର୍ଯ୍ୟ । ଭୁବନେଶ୍ୱରର ମୂର୍ତ୍ତିକଳା ସମକକ୍ଷ ହେବ ।

ସିଦ୍ଧେଶ୍ୱର ବଡ଼ ପ୍ରତ୍ୟକ୍ଷ ଦେବତା । ଲୋକେ କହନ୍ତି ଆଗେ ଠାକୁରଙ୍କୁ ତମ୍ବା, ପିତ୍ତଳ ଇତ୍ୟାଦି ଧାତୁର ଯୋଡ଼ ସାପ ମାନସିକ ଭାବରେ

ଦିଆ ଯାଉଥିଲା, ସେସବୁ ଜୀବନ ପାଇ ଯାଉଥିଲେ । ତେଣୁ ଏଠାରେ ଧାତୁର ସାପକୁ ବେକଠୁ ଲାଗି ବା ଯୋଡାକରି ସମର୍ପଣ କରାଯାଉଥିଲା ।

**ପୌରାଣିକ ଲୋକଶ୍ରୁତି :**

କିମ୍ବଦନ୍ତୀ କହେ ଏହା ଲବକୁଶଙ୍କ ଅନୁଡିଶାଳ । ଏଇଠି ଥିଲା ମହର୍ଷି ବାଲ୍ମୀକୀଙ୍କ ଆଶ୍ରମ । ନିର୍ବାସିତ ହେଇ ସତୀ ସୀତା ଏଇଠି ଆଶ୍ରୟ ନେଇଥିଲେ । ରାଜା ସତୀଙ୍କୁ ନିର୍ବାସନ ଦେଲେ । ଋଷି ଦେଲେ ଆଶ୍ରୟ ।

ଆଉ ଏଇଠି ଜନ୍ମିଲେ ଲବକୁଶ । ନାତିମାନଙ୍କ ପାଇଁ ଆଉ ପୃଥିବୀ ସୃଷ୍ଟି କଲେ କ୍ଷୀରକୁଣ୍ଡ, ଘିଅକୁଣ୍ଡ ଓ ଦହିକୁଣ୍ଡ ।

ଅଯୋଧ୍ୟାରେ ଦିଗ୍‌ବିଜୟୀ ସମ୍ରାଟ ନିଜର ପରାକ୍ରମ ଘୋଷଣା କରିବା ପାଇଁ ଆରମ୍ଭ କଲେ ଅଶ୍ୱମେଧ ଯଜ୍ଞ । ସେ ବାର୍ତ୍ତା ନେଇ ପାଟଘୋଡା ବୁଲିଲା ଦେଶଦେଶ । ମାତ୍ର ଏଇଠି ଲବକୁଶ ତାକୁ ଅଟକେଇଲେ । ହେଲା ଯୁଦ୍ଧ । ରାମଚନ୍ଦ୍ର ଓ ତାଙ୍କର ତିନିଭାଇ ହାରିଲେ । ସେମାନଙ୍କ ରକ୍ତ ବହିଗଲା । ପୃଥିବୀ ସେ ରକ୍ତକୁ ଧରିନେଲା । ଆଉ 'ରକ୍ତକୁଣ୍ଡ'ରେ ଦେଖେଇ ଦେଲା ଜଗତବାସୀଙ୍କୁ । କବି କହନ୍ତି : ଲବକୁଶ ଶରେ ରଘୁକୁଳ ପତି ଶ୍ରୀ ଅଂଗେ ରୁଧିର ଧାର ଝରିଥିଲା ଯାହା ଧରା ତା' ସଂଚିଲା ଅପୂର୍ବ ସଂପଦସାରା । ନିଜ କନ୍ୟା ଦୁଃଖ ଉଜ୍ଜ୍ୱଳ ଆଦର୍ଶ ଦୌହିତ୍ର ଗୌରବରାଜି ଯୁଗଜନ ପାଇଁ ସାଇତି ଥିଲା ଯା ଚିର ଝରଝରେ ଆଜି । (୮)

ସମୟର ସୁଅରେ ଭାସିଗଲା ସେଦିନ ।
ଭାସିଗଲା ମଧ୍ୟ ଦ୍ୱାପରର ସ୍ମୃତି କଦମ୍ବ ସବୁ ।

**ଐତିହାସିକ କିମ୍ବଦନ୍ତୀ :**

କୁହାଯାଏ କେଶରୀ ସମ୍ରାଟ ଥରେ ମହାନଦୀ କୂଳେ କୂଳେ ଆଟ ଚାଳି ଚାଲିଥିଲେ କୌଣସି ଯୁଦ୍ଧ ପାଇଁ । ଏଇଠି ଶିବିର ଥାପିଲେ କେଶରୀ ସେନା । ରାଜାଙ୍କ ଅଶ୍ୱପାଳମାନେ ଘାସ ସଂଗ୍ରହ କରିବାକୁ ଯାଇ ଲୁହା ଦାଆ ସବୁ ସୁନା ଦାଆରେ ପରିଣତ ହେବା ଦେଖି ହତଚକିତ ହୋଇଗଲେ ।

ସ୍ୱପ୍ନାଦେଶ ପାଇଲେ ରାଜା ଏ ଦେବ ଭୂଇଁ । ଶୀଘ୍ର ଏ ସୁନା ଦାଆ ସଂଗେ ଅଷ୍ଟଧାତୁ ମିଶାଇ ମାହେଶ୍ୱରୀ ମୂର୍ତ୍ତି ଗଠନ କରାଅ । ସେ ହେଉଛନ୍ତି ଆଠମଲ୍ଲିକର ଅଧିଷ୍ଠାତ୍ରୀ ଦେବୀ ମାହେଶ୍ୱରୀ ।

ସୁବର୍ଣ୍ଣ କେଶରୀ ଶୈବ ଅନୁ[illegible]ଙ୍କର ମନୋବାଞ୍ଛା ପୂର୍ଣ୍ଣ ହେଲା । ସିଦ୍ଧ ହେଲା । ତେଣୁ ସେ ପ୍ରତିଷ୍ଠା କଲେ ସିଦ୍ଧେଶ୍ୱର । ସେଇଠି ଦେଉଳଝରୀରେ : ଉମା ଓ ମହେଶ୍ୱର ।

ପୁଣି ବିଚିତ୍ର ମୂର୍ତ୍ତି ମାହେଶ୍ୱରୀ । ଏକାଦଶ ହସ୍ତା । ଦଶହସ୍ତରେ ଅସ୍ତ୍ର ଶସ୍ତ୍ର ଝଲମଲ କରୁଚି [illegible]ଶ ହାତଟି ଲମ୍ବି ଯାଇଚି ତଳକୁ । ନିଜର ଅର୍ଦ୍ଧ ବିବସନ ଅବସ୍ଥାରେ ଗୁପ୍ତାଂଗକୁ ରକ୍ଷା କରିବାକୁ । ମହାକାଳୀ ଥିଲା ମହିଷ । ତାକୁ ହତ୍ୟା କରିବାକୁ ଦେବୀଙ୍କୁ କେତେ କଦର୍ଥନା ସହିବାକୁ ନ ପଡ଼ିଚି । ସେଥିପାଇଁ ତ ତାଙ୍କୁ ସୁରା ପାନ କରିବାକୁ ପଡ଼ିଥିଲା । ''ଗର୍ଜ ଗର୍ଜ କ୍ଷଣଂ ମୂଢ଼ ମଧୁ ଯାବତ୍ ପିବାମ୍ୟହଂ ମୟା ତ୍ୱୟି ହତେଽତ୍ରୈବ ଗର୍ଜିଷ୍ୟନ୍ତ୍ୟାଶୁ ଦେବତା'' (୯) କହନ୍ତି ଦେବୀ ।

ମାତ୍ର ଅମିତ ପରାକ୍ରମର ଅଧିକାରୀ ମହିଷକୁ ବିମୋହିତ ଓ ବିହ୍ୱଳିତ କରିବାକୁ ହେବ । ବିଶ୍ୱମାତା ତେଣୁ ମୋହିନୀ ମୂର୍ତ୍ତି ଧରିବା ପ୍ରୟୋଜନ । ଆଉ ପ୍ରୟୋଜନ ଅର୍ଦ୍ଧ ବିବସନ୍ ଅବସ୍ଥା । ଏଇ ମହା ସଂକଟ କାଳରେ ଦେବୀଙ୍କ ଏକାଦଶ ହସ୍ତର ସୃଷ୍ଟି । ମୋ ଜ୍ଞାନରେ ଦେବୀଙ୍କ ଏଭଳି ଅଲୌକିକ ପ୍ରତିମା କଳ୍ପନା ସମଗ୍ର ହିନ୍ଦୁ ଚେତନାରେ ଯେପରି ଅନନ୍ୟ, ସମଗ୍ର ବିଶ୍ୱ ସଭ୍ୟତାରେ ସେପରି ଅପୂର୍ବ ।

ଅନ୍ୟ ଏକ ପ୍ରବାଦ ଅଛି ଯେ ସମ୍ରାଟ ଅନଙ୍ଗ ଭୀମ ପୁରୀରେ ଶ୍ରୀମନ୍ଦିର ସ୍ଥାପନ କରିବା ପୂର୍ବରୁ ଦେଉଳଝରୀରେ ମଧ୍ୟ ଶ୍ରୀକ୍ଷେତ୍ର କରିବାର ସ୍ୱପ୍ନ ଦେଖିଥିଲେ । ସେଥିପାଇଁ ସ୍ୱପ୍ନାଦେଶ ଥିଲା ଯେ ଗୋଟିଏ ରାତିରେ ଯଦି ଲକ୍ଷେ ମନ୍ଦିର ନିର୍ମାଣ କରାଯାଇପାରିବ, ତେବେ ଏହା ହେବ ଶ୍ରୀକ୍ଷେତ୍ର । ବିଶ୍ୱକର୍ମା ଆସିଲେ । ଗୋଟିଏ ମନ୍ଦିର ଊଣା ହେଲା । ତେଣୁ ଏଠି ହେଲାନି ଶ୍ରୀକ୍ଷେତ୍ର । ଏହା ହେଲା ଶୈବ କ୍ଷେତ୍ର । ଆଜି ମଧ୍ୟ 'ଓଡ଼ିଶା' ନାମର ସ୍ମାରକ ରୂପେ ରହିଚି 'ଓଡ଼ଶିଙ୍ଗା' ଗାଁ । ରହିଚି ମଧ୍ୟ ଭାଙ୍ଗିଯାଇ ଥିବା 'ବାଉଣି ପାହାଚ' ।

ଏଠାରେ ଝରଣାଟିଏ ଅଛି-ବାରୁଣୀଝର । ଶୀତଳ ଜଳର ଜଳ । ବାରୁଣୀ ଯୋଗରେ ଏ ଝର ଓଲଟି ବହେ । ସିଦ୍ଧେଶ୍ୱରଙ୍କୁ ସ୍ନାନ କରାଏ । ତା' ପରେ ସ୍ୱାଭାବିକ୍ ଭାବରେ ବହିଯାଏ । ଏହା ମଧ୍ୟ ଏକ ବିଚିତ୍ର କିମ୍ବଦନ୍ତୀ ।

**ଉପସଂହାର :**

ଆଠମଲ୍ଲିକର ପ୍ରାକୃତିକ ସୌନ୍ଦର୍ଯ୍ୟ, ସଂସ୍କୃତି, ଜନଜୀବନ ଓ ପ୍ରତ୍ନ ସଂପଦ ଉପରେ ସେଭଳି ଆଖିଦୃଶିଆ କାମ ହେଇନି । ଶ୍ରୀ ଗୌତମ ରାଉତ୍, ଶ୍ରୀ ସନାତନ ମଲ୍ଲିକ ଓ ଡଃ ରଘୁନାଥ ମେହେରଙ୍କ ଭଳି ଅଳ୍ପ କେତେଜଣ ବିଦ୍ୱାନ ଏ ଦିଗରେ କାର୍ଯ୍ୟାରମ୍ଭ କରିଛନ୍ତି ମାତ୍ର ।

ଅନେକ ସ୍ୱପ୍ନ, ଜନଶ୍ରୁତି ଓ ବିଶ୍ୱାସର ଭୂଇଁ ଦେଉଳଝରୀ । ଏହାର ଖୁବ୍ ନିକଟରେ ଇନ୍ଦ୍ରାଗଡ, ବେଲପୁଞ୍ଜି (କର୍ଣ୍ଣପୁଲିଆ ବାବାଙ୍କ ଆଶ୍ରମ), କେତକୀ ଝରଣ, ସାତକୋଶିଆ, ଟିକରପଡ଼ା । ଭୀମ ଭୋଇଙ୍କ ପ୍ରିୟ ଜନ୍ମ ଓ କର୍ମଭୂମି କଟାପିଂଗା, ବଦଳାଗଡ ପ୍ରଭୃତି ମଧ୍ୟ ପାଖରେ । ବହୁ ଐତିହାସିକ, ସାଂସ୍କୃତିକ ତଥା ପ୍ରାକୃତିକ ଦୃଶ୍ୟ ସଂବଳୀ ସ୍ଥାନ ଏସବୁ । ତେଣୁ ଏହାକୁ କେନ୍ଦ୍ର କରି ଏକ ପର୍ଯ୍ୟଟନ ବଳୟ ଏଠି ସୃଷ୍ଟି କରାଯାଇପାରେ । ଚିରସ୍ଥାୟୀ ଯୋଗାଯୋଗ, ପାନ୍ଥଶାଳା, ମୃଗ ବିହାର, ପ୍ରତ୍ନତାତ୍ତ୍ୱିକ ସଂଗ୍ରହାଳୟ, ବନ ସଂଗ୍ରହାଳୟ, ଔଷଧ ବୃକ୍ଷ ଉଦ୍ୟାନ ପ୍ରଭୃତି ସୃଷ୍ଟି କରାଯାଇ ଏହାର ସ୍ୱପ୍ନମୟ ଅତୀତକୁ କିଛି ଭାବରେ ସମ୍ମାନ ଦିଆଯାଇପାରେ ।

ସୂଚନା ;

(୧) ଦାଶ ବାଞ୍ଛାନିଧି, ଦେଉଳଝରରେ କବିର ସ୍ୱପ୍ନ, ପୃ ୧ ପ୍ରକାଶ କାଳ-୧୯୪୬

(୨) ମହାନ୍ତି ଚିନ୍ତାମଣି, ପଞ୍ଚଧାର (କାବ୍ୟ)

(୩) ରାୟ ଶଶିଭୂଷଣ, ଆଠମଲ୍ଲିକ ଅନୁଭୂତି (ଭ୍ରମଣ କାହାଣୀ)

(୪) ଡଃ ମାନସିଂହ ମାୟାଧର, ଶିକ୍ଷାବିତ୍ର ଗାଥା (ଆତ୍ମଜୀବନୀ)

(୫) ରାୟ ରାଧାନାଥ, ମହାଯାତ୍ରା କାବ୍ୟ, ସଂପା. ଅଧ୍ୟାପକ କ୍ଷେତ୍ରବାସୀନାୟକ, ପୃ ୧୬୫ (ଏହାର ପାଦଟୀକାରେ ମହାରାଜା ମହେନ୍ଦ୍ରଦେବଙ୍କ ନାଁଟି ଭୁଲରେ ମହାରାଜା ରାମଚନ୍ଦ୍ର ଦେବ ଲେଖାଅଛି) ୧୯୭୫ ସଂ.

(୬) ମଲ୍ଲିକ ସନାତନ, ପଂଚଧାର ଅନ୍ତରାଳେ, ପୃ ୧୬, ପ୍ରଥମ ପ୍ରକାଶ ୧୯୯୬

(୭) ଦାସ ବାଞ୍ଛାନିଧି, ଦେଉଳଝରରେ କବିର ସ୍ୱପ୍ନ, ପୃ୧୩, ପ୍ରକାଶ କାଳ ୧୯୪୬

(୮) ତତ୍ରୈବ ପୃ ୧୪

(୯) ଶ୍ରୀଶ୍ରୀ ସପ୍ତଶତୀ ଚଣ୍ଡୀ, ମଧ୍ୟମ ଚରିତ, ତୃତୀୟ ଅଧ୍ୟାୟ ମଂତ୍ରଃ ୩୮

ସାମନ୍ତ ସାହି,
କଟକ-୭୫୩୦୦୧

## ଓଡ଼ିଶାକୁ ଦେଶର ଶ୍ରେଷ୍ଠ ରାଜ୍ୟରେ ପରିଣତ କରିବାକୁ ଯୁବ ସମାଜର ସକ୍ରିୟ ସହଯୋଗ ଆବଶ୍ୟକ

ରାଜ୍ୟପାଳ

ଓଡ଼ିଶାକୁ ଦେଶର ଏକ ସମୃଦ୍ଧ ତଥା ପ୍ରଗତିଶୀଳ ରାଜ୍ୟରେ ପରିଣତ କରିବା ପାଇଁ ଐକ୍ୟବଦ୍ଧ ଭାବରେ ସଂଗ୍ରାମ କରିବାକୁ ଓଡ଼ିଶାର ମାନ୍ୟବର ରାଜ୍ୟପାଳ ଶ୍ରୀ ଗୋପାଳ ରାମାନୁଜମ୍ ଯୁବଗୋଷ୍ଠୀଙ୍କୁ ଆହ୍ୱାନ ଜଣାଇଛନ୍ତି ।

ଗତ ଏପ୍ରିଲ ୧ ତାରିଖ ସନ୍ଧ୍ୟାରେ ସ୍ଥାନୀୟ ଯୁବିଲି - ୩ ପ୍ରଦର୍ଶନୀ ପଡ଼ିଆଠାରେ ଉତ୍କଳ ଦିବସର ୬୧ ତମ ପୂର୍ତ୍ତି ଉତ୍ସବ ପାଳନ ଅବସରରେ ସୂଚନା ଓ ଲୋକ ସମ୍ପର୍କ ବିଭାଗ ଦ୍ୱାରା ଆୟୋଜିତ ରାଜ୍ୟସ୍ତରୀୟ ଉତ୍ସବରେ ମୁଖ୍ୟ ଅତିଥି ଭାବେ ଯୋଗ ଦେଇ ରାଜ୍ୟପାଳ କହିଲେ ଯେ ଏକବିଂଶ ଶତାବ୍ଦୀରେ ଓଡ଼ିଶାକୁ ଯେପରି କେହି ପଛୁଆ ରାଜ୍ୟ ନ କହିବେ, ସେଥିପାଇଁ ବର୍ତ୍ତମାନଠାରୁ ଉଦ୍ୟମ ଆରମ୍ଭ ହେବା ଉଚିତ୍ । ଏଥିନିମନ୍ତେ ଯୁବ ସମାଜ ସଂଗଠିତ ହୋଇ କାର୍ଯ୍ୟ କଲେ, ଓଡ଼ିଶା ସମଗ୍ର ଭାରତବର୍ଷରେ ଏକ ଉନ୍ନତ ରାଜ୍ୟରେ ପରିଗଣିତ ହୋଇପାରିବ । ସେ ଆହୁରି କହିଲେ ଯେ ବର୍ତ୍ତମାନ ଦେଶର ଇତିହାସକୁ ଅବଲୋକନ କରିବାର ସମୟ ଆସିଛି । ସେଥିରୁ ଆମେ ବହୁତ କିଛି ଶିକ୍ଷା କରିପାରିବା । ଯେଉଁ ସମସ୍ୟାଗୁଡ଼ିକ ରାଜ୍ୟର ପ୍ରଗତି ପଥରେ ଅନ୍ତରାୟ ହେଉଛି, ସେଗୁଡ଼ିକ ଦୂର କରାଯାଇ ପ୍ରଗତି ମୂଳକ କାର୍ଯ୍ୟ ଧାରାକୁ ଆଗେଇ ନେବା ଉଚିତ୍ । ଆମ ଦେଶ ବର୍ତ୍ତମାନ ସ୍ୱାଧୀନତାର ସୁବର୍ଣ୍ଣ ଜୟନ୍ତୀ ପାଳନ କରୁଥିବାରୁ ଏହି ଅବସରରେ ବିଭିନ୍ନ ସଂପ୍ରଦାୟ ମଧ୍ୟରେ ଯେପରି ଐକ୍ୟ ଓ ସଂହତି ବଜାୟ ରହିପାରିବ, ତାହା ଆମ ସମସ୍ତଙ୍କର ପରମ କର୍ତ୍ତବ୍ୟ ହେବା ଉଚିତ୍ । ଫଳରେ ଦେଶର ସର୍ବାଙ୍ଗୀଣ ବିକାଶରେ ସହାୟକ ହୋଇପାରିବ ।

ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ ଉତ୍ସବରେ ସମ୍ମାନିତ ଅତିଥି ଭାବେ ଯୋଗ ଦେଇ ତାଙ୍କ ଅଭିଭାଷଣରେ ଓଡ଼ିଶାକୁ ଦେଶର ଶ୍ରେଷ୍ଠ ରାଜ୍ୟରେ ପରିଣତ କରିବା ପାଇଁ ଓଡ଼ିଶାବାସୀ ସ୍ୱପ୍ନ ଦେଖନ୍ତୁ ଓ ସେହି ସ୍ୱପ୍ନକୁ ସାକାର କରିବା ପାଇଁ ଯଥାସାଧ୍ୟ ଉଦ୍ୟମ କରନ୍ତୁ ବୋଲି ଆହ୍ୱାନ ଦେଇ ରାଜ୍ୟବାସୀଙ୍କ ପୂର୍ଣ୍ଣ ସହଯୋଗରେ ଓଡ଼ିଶାର ବିକାଶ ସ୍ୱପ୍ନକୁ ବାସ୍ତବ ରୂପ ଦେବାରେ ତାଙ୍କ ସରକାର ସଂକଳ୍ପବଦ୍ଧ ବୋଲି ଘୋଷଣା କରିଥିଲେ । ସେ ଆହୁରି କହିଲେ ଯେ ଓଡ଼ିଶା ଖଣିଜ ସଂପଦ, ସୁଦୀର୍ଘ ବେଳାଭୂମି ଓ ଜଳ ସଂପଦରେ ପରିପୂର୍ଣ୍ଣ । ଖଣିଜ ସଂପଦର ସୁବିନିଯୋଗ କରାଯାଇ ଗୋପାଳପୁରଠାରେ ଟାଟା ଓ ଏସ.ଆର ଟି, କଂପାନୀ ଦ୍ୱାରା ଦୁଇଟି ଇସ୍ପାତ କାରଖାନା, ଦୁଇଟାଠାରେ ମେସ୍‌ର୍ସ ଗ୍ରୁପ୍ ଓ କାଲିଙ୍ଗ ଇସ୍ପାତ ନିଗମ ଦ୍ୱାରା ଦୁଇଟି ଇସ୍ପାତ କାରଖାନା ପ୍ରତିଷ୍ଠା କରାଯାଉଛି । ପାରାଦୀପ ବନ୍ଦରକୁ ଏକ ପ୍ରଥମ ଶ୍ରେଣୀ ବନ୍ଦର ଭାବେ ଗଢ଼ି ତୋଳିବାକୁ ଏବଂ ଗୋପାଳପୁରକୁ ଏସିଆର ବୃହତ୍ତମ ବନ୍ଦର ଭାବେ ପ୍ରତିଷ୍ଠା କରିବା ପାଇଁ ସମସ୍ତ ଉଦ୍ୟମ ଜାରି ରହିଛି ବୋଲି ପ୍ରକାଶ କରିବା ସଙ୍ଗେ ସଙ୍ଗେ ପାରାଦୀପଠାରେ ଦୁଇଟି ଓ ଦଇତାରିପୁରଠାରେ ଗୋଟିଏ, ଏପରି ତିନୋଟି ତୈଳ ବିଶୋଧନାଗାର ପ୍ରତିଷ୍ଠା କରାଯିବ ବୋଲି ମୁଖ୍ୟମନ୍ତ୍ରୀ କହିଥିଲେ । ସେ ଆହୁରି କହିଲେ ଯେ ଓଡ଼ିଶାରେ କୃଷିକୁ ଶିଳ୍ପର ମାନ୍ୟତା ପ୍ରଦାନ କରାଯାଇଛି । କୃଷି ଉତ୍ପାଦନକୁ ଦ୍ୱିଗୁଣିତ କରିବା ଉଦ୍ଦେଶ୍ୟରେ ଉନ୍ନତ ବିହନ ଓ ନୂତନ ଉତ୍ପାଦନ ଜ୍ଞାନ କୌଶଳ, ଯେପରି ନଦୀବାନ୍ଧରେ ଆଧୁନିକ ଜଳସେଚନ ଜ୍ଞାନ କୌଶଳ, ଚାଷୀମାନଙ୍କୁ ପହଞ୍ଚାଇ ଦିଆଯାଉଛି ।

ଏହି ଅବସରରେ ମୁଖ୍ୟମନ୍ତ୍ରୀ ଶ୍ରୀ ପଟ୍ଟନାୟକ ନବ ଉତ୍କଳର ନିର୍ମାତା ତଥା ଓଡ଼ିଶାର ବରପୁତ୍ରମାନଙ୍କ ସ୍ମୃତି ଚାରଣ କରି ସେମାନଙ୍କ ପ୍ରତି ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରିବା ସଙ୍ଗେ ସଙ୍ଗେ ସେମାନଙ୍କ ସ୍ୱପ୍ନକୁ ସାକାର କରି ଓଡ଼ିଶାକୁ ଭାରତର ଶ୍ରେଷ୍ଠ ରାଜ୍ୟରେ ପରିଣତ କରିବା ପାଇଁ ସମସ୍ତଙ୍କର ସକ୍ରିୟ ସହଯୋଗ କାମନା କରିଥିଲେ ।

ବାଚସ୍ପତି ଶ୍ରୀ ଚିନ୍ତାମଣି ଦ୍ୟାନ ସାମନ୍ତରାୟଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ଏହି ରାଜ୍ୟସ୍ତରୀୟ ଉତ୍ସବରେ ସୂଚନା ଓ ଲୋକ ସମ୍ପର୍କ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ନେତ୍ରାନନ୍ଦ ମଲ୍ଲିକ ସ୍ୱାଗତ ଭାଷଣ ଦେବା ଅବସରରେ ଓଡ଼ିଆ ଜାତିର ଗୌରବମୟ ଐତିହ୍ୟ ଓ ପରମ୍ପରାକୁ ବଜାୟ ରଖିବା ପାଇଁ ଜନସାଧାରଣଙ୍କୁ ଆହ୍ୱାନ ଦେଇଥିଲେ । ମୁଖ୍ୟବକ୍ତା ସାଂସଦ ଶ୍ରୀ ସୌମ୍ୟରଞ୍ଜନ ପଟ୍ଟନାୟକ ଓଡ଼ିଆ ଭାଷାକୁ ସରକାରୀ ଭାଷା ଭାବରେ ବ୍ୟବହାର କରିବାକୁ ସବୁ ସ୍ତରରେ ଉଦ୍ୟମ ହେବା ଆବଶ୍ୟକ ବୋଲି ମତବ୍ୟକ୍ତ କରିଥିଲେ । ଅବକାରୀ ମନ୍ତ୍ରୀ ଶ୍ରୀ ସୁରେଶ କୁମାର ରାଉତରାୟ ସମ୍ମାନିତ ବକ୍ତା ରୂପେ ଯୋଗ ଦେଇ ସରକାରଙ୍କ ବିଭିନ୍ନ ଉନ୍ନୟନମୂଳକ କାର୍ଯ୍ୟକ୍ରମ ସଂପର୍କରେ ସୂଚନା ଦେଇଥିଲେ ।

ସୂଚନା ଓ ଲୋକ ସଂପର୍କ ବିଭାଗ ନିର୍ଦ୍ଦେଶକ ଶ୍ରୀ ଶଶଧର ପାଣିଗ୍ରାହୀ ଉତ୍କଳ ଦିବସ ଉପଲକ୍ଷେ ଭାରତର ମାନ୍ୟବର ରାଷ୍ଟ୍ରପତି ଡକ୍ଟର ଶଙ୍କର ଦୟାଳ ଶର୍ମା ଦେଇଥିବା ବାର୍ତ୍ତା ପାଠ କରିଥିଲେ ଏବଂ ଶାସନ ସଚିବ ଶ୍ରୀ ରାମଚନ୍ଦ୍ର ଧନ୍ୟବାଦ ଅର୍ପଣ କରିଥିଲେ । ଶାଶ୍ୱତୀ ସାଂସ୍କୃତିକ କେନ୍ଦ୍ର କଳାକାରମାନେ ପ୍ରାରମ୍ଭିକ ସଂଗୀତ ପରିବେଷଣ କରିଥିଲେ ।

ଏହି ଅବସରରେ ସଂସ୍କୃତି ବିଭାଗ ଦ୍ୱାରା ପ୍ରକାଶିତ ଓଡ଼ିଆ ଅଭିଧାନ ଗ୍ରନ୍ଥର ପ୍ରଥମ ଭାଗ ମାନ୍ୟବର ରାଜ୍ୟପାଳ ଉନ୍ମୋଚନ କରିଥିଲେ ଏବଂ ସୂଚନା ଓ ଲୋକ ସମ୍ପର୍କ ବିଭାଗ ଦ୍ୱାରା ଆୟୋଜିତ ବିଭିନ୍ନ ପ୍ରତିଯୋଗିତାର କୃତି ଛାତ୍ରଛାତ୍ରୀମାନେ ମୁଖ୍ୟମନ୍ତ୍ରୀ ପୁରସ୍କାର ଓ ପ୍ରମାଣପତ୍ର ପ୍ରଦାନ କରିଥିଲେ । ଏହାଛଡ଼ା ବିଭିନ୍ନ କ୍ଷେତ୍ରରେ କୃତିତ୍ୱ ଅର୍ଜନ କରିଥିବା ଆଠଗଡ଼ କାହିଁମାନଙ୍କୁ ମୁଖ୍ୟମନ୍ତ୍ରୀ ସାରଦାର ଲେଡ଼ିବ୍ରସ ପକ୍ଷରୁ ପ୍ରବନ୍ଧ ପୁରସ୍କାରଗୁଡ଼ିକ ବିତରଣ କରିଥିଲେ ।

ଉକ୍ତ ଦିନ ରାଜ୍ୟ ସଂସ୍କୃତି ବିଭାଗ ପକ୍ଷରୁ ଆୟୋଜିତ କଳାକାରଙ୍କ ସାଂସ୍କୃତିକ କାର୍ଯ୍ୟକ୍ରମ ପରିବେଷଣ କରାଯାଇଥିଲା ଏବଂ ପରିଶେଷରେ ଆତସବାଜି ପ୍ରତିଯୋଗିତା ଅନୁଷ୍ଠିତ ହୋଇଥିଲା ।

# ଯୁଗେ ଯୁଗେ ଓଡ଼ିଶା ସୁନ୍ଦରୀ-ଚିଲିକା

ଅଧ୍ୟାପକ ଡକ୍ଟର ବେଣୁଧର ପାତ୍ର

ପୁଣ୍ୟଭୂମି ଓଡ଼ିଶାର ଚିଲିକା ହ୍ରଦ ସୌନ୍ଦର୍ଯ୍ୟର ପ୍ରାଣ କେନ୍ଦ୍ର । ସମଗ୍ର ମହାଦେଶର ଏହା ହେଉଛି ବୃହତ୍ତମ ପ୍ରାକୃତିକ ଲୁଣା ହ୍ରଦ । ଯୁଗେ ଯୁଗେ ଏହାର ନୀଳ ଜଳରାଶି, ଚିର ଲହରୀମାଳା, ମନଲୋଭା ପ୍ରାକୃତିକ ସୌନ୍ଦର୍ଯ୍ୟ, ସନ୍ତରଣପଟୁ ବିରଳ ହଂସପଂକ୍ତି କବି, ଭାବୁକ, ପ୍ରେମିକ, ଦାର୍ଶନିକ ଓ ପର୍ଯ୍ୟଟକମାନଙ୍କୁ ଆକୃଷ୍ଟ କରି ଆସୁଛି । ଚିଲିକା ସୌନ୍ଦର୍ଯ୍ୟ ପିପାସୁମାନଙ୍କର ତୀର୍ଥକ୍ଷେତ୍ର । ଏଣୁତ କବି ମାୟାଧର ମାନସିଂ ଚିଲିକାର ସୌନ୍ଦର୍ଯ୍ୟ ଓ ଉପଯୋଗିତା ଉଭୟ ଦୃଷ୍ଟିରୁ ଏହାକୁ ଓଡ଼ିଶାର "ହୃଦୟ ହାରିଣୀ ନାୟିକା" ଓ 'ନାନା ଲକ୍ଷଣବତୀ କୁଳବଧୂ ଭାବେ ସମ୍ବୋଧନ କରିଛନ୍ତି । ଅପରୂପା ଲାବଣ୍ୟମୟୀ ଚିଲିକାର ସୌନ୍ଦର୍ଯ୍ୟ ସଂଦର୍ଶନ କରି କବି ରାଧାନାଥ ରାୟ ମଧ୍ୟ ସେହିଭଳି ଭାବ ବିହ୍ୱଳିତ ହୋଇ ଗାଇ ଉଠିଥିଲେ,

" ଉତ୍କଳ-କମଳା-ବିଳାସ ଦୀର୍ଘିକା,  
ମରାଳ ମାଳିନୀ-ନୀଳାମ୍ବୁ ଚିଲିକା ।  
ଉତ୍କଳର ତୁହି ଚାରୁ ଅଳଙ୍କାର,  
ଉତ୍କଳ ଭୁବନେ ଶୋଭାର ଭଣ୍ଡାର । "

ଚିଲିକା କେବଳ ରୂପମୟୀ ନୁହେଁ, କେଉଁ ଆବହମାନ କାଳରୁ ଏହା ଓଡ଼ିଶାର ରାଜନୈତିକ, ସାମାଜିକ, ଅର୍ଥନୈତିକ ତଥା ସାଂସ୍କୃତିକ ଜୀବନ ଧାରାରେ ବିଶେଷ ପ୍ରଭାବ ବିସ୍ତାର କରି ଆସିଛି । ଓଡ଼ିଆ ସାଂସ୍କୃତିକ ପରମ୍ପରାର ଏହା ଏକ ଅବିଚ୍ଛେଦ୍ୟ ଅଙ୍ଗ ତଥା ଓଡ଼ିଆ ସଂସ୍କୃତି ସହିତ ଓତଃପ୍ରୋତ ଭାବେ ଜଡ଼ିତ । ଓଡ଼ିଶାର ନୌ-ବାଣିଜ୍ୟ କ୍ଷେତ୍ରରେ ଚିଲିକା ଏକ ସ୍ୱତନ୍ତ୍ର ସ୍ଥାନ ଅଧିକାର କରିଥାଏ । ଏହା ଓଡ଼ିଶାର ନୌବାଣିଜ୍ୟ ତଥା ସମୃଦ୍ଧିର ବିଭିନ୍ନ ସୋପାନର ମୂକସାକ୍ଷୀ ।

### ଉନ୍ମେଷ ଓ କାଳ :

ଚିଲିକାର ଉନ୍ମେଷ ଓ କାଳ ସମ୍ପର୍କରେ ବିଭିନ୍ନ ବିରୋଧାତ୍ମକ ମତ ଦେଖିବାକୁ ମିଳିଥାଏ । ପ୍ରାଚୀନ ଗ୍ରନ୍ଥମାନଙ୍କରୁ ଏହାର ଉନ୍ମେଷ-କାଳ ନିର୍ଣ୍ଣୟ କରିବା ସମ୍ଭବପର ନୁହେଁ । ପୁରାଣ ପୃଷ୍ଠାରୁ ଜଣାଯାଏ ଭଗବାନ ଶ୍ରୀକୃଷ୍ଣ ସ୍ୱର୍ଗଯାତ୍ରା କରୁଥିବା ସମୟରେ ତାଙ୍କର ସୁଦର୍ଶନ ଚକ୍ରଟି ସମୁଦ୍ର ମଧ୍ୟରେ ଖସିପଡ଼ି ଚିଲିକା ହ୍ରଦ ସୃଷ୍ଟି କଲା । ବିଶ୍ୱାସ କରାଯାଏ ଯେ ଶତାବ୍ଦୀର ସ୍ଥଳଭାଗ ଉପରେ ହଠାତ୍ ସମୁଦ୍ର ମାଡ଼ିଯିବାରୁ ଚିଲିକାର ଉତ୍ପତ୍ତି ହେଲା । ଚତୁର୍ଥ ଏକ ଉପାଖ୍ୟାନରୁ ଜଣାଯାଏ ଦୁର୍ଦ୍ଧାନ୍ତ ରକ୍ତବାହୁ ନେତୃତ୍ୱରେ ଯବନମାନେ ୩୧୮ ଖ୍ରୀଷ୍ଟାବ୍ଦରେ ଜଗନ୍ନାଥ ମନ୍ଦିର ଲୁଣ୍ଠନ କରିବା ପାଇଁ ପବିତ୍ର କ୍ଷେତ୍ର ପୁରୀକୁ ଆକ୍ରମଣ କଲେ । କିନ୍ତୁ ମନ୍ଦିରର ପୂଜକମାନେ ସମୁଦ୍ର ଉପକୂଳକୁ ଶତ୍ରୁ ଆକ୍ରମଣର ପୂର୍ବାଭାସ ପାଇ ପୂର୍ବରୁ ଜଗନ୍ନାଥ ମୂର୍ତ୍ତି ଓ ବହୁ ସମ୍ପତ୍ତି ଧରି ଗୋପନରେ ପଳାୟନ କଲେ । ଆକ୍ରମଣକାରୀ ରକ୍ତବାହୁ ପରିତ୍ୟକ୍ତ ସହରରେ ପଶି ଏସବୁ ଦେଖି ହତୋତ୍ସାହ ତଥା କ୍ରୋଧାନ୍ୱିତ ହୋଇ ସମୁଦ୍ରକୁ ଦଣ୍ଡ ଦେବାପାଇଁ ଆଗେଇ ଗଲେ । ସମୁଦ୍ର ଛଳନାତ୍ମକଭାବେ ଯବନମାନଙ୍କୁ ସ୍ୱାଗତ ଜଣାଇ କିଛିକ୍ଷଣ ପାଇଁ ପଛେଇଗଲା ଓ ପରେ ହଠାତ୍ ସେମାନଙ୍କ ଉପରକୁ ଲମ୍ଫ ପ୍ରଦାନ କରି ସେମାନଙ୍କୁ ନିଜର ପ୍ରଶସ୍ତ କୋଳରେ ଚିରନିଦ୍ରାରେ ଶୁଆଇ ଦେଲା । ଠିକ୍ ସେହି ସମୟରେ ଏହା ଏକ ବିରାଟ ଭୂଖଣ୍ଡକୁ ଜଳପ୍ଲାବିତ କରିଥିଲା । ଯଦ୍ୱାରା ଚିଲିକା ହ୍ରଦର ସୃଷ୍ଟି ହେଲା । ଐତିହାସିକ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ କହନ୍ତି, ଉକ୍ତ ଯବନ ଆକ୍ରମଣ ୩୧୮ ଖ୍ରୀଷ୍ଟାବ୍ଦ ପରିବର୍ତ୍ତେ ୩୨୮ ଖ୍ରୀଷ୍ଟାବ୍ଦରେ ହୋଇଥିଲା । କିନ୍ତୁ ପ୍ରଥମ ଶତାବ୍ଦୀର 'ପେରିପ୍ଲସ୍ ଅଫ ଦି ଏରାଥ୍ରିଆନ୍ ସି'ର ଲେଖକ ଓ ଦ୍ୱିତୀୟ ଶତାବ୍ଦୀର ଗ୍ରୀକ୍ ଭୌଗୋଳିକବିତ୍ ଟଲେମୀଙ୍କ ବିବରଣୀରେ ଚିଲିକାର ବର୍ଣ୍ଣନା ଉପରୋକ୍ତ ଦୁଇ ସମୟ ସିଦ୍ଧାନ୍ତକୁ ଖଣ୍ଡନ କରିଥାଏ । ରାଧାଚରଣ ପଣ୍ଡାଙ୍କ ମତରେ ଚିଲିକା ଖ୍ରୀଷ୍ଟପୂର୍ବ ୩୭୦ ପୂର୍ବରୁ ସୃଷ୍ଟି ହୋଇଥିଲା । ଜାତୀୟ ସାମୁଦ୍ରିକ ଗବେଷଣା କେନ୍ଦ୍ର, ଗୋଆର ଏସ୍, ଆର୍, ରାଓଙ୍କ ମତରେ ଦୀର୍ଘ ୫୦୦୦ ବର୍ଷ ପୂର୍ବେ ଚିଲିକାହ୍ରଦ ବଙ୍ଗୋପସାଗରର ଅଂଶ ବିଶେଷ ଥିଲା । କାଳକ୍ରମେ ଦକ୍ଷିଣ-ପଶ୍ଚିମ ମୌସୁମୀ-ବାୟୁ ପ୍ରବାହ ଫଳରେ ଉପକୂଳରେ ଦକ୍ଷିଣରୁ ଉତ୍ତରକୁ ସଂଚାଳିତ ବାଲୁକା ରାଶି (ଲିଟୋରାଲ ଡ୍ରିଫ୍ଟ) ବର୍ତ୍ତମାନର ଚିଲିକାହ୍ରଦକୁ ମୂଳ-ସାଗରଠାରୁ ବିଚ୍ଛିନ୍ନ କରି ଏକ ହ୍ରଦରେ ପରିଣତ କଲା । ଏହି ପ୍ରକ୍ରିୟା ପ୍ରାୟ ୩୦୦୦ ବର୍ଷରୁ ଅଧିକକାଳ ପର୍ଯ୍ୟନ୍ତ ଚାଲିଥିଲା ବୋଲି ବୈଜ୍ଞାନିକ ବିଶ୍ଳେଷଣରୁ ଜଣାପଡେ । ଡବ୍ଲ୍ୟୁ. ଡବ୍ଲ୍ୟୁ. ହଣ୍ଟର ତାଙ୍କ "ଓଡ଼ିଶା' ଗ୍ରନ୍ଥରେ ଚିଲିକାକୁ ବଙ୍ଗୋପସାଗରର ଉପସାଗର ଭାବରେ ଅଭିହିତ କରିଛନ୍ତି । ବୌଦ୍ଧଗ୍ରନ୍ଥ ଆର୍ଯ୍ୟମଞ୍ଜୁଶ୍ରୀମୂଳକଳ୍ପ ଆଧୁନିକ ବଙ୍ଗୋପସାଗରକୁ 'କଳିଙ୍ଗ ସାଗର' ନାମରେ ନାମିତ କରିଥିଲା ଏବଂ ନୂତନଭାବେ ସୃଷ୍ଟି ହୋଇଥିବା ଉପସାଗରଟି କଳିଙ୍ଗ ସାଗର ନାମରେ ନାମିତ ହେଲା । ଅନେକ ମତ ପୋଷଣ କରନ୍ତି, 'ଚୁଲ୍ଲକ' ବା 'ଚିଲିକା'

ଶବ୍ଦଟି 'ଚୁଲ୍ଲ କଳିଙ୍ଗ ସାଗର' ଶବ୍ଦରୁ ଉତ୍ପନ୍ନ ହୋଇଛି । ହ୍ରଦ ସୃଷ୍ଟି ହେବାର ବହୁବର୍ଷ ପର୍ଯ୍ୟନ୍ତ ଚିଲିକା ଅନେକ ମୁହାଣ ଦ୍ୱାରା ବଙ୍ଗୋପସାଗର ସହିତ ସଂଯୁକ୍ତ ଥିଲା ।

## ଅବସ୍ଥିତି ଓ ଆୟତନ :

ଚିଲିକା ହ୍ରଦ ଓଡ଼ିଶାର ଉପକୂଳସ୍ଥ ପୁରୀ, ଖୋର୍ଦ୍ଧା ଓ ଗଞ୍ଜାମ ଜିଲ୍ଲାରେ ଥିବା ଏକ ଲବଣାକ୍ତ ହ୍ରଦ । ଏହା ୮୫°୦୬' - ୮୫°୩୫' ପୂର୍ବ ଦ୍ରାଘିମା ଏବଂ ୧୯°୨୮ ୧୯°୫୪' ଉତ୍ତର ଅକ୍ଷାଂଶ ମଧ୍ୟରେ ଅବସ୍ଥିତ । ଚିଲିକାର ଜଳରାଶି ଗ୍ରୀଷ୍ମକାଳରେ ୯୦୬ ବର୍ଗ କିଲୋମିଟର ପରିମିତ ଜାଗାରେ ସୀମିତ ରହୁଛି । ହ୍ରଦର ମଗର ମୁଖଠାରୁ ଆରମ୍ଭ କରି ୩୫ କିଲୋମିଟର ବ୍ୟାପୀ ଅଙ୍କାବଙ୍କା ନାନା ଅଗଭୀର ଜଳପଥ ଦ୍ୱାରା ଉଭୟ ଚିଲିକା ଓ ବଙ୍ଗୋପସାଗର ମଧ୍ୟରେ ସଂଯୋଗ ସ୍ଥାପନ କରୁଛି । ଚିଲିକାର ଉତ୍ତର, ଉତ୍ତର-ପଶ୍ଚିମ ଓ ପଶ୍ଚିମ ଦିଗରୁ ଦୟା, ଭାର୍ଗବୀ, ଲୁଣା, ଭଦ୍ରଚିରା, ଧନୁଆ, ମଦାକିନୀ, ସାଲିଆ, ମଳଗୁ ଇତ୍ୟାଦି ୩୬ଟି ଛୋଟ ବଡ଼ ନଦୀ ବହି ଆସି ଚିଲିକାରେ ମିଶିଛନ୍ତି । ତେଣୁ ବର୍ଷା ଋତୁରେ ବିଶେଷକରି ଅଗଷ୍ଟଠାରୁ ଡିସେମ୍ବର ମାସ ପର୍ଯ୍ୟନ୍ତ ହ୍ରଦର ଜଳରାଶି ମଧୁର ଜଳ ବିଶିଷ୍ଟ ହୋଇଥାଏ ଏବଂ ଜାନୁୟାରୀଠାରୁ ଜୁଲାଇ ପର୍ଯ୍ୟନ୍ତ ଲବଣାକ୍ତ ହୋଇଥାଏ କାରଣ ବଙ୍ଗୋପସାଗରର ଲବଣାକ୍ତ ଜଳରାଶି ଉତ୍ତର ପଟର ଶୀର୍ଷ ପର୍ଯ୍ୟନ୍ତ ପହଞ୍ଚିଥାଏ । ଚିଲିକା ମଧ୍ୟରେ କାଳିଯାଈ, ଚଢ଼େଇହଗା, ହନିମୁନ୍ ଇତ୍ୟାଦି କେତେକ ଛୋଟ ଛୋଟ ପାହାଡ ଚିଲିକାର ପ୍ରାୟ ୨୨୦ ବର୍ଗ କିଲୋମିଟର ସ୍ଥାନ ମାଡି ବସିଛନ୍ତି । ହ୍ରଦର ପ୍ରସ୍ଥ ଉତ୍ତର ଦିଗରୁ ଦକ୍ଷିଣ ଆଡ଼କୁ କ୍ରମଶଃ ହ୍ରାସ ପାଇଛି । ଏହାର ତଟଦେଶରେ ପାଞ୍ଚନମ୍ବର ଜାତୀୟ ରାଜପଥ ଏବଂ ଦକ୍ଷିଣ ପୂର୍ବ ରେଳପଥର ଅବସ୍ଥିତି ଚିଲିକା ଓ ଜନସାଧାରଣ ମଧ୍ୟରେ ସୁଯୋଗ ରଖିବାରେ ସମର୍ଥ ହୋଇଛନ୍ତି ।

## ନୌ-ବାଣିଜ୍ୟ :

ଅତୀତରେ ଚିଲିକା ହ୍ରଦ ଧୂରୀଣ ନୌ-ଯାତ୍ରୀ ଓଡ଼ିଆମାନଙ୍କ ପାଇଁ ଏକ ପ୍ରସିଦ୍ଧ ନୌ-ବାଣିଜ୍ୟିକ କେନ୍ଦ୍ର ଥିଲା । ହ୍ରଦର ବିଭିନ୍ନ ଅଞ୍ଚଳରୁ ଯଥା ପଥରା, କଲଜୁଗ, କାଲୁଗାଁ, ନଗରୀ, ଜୁହୁଡି, ଖୋରଣ, ଘୋରଡିଆ, ବ୍ରହ୍ମଗିରୀ ପ୍ରମୁଖରୁ ନାବିକଗଣ, ବ୍ୟବସାୟୀଗଣ, ସାଧବପୁଅ ତଥା ଧର୍ମ ଯାତ୍ରୀମାନେ ସୁଦୂର ଦେଶମାନଙ୍କୁ ସେମାନଙ୍କର ପୋତ ଚାଳନା କରୁଥିଲେ । ବିଭିନ୍ନ ପୁରାଣ, ବିଦେଶୀ ପର୍ଯ୍ୟଟକମାନଙ୍କ ବିବରଣୀ, ପ୍ରତ୍ନତାତ୍ତ୍ୱିକ ଖନନ ତଥା ଆଞ୍ଚଳିକ ପରମ୍ପରାରୁ ଜଣାଯାଏ ବିଶାଳ ଚିଲିକାହ୍ରଦ ଏକ ସୁ-ବନ୍ଦର ଭାବେ କାର୍ଯ୍ୟକାରି ହଜାର ହଜାର ସମୁଦ୍ରଗାମୀ ପୋତକୁ ନିଜ ବକ୍ଷରେ ସ୍ଥାନ ଦେଇଥିଲା । ସପ୍ତମ ଶତାବ୍ଦୀରେ ଚୀନ ପରିବ୍ରାଜକ ହୁଏନ୍‌ସାଂ ଏହାକୁ 'a Bay of the Sea' ଭାବରେ ବର୍ଣ୍ଣନା କରିଛନ୍ତି । ସେ ଲେଖିଛନ୍ତି ଏହାର ଉପକୂଳରେ ପାହାଡ ପର୍ବତ ପୂର୍ଣ୍ଣ କଙ୍ଗୋଦ ଦେଶ ଅବସ୍ଥିତ ଥିଲା । ଐତିହାସିକ ଶରତ ଚନ୍ଦ୍ର ବେହେରା ଶୈଳୋଦ୍ଭବ ରାଜବଂଶ ଆଲୋଚନା ପରିପ୍ରେକ୍ଷୀରେ ହୁଏନ୍‌ସାଂଙ୍କ ସହିତ ଏକମତ ହେବା ସାଙ୍ଗକୁ 'a Bay of the Sea'କୁ ଚିଲିକା ହ୍ରଦ ବୋଲି ପ୍ରମାଣିତ କରିଛନ୍ତି । ହୁଏନସାଂ ତାଙ୍କ ସି-ୟୁ-କି ଗ୍ରନ୍ଥରେ ବର୍ଣ୍ଣନା କରିଛନ୍ତି ଯେ କଙ୍ଗୋଦରେ ବହୁ ମୂଲ୍ୟବାନ ବିରଳ ଦ୍ରବ୍ୟମାନ ଭରପୁର ଥିଲା । ଏହି ଅଞ୍ଚଳ ବିରାଟ କଳା ହାତୀ ଉତ୍ପାଦନ ପାଇଁ ପ୍ରସିଦ୍ଧ ଥିଲା । ପେରିପ୍ଲସ ଅଫ୍ ଦି ଏରାଥ୍ରିଆନ୍ ସି ଗ୍ରନ୍ଥରୁ ଜଣାପଡେ ଏଠାରୁ 'ବୋସାରେ' ନାମକ ପ୍ରସିଦ୍ଧ ହାତୀଦାନ୍ତ ବାହାର ଦେଶକୁ ରପ୍ତାନୀ କରାଯାଉଥିଲା । ପୁନଶ୍ଚ, ଶୈଳୋଦ୍‌ଭବ ରାଜା ମଧ୍ୟମରାଜଙ୍କ ଏକ ତାମ୍ରପଟ୍ଟକ ଚିଲିକା ମଧ୍ୟସ୍ଥ ପାରିକୁଦ ଦ୍ୱୀପରୁ ଆବିଷ୍କୃତ ହୋଇଥିବାରୁ ଜଣାଯାଏ ଏକଦା ପାରିକୁଦ ଶୈଳୋଦଭବ ରାଜ୍ୟର ଅନ୍ତର୍ଭୁକ୍ତ ଥିଲା । ଏଥିରୁ ମଧ୍ୟ ସ୍ପଷ୍ଟ ଅନୁମେୟ ହୁଏଯେ ବିଶେଷକରି କଙ୍ଗୋଦ ରାଜ୍ୟର ସାଧବ ଓ ବ୍ୟବସାୟୀମାନେ ଚିଲିକା ମଧ୍ୟ ଦେଇ ବ୍ୟବସାୟ ବାଣିଜ୍ୟ କରୁଥିଲେ । ଚିଲିକା ଉପକଣ୍ଠରେ ଅବସ୍ଥିତ ବନ୍ଦରମାନ ଯଥା ପାଲୁର, ଦୋସାରିନ, ମାଣିକପାଟଣା ଇତ୍ୟାଦି ଏ ସତ୍ୟାକୁ ପ୍ରମାଣିତ କରିଥାନ୍ତି । ଏହାମଧ୍ୟ ବିଶ୍ୱାସ କରାଯାଏ ଯେ ଭୌମକର ରାଜବଂଶ ଦ୍ୱାରା ବିତାଡିତ ହେବାପରେ କଙ୍ଗୋଦର ଶୈଳୋଦଭବୀମାନେ ଚିଲିକା ହ୍ରଦର ପାଲୁର ବନ୍ଦର ଦେଇ ଦକ୍ଷିଣ-ପୂର୍ବ ଏସିଆକୁ ଯାତ୍ରା କରିଥିଲେ ଏବଂ ସୁବର୍ଣ୍ଣ ଦ୍ୱୀପରେ (ଆଧୁନିକ ସୁମାତ୍ରା) ଶୈଳେନ୍ଦ୍ର ନାମରେ ରାଜବଂଶ ପ୍ରତିଷ୍ଠା କରି ଉତ୍କଳୀୟ ସଭ୍ୟତା ଓ ସଂସ୍କୃତିକୁ ବିସ୍ତାର କରିଥିଲେ ।

ଚିଲିକା ହ୍ରଦ ଅତୀତରେ ଅନେକ ସମୟରେ ଓଡ଼ିଶାର ଅଧିବାସୀ ତଥା ସେମାନଙ୍କର ପରମପୂଜ୍ୟ ଆରାଧ୍ୟ ଦେବତା ଜଗନ୍ନାଥଙ୍କୁ ମଧ୍ୟ ଆଶ୍ରୟ ଦେଇଛି । କୁହାଯାଏ ସୁଲତାନ୍ ଫିରୋଜ ତୁଗଲକ୍ (ଖ୍ରୀ୧୩୬୧) ତାଙ୍କର ବିରାଟ ସେନାବାହିନୀ ଧରି ଚିଲିକାସ୍ଥ ଏକ ଦ୍ୱୀପ ଅଭିମୁଖେ ଯୁଦ୍ଧ ଅଭିଯାନ କରିଥିଲେ, କାରଣ ତାଙ୍କ ନିର୍ଦ୍ଧାରିତ ଆକ୍ରମଣ ପୂର୍ବରୁ ରାଜ୍ୟର ଲୋକମାନେ ବହୁ ସଂଖ୍ୟାରେ ସେହି ଦ୍ୱୀପରେ ଆଶ୍ରୟ ନେଇଥିଲେ । କେହି କେହି ଏହି ହ୍ରଦକୁ ଅଂଶୁପା ହ୍ରଦ ବୋଲି ବର୍ଣ୍ଣନା କରିଛନ୍ତି । ମାଦଳା ପାଞ୍ଜିର ବର୍ଣ୍ଣନାରୁ ଜଣାଯାଏ କଳାପାହାଡର ପୁରୀ ଆକ୍ରମଣର ଅବ୍ୟବହିତ ପୂର୍ବରୁ ମନ୍ଦିର ପୂଜକ ତଥା ସେବକମାନେ ଜଗନ୍ନାଥଙ୍କ ବିଗ୍ରହ ତଥା ତାଙ୍କର ଛତିଶିନିଯୋଗର ଉପକରଣମାନ ନେଇ ଚିଲିକାମଧ୍ୟସ୍ଥ ଏକ ଦ୍ୱୀପରେ ଲୁଚାଇ ଦେଇଥିଲେ । ମଧ୍ୟ ଯୁଗରେ ଦକ୍ଷିଣ ଭାରତର ଲୋକମାନେ ଜାହାଜରେ ଚିଲିକାର ଜଳରାଶି ଦେଇ ପବିତ୍ର ପୁରୁଷୋତ୍ତମ କ୍ଷେତ୍ର ପୁରୀକୁ ଜଗନ୍ନାଥ ଦର୍ଶନ ନିମିତ୍ତ ଯାତ୍ରା କରୁଥିଲେ । ପଞ୍ଚଦଶ ଶତାବ୍ଦୀର ଶେଷ ପର୍ଯ୍ୟାୟରେ ଗଜପତି ପୁରୁଷୋତ୍ତମ ଦେବ ତାଙ୍କର କାଞ୍ଚି ବିଜୟ ପରେ ଚିଲିକା ମଧ୍ୟଦେଇ ପୁରୀକୁ ପ୍ରତ୍ୟାବର୍ତ୍ତନ କରିଥିଲେ । ଇଂରେଜ ରାଜୁତି ସମୟରେ ମଧ୍ୟ ଏହି ହ୍ରଦ ମାନ୍ଦ୍ରାଜ ପ୍ରେସିଡେନ୍ସି ଓ ପୁରୀ ମଧ୍ୟରେ ଉତ୍ତମ ସମ୍ପର୍କ ସ୍ଥାପନ କରିପାରିଥିଲା । ମହାଭାରତୀୟ ସଭ୍ୟତା ଓ ସଂସ୍କୃତିକୁ ବାହ୍ୟଦେଶରେ ବିକୀରଣ ପାଇଁ ବାସ୍ତବିକ ଏ ହ୍ରଦ ଏକଦା ତୋରଣ ସଦୃଶ କାର୍ଯ୍ୟ

କରୁଥିଲା । ଅଦ୍ୟାବଧି ଓଡ଼ିଶାର ଅଧିବାସୀଗଣ ବିଶେଷ କରି କୁମାରୀମାନେ କାର୍ତ୍ତିକ ମାସର ପୂର୍ଣ୍ଣିମା ତିଥିରେ 'ବୋଇତବନ୍ଦାଣ ଉତ୍ସବ' ମାଧ୍ୟମରେ କଦଳୀ ବାହୁଙ୍ଗା, ସୋଲ, କାଗଜ ନିର୍ମିତ ଡଙ୍ଗା ଭସାଇ ନିଜର ସ୍ମୃତ ଗୌରବମୟ ନୌ-ବାଣିଜ୍ୟ ପରମ୍ପରାକୁ ମନେ ପକାଉଥାନ୍ତି ।

ପ୍ରାଚୀନ କାଳରେ ଚିଲିକା ଉପକୂଳରେ ଅନେକ ବନ୍ଦର ଗଢ଼ି ଉଠିଥିବାର ପ୍ରମାଣ ଦେଖିବାକୁ ମିଳେ । ଚିଲିକା ସେ ସମୟରେ ପୋତଚାଳନା ପାଇଁ ଏକ ଉତ୍କୃଷ୍ଟ ଅଞ୍ଚଳ ଥିଲା । ବ୍ରହ୍ମାଣ୍ଡପୁରାଣରୁ ଜଣାଯାଏ, ଏହା ଏକ ଗୁରୁତ୍ୱପୂର୍ଣ୍ଣ ବ୍ୟବସାୟିକ ତଥା ବାଣିଜ୍ୟିକ କେନ୍ଦ୍ର ଥିଲା । ଚିଲିକାର ବିଭିନ୍ନ ବନ୍ଦରରୁ ଜାହାଜମାନ ବିଶେଷ କରି ଦକ୍ଷିଣ-ପୂର୍ବ-ଏସିଆର ଜାଭା, ସୁମାତ୍ରା, ବୋର୍ଣ୍ଣିଓ, ବାଲି, ସିଂହଳ ଇତ୍ୟାଦିକୁ ଯାଉଥିଲେ । ସେହି କାଳରେ ଚିଲିକାର ସୁଗଭୀରତା ଓ ଅସଂଖ୍ୟମୁହାଣ ସମୁଦ୍ରଗାମୀ ଜାହାଜଗୁଡ଼ିକୁ ଯାତାୟତ ଲାଗି ଅନୁକୂଳଥିଲା । ଦ୍ୱିତୀୟ ଶତାବ୍ଦୀରେ ଗ୍ରୀକ୍ ଭୌଗୋଳିକବିତ୍ ଟଲେମୀ ଚିଲିକାର ପ୍ରଧାନ ବନ୍ଦର ପାଲୁର ସମ୍ବନ୍ଧରେ ବିଶଦ ବିବରଣୀ ପ୍ରଦାନ କରିଛନ୍ତି । ତାଙ୍କ ମତରେ ପାଲୁର ସେତେବେଳେ ଏକ ଆନ୍ତର୍ଜାତିକ ଖ୍ୟାତି ସମ୍ପନ୍ନ ବନ୍ଦର ଥିଲା ଓ କଳିଙ୍ଗର ନାବିକମାନେ ପାଲୁର ବନ୍ଦରଠାରୁ ସିଧା ସଳଖ ବଙ୍ଗୋପସାଗର ଅତିକ୍ରମ କରି ଦକ୍ଷିଣ-ପୂର୍ବ ଏସିଆ ଦେଶମାନଙ୍କୁ ଯାତ୍ରା କରୁଥିଲେ । ଟଲେମୀଙ୍କ ଏହି ପାଲୁର ବନ୍ଦର ଆଧୁନିକ ଗଞ୍ଜାମ ଜିଲ୍ଲାର ପାଲୁର ଗ୍ରାମ ବୋଲି ଚିହ୍ନିତ କରାଯାଇଛି । ସିଲ୍‌ଭେନ୍ ଲେଭି ପାଲୁର ବନ୍ଦରକୁ ଦନ୍ତପୁର (ଦାନ୍ତ ସହର) ସହିତ ତୁଳନା କରିଛନ୍ତି, ଯେଉଁଠାରେ କଳିଙ୍ଗ ରାଜକନ୍ୟା ହେମମାଳା ଓ ତାଙ୍କ ସ୍ୱାମୀ ଦନ୍ତକୁମାର ବୁଦ୍ଧଙ୍କର ଦାନ୍ତନେଇ ସିଂହଳ ଯାତ୍ରା କରିଥିଲେ । ସେ କାଳରେ ଦକ୍ଷିଣ ଓଡ଼ିଶାର ପ୍ରସିଦ୍ଧ ନଦୀ ଋଷିକୁଲ୍ୟା ପାଲୁରଠାରେ ଚିଲିକା ସହିତ ମିଶିଥିଲା । ପେରିପ୍ଲସ ଅଫ୍ ଦି ଏରାଥ୍ରିଆନ୍ ସିର ଅଜ୍ଞାତ ଲେଖକଙ୍କ ଅନୁସାରେ ଦୋସାରିନି ଚିଲିକା କୂଳରେ ଅନ୍ୟତମ ବନ୍ଦର ଥିଲା । ଚିଲିକାର ଉତ୍ତର ସୀମା ମାଣିକ ପାଟଣାଠାରେ ହୋଇଥିବା ପ୍ରତ୍ନତାତ୍ତ୍ୱିକ ସର୍ବେକ୍ଷଣ ତଥା ଖନନରୁ ଜଣାଯାଏ ମାଣିକପାଟଣା ପ୍ରାଚୀନ ଓ ମଧ୍ୟଯୁଗରେ ଏକ ଆନ୍ତର୍ଜାତିକ ବନ୍ଦର ଥିଲା । ମାଣିକ ପାଟଣା ବନ୍ଦର ଓ ହୁଏନ୍‌ସାଂଙ୍କର ଚେଲିତାଲୋ ବନ୍ଦର ଏକ ଓ ଅଭିନ୍ନ ତଥା ମାଣିକ ପାଟଣା ଚେଳିତାଲୋର ପରିବର୍ତ୍ତୀ ନାମକରଣ ବୋଲି ପ୍ରମାଣିତ ହୋଇଛି । ବନ୍ଦର ବ୍ୟତୀତ ବିଭିନ୍ନ ସମୁଦ୍ର ପ୍ରସ୍ଥାନ ସ୍ଥାନମାନଙ୍କରୁ ଚିଲିକା କୂଳସ୍ଥ ସୋରଣ, ନଇରି, ପଥରା, କୁହୁଡି, ବାଲିଆ ଇତ୍ୟାଦି ଗ୍ରାମର ଲୋକେ ଜଳଯାତ୍ରା କରି ନୌ-ବାଣିଜ୍ୟ କରୁଥିଲେ । ସମ୍ବଲପୁରର ହୀରାକୁଦ ଅଞ୍ଚଳର ପ୍ରସିଦ୍ଧ ହୀରା ମହାନଦୀ ଓ ତାର ଶାଖାନଦୀ ଯଥା ଦୟା, ଭାର୍ଗବୀ, ପ୍ରାଚୀ ଇତ୍ୟାଦି ଦେଇ ଚିଲିକା ଉପକୂଳସ୍ଥ ବିଭିନ୍ନ ବନ୍ଦରକୁ ଆସୁଥିଲା ଓ ସେଠାରୁ ବାହ୍ୟଦେଶକୁ ବିଶେଷକରି ରୋମ୍ ସାମ୍ରାଜ୍ୟକୁ ରପ୍ତାନୀ ହେଉଥିଲା । ଭୌଗୋଳିକ ସର୍ବେକ୍ଷଣ ତଥା ଜନଶ୍ରୁତିରୁ ଜଣାପଡେ ବାଲୁଙ୍ଗା ସନ୍ନିକଟ ଚିଲିକାକୂଳସ୍ଥ ଦୀପଥାଡିଆ ପାହାଡର ବିରାଟ ପ୍ରସ୍ତର ଦୀପ ଅନ୍ଧକାର ରାତ୍ରିରେ ନୌ-ବାହୀମାନଙ୍କୁ ଦିଗ୍‌ଦର୍ଶନ ଦେଉଥିଲା ।

## ବୋଇତ ଓ ଜାହାଜ ନିର୍ମାଣ କେନ୍ଦ୍ର

ଚିଲିକାହ୍ରଦ ଯେ କେବଳ ଏକ ପ୍ରସିଦ୍ଧ ନୌ-ବାଣିଜ୍ୟିକ କେନ୍ଦ୍ରଥିଲା ତାହାନୁହେଁ, ଏହା ମଧ୍ୟ ଏକ ଅର୍ଣ୍ଣବପୋତ ନିର୍ମାଣର ମୁଖ୍ୟ କେନ୍ଦ୍ର ଥିଲା । ବିଭିନ୍ନ ପୁରାଣ ତଥା ସାହିତ୍ୟ ଉପାଦାନରୁ ଓଡ଼ିଶାର ଜାହାଜ ଏବଂ ବୋଇତ ବିଷୟରେ ସମ୍ୟକ ଧାରଣା ମିଳିଥାଏ । ଅଷ୍ଟାଦଶ ଶତାବ୍ଦୀର ଭଞ୍ଜବିଳାସରେ ବୋଇତର (ନୌକା) ଚିତ୍ର ଦେଖିବାକୁ ମିଳେ । ସଂସ୍କୃତ ଭାଷାରେ ଲିଖିତ 'ବ୍ରହ୍ମାଣ୍ଡ ପୁରାଣ' ତାଳପତ୍ର ପୋଥିରୁ ଚିଲିକାରେ ସଞ୍ଚାଳନ କରୁଥିବା ବୋଇତର ଆକାର, ପ୍ରକାର, ଗଠନ ଶୈଳୀ, ଗମନ କୁଶଳତା ଇତ୍ୟାଦି ବିଷୟରେ ବିଶଦ ବିବରଣୀ ପ୍ରଦାନ କରାଯାଇଛି । ଚିଲିକା ହ୍ରଦ ଦେଇ ସୁଦୂର ଜାଭା, ମାଳୟ, ସୁମାତ୍ରା, ସିଂହଳଦ୍ୱୀପ ପ୍ରଭୃତି ସହ ଓଡ଼ିଆମାନଙ୍କର ନୌ-ବାଣିଜ୍ୟ ସମ୍ପର୍କ ଏଥିରେ ମଧ୍ୟ ସ୍ଥାନ ପାଇଛି । ଚିଲିକା ଉପକୂଳବର୍ତ୍ତୀ ଗ୍ରାମଗୁଡିକ ଯଥା - ସୋରଣ, ପଥରା, ନଇରୀ ଇତ୍ୟାଦି ନୌକା ବା ଜାହାଜ ନିର୍ମାଣ ପାଇଁ ପ୍ରସିଦ୍ଧି ଅର୍ଜନ କରିଥିଲା ଏବଂ ଉପକୂଳବର୍ତ୍ତୀ ଉପରୋକ୍ତ ଗ୍ରାମଗୁଡ଼ିକର ଅଧିବାସୀମାନଙ୍କର ବୋଇତ ଓ ଜାହାଜ ନିର୍ମାଣ ଏକ ମୁଖ୍ୟ ଜୀବିକା ଥିଲା । ଜାହାଜ ନିର୍ମାଣ କୌଶଳରେ ସେମାନେ ଭାରତର ଅନ୍ୟ ଅଞ୍ଚଳ ଲୋକଙ୍କଠାରୁ ଅଗ୍ରଗାମୀ ତଥା କୁଶଳୀ ଥିଲେ । ଦିଗନ୍ତ ବିସ୍ତାରୀ ତରଙ୍ଗାୟିତ ସମୁଦ୍ରବକ୍ଷରେ ଜାହାଜମାନ ସୁରୁଖୁରୁରେ ଗତି କରିପାରିଲା ଭଳି ଜାହାଜମାନ ସେମାନେ ନିର୍ମାଣ କରୁଥିଲେ । ଅଦ୍ୟାବଧି ଅଧିକାଂଶ ଚିଲିକା ଉପକୂଳବର୍ତ୍ତୀ ଅଞ୍ଚଳରେ ଲୋକେ ପାରମ୍ପରିକ ରୀତିରେ ନୌକା ନିର୍ମାଣକୁ ନିଜର ମୌଳିକ ବୃତ୍ତିରୂପେ ଧରି ନେଇଛନ୍ତି । ଜାହାଜଟି ଅନାୟାସରେ ଜଳ ଉପରେ ଗତିକରିବା ପାଇଁ ତିନୋଟି ଯନ୍ତ୍ର ସେଥିରେ ଖଞ୍ଜାଯାଉଥିଲା ଯଥା : - କୀବ ଯନ୍ତ୍ର, ଯାହା ଗତିପଥକୁ ତ୍ୱରାନ୍ୱିତ କରାଏ । ମତ୍ସ୍ୟଯନ୍ତ୍ର, ଯାହା ଗତି ନିର୍ଦ୍ଧାରଣ କରିଥାଏ । ପକ୍ଷୀଯନ୍ତ୍ର, ଯାହା ବାୟୁର ଗତିପଥକୁ ନିର୍ଣ୍ଣୟ କରିଥାଏ ଓ କୂର୍ମ ଯନ୍ତ୍ର, ଯାହା ପାଣିପାଗ ବିଷୟରେ ସୂଚନା ପ୍ରଦାନ କରିଥାଏ । ନୌକା ବା ଜାହାଜଗୁଡିକର ଉଚ୍ଚତା ଓ ଲମ୍ବର ସୁଦୃଢ଼ ଦୃଷ୍ଟିରୁ ସେଗୁଡ଼ିକୁ ଯଥାକ୍ରମେ ଉନ୍ନତ ଓ ଦୀର୍ଘା କୁହାଯାଉଥିଲା ।

### ଅବକ୍ଷୟ ଓ ପତନ :

ଉନ୍ନେଶକାଳରୁ ସମୟ ସହିତ ତାଳଦେଇ ବହୁ ଘାତ ପ୍ରତିଘାତ ପରେ ଚିଲିକା ତାର ସ୍ୱରୂପ ଓ ଆକାରକୁ ହ୍ରାସ କରି ଦେଇଛି । ହ୍ରଦ ମଧ୍ୟ ଦେଇ ସୁଦୂର ଦେଶମାନଙ୍କୁ ଜଳଯାତ୍ରାର ଆଜି ପତନ ଘଟିଛି । ସମୁଦ୍ରଗାମୀ ନୌକା ନିର୍ମାଣ କାରଖାନାଗୁଡ଼ିକ କାଳକ୍ରମେ ଉଭେଇ ଯାଉଛି । ପାରମ୍ପରିକ ନୌକା ନିର୍ମାଣରେ ଆଜି ଘୋର ପରିବର୍ତ୍ତନ ଦେଖାଦେଇଛି । ବଡ଼ ଜାହାଜ ପରିବର୍ତ୍ତେ କାରୀଗରମାନେ କ୍ଷୁଦ୍ର ଡଙ୍ଗା ନିର୍ମାଣରେ ନିଜକୁ ନିୟୋଜିତ କରିଦେଇଛନ୍ତି । ସତେ ଯେପରି କର୍ପୂର ଯାଇ କେବଳ କନା ଖଣ୍ଡିକ ପଡି ରହିଛି । ହ୍ରଦ ଆଜି ପୋତିହୋଇ ଅଗଭୀର ହୋଇ ଯାଉଛି । ବଡ ଜାହାଜର ସଞ୍ଚଳନ ଆଜି ଏଠାରେ ଅସମ୍ଭବ ହୋଇ ପଡିଛି । ଦୟା, ଭାର୍ଗବୀ ଇତ୍ୟାଦିରୁ ଆନୀତ ବାଲିଦ୍ୱାରା

ହ୍ରଦ ପୋତି ହେବା ସାଙ୍ଗକୁ ପ୍ରାକୃତିକ ବିପର୍ଯ୍ୟୟ, ବର୍ଦ୍ଧିତ ଉପକୂଳ ନୌବଳଯାଇଁ, ବିଶେଷକରି ଇଂରେଜମାନଙ୍କର ଓଡ଼ିଶା ଅଧିକାର ଚିଲିକାରେ ପ୍ରାଚୀନ ଓଡ଼ିଶାର ଗୌରବମୟ ନୌ-ବାହିନୀ ପରମ୍ପରାକୁ ଏକ ଶକ୍ତ ଆଘାତ ଦେଇଥିଲା । ଡବ୍ଲ୍ୟୁ.ଡବ୍ଲ୍ୟୁ.ହଣ୍ଟରଙ୍କର 'ଓଡ଼ିଶା' ଗ୍ରନ୍ଥରୁ ଚିଲିକା ମୁହାଣରେ ବାଲିପୋତି ହେବାର ବର୍ଣ୍ଣନାରୁ ଜଣାଯାଏ, ଚିଲିକାର ପତନ ପାଇଁ ମୁଖ୍ୟତଃ ଦାୟୀ ବାଲୁକାରାଶିର ହ୍ରଦ ମଧ୍ୟକୁ ସଞ୍ଚଳନ । ହଣ୍ଟର କହନ୍ତି, ଚିଲିକାର ମୁହାଣକୁ ଓସାରିଆ କରିବା ସହଜ କିନ୍ତୁ ଏହାର ସ୍ଥିତାବସ୍ଥାକୁ ପରିଚାଳନା କରିବା ଅତ୍ୟନ୍ତ କଷ୍ଟକର । ଉପଗ୍ରହ ସର୍ବେକ୍ଷଣ ସୂତ୍ରରୁ ଜଣାଯାଏ ଚିଲିକାର ମୂଳ ଅବସ୍ଥିତି ୨୨୦୦ ବର୍ଗ କିଲୋମିଟର ଥିବାବେଳେ ଉତ୍ପାଦସରେ ତାହା ପୋତିହୋଇ ୯୦୦ ବର୍ଗ କି.ମି.ରୁ (ଗ୍ରୀଷ୍ମ ଋତୁରେ ) ୧୧୫୦ ବର୍ଗ କି. ମିରେ (ବର୍ଷା ଋତୁରେ) ସୀମିତ ରହୁଛି । ଚିଲିକାରେ ପଡ଼ିଥିବା ବିଭିନ୍ନ ନଦୀ ଓ ନାଳ ମଧ୍ୟଦେଇ ବାର୍ଷିକ ହାରାହାରି ୧୩ ନିୟୁତ ଟନ୍ ପଙ୍କ ଆସି ଜମା ହେଉଛି । ସୁତରାଂ ଚିଲିକା ହ୍ରଦର ଗଭୀରତା ସ୍ଥାନ ବିଶେଷରେ ଦେଢ଼ଫୁଟକୁ ହ୍ରାସ ପାଇଲାଣି । ଚିଲିକା ଅବବାହିକାରେ ବ୍ୟାପକ ଜଙ୍ଗଲ କ୍ଷୟ ଏହାର ପ୍ରଧାନ କାରଣ । ଏହା ସାଙ୍ଗକୁ ଚିଲିକାରେ ବଢ଼ିଉଠିଥିବା ବିଭିନ୍ନ ପ୍ରକାର ବଣଗୁଳ୍ମ ତଥା ବୃକ୍ଷ ଚିଲିକାର ନୌ-ବାଣିଜ୍ୟକୁ ସଙ୍କୁଚିତ କରିଦେଉଛି । ଚିଲିକାର ଅବକ୍ଷୟ ଯୋଗୁଁ ହ୍ରଦରୁ ମାଛ, ଚିଙ୍ଗୁଡ଼ି ଓ କଙ୍କଡ଼ା ଉତ୍ପାଦନ କ୍ରମାଗତ ଭାବରେ କମିଯାଉଛି ।

ଚିଲିକା ବାସ୍ତବିକ ଅପୂର୍ବ ସୁନ୍ଦରୀ, ସୌନ୍ଦର୍ଯ୍ୟର ଭଣ୍ଡାର ତଥା ପ୍ରାକୃତିକ ସୁନ୍ଦରୀ ରାଣୀ । ବିଭିନ୍ନ ରୋମାଞ୍ଚକର ନାମ ନେଇ ଅନେକ ଛୋଟ ଛୋଟ ଦ୍ୱୀପ ଚିଲିକାର ବକ୍ଷ ତଥା ବିଭିନ୍ନ ଅଞ୍ଚଳରେ ମୁଣ୍ଡ ଟେକି ଉଠିଛି । କାଳିଯାଈ ସେମାନଙ୍କ ମଧ୍ୟରେ ଅନ୍ୟତମ । କାଳିଯାଈର ପର୍ବତ ସୌନ୍ଦର୍ଯ୍ୟ ସନ୍ଦର୍ଶନ ଅତ୍ୟନ୍ତ ମନୋମୁଗ୍ଧକର ତଥା ରମଣୀୟ । ଯୁଗେ ଯୁଗେ ଚିଲିକା କବି, ଭାବୁକ, ପ୍ରେମିକମାନଙ୍କୁ ପ୍ରେରଣା ତଥା ଉତ୍ସାହ ଯୋଗାଇ ଆସିଛି । ଏହାର ସୌନ୍ଦର୍ଯ୍ୟ ଅମର କବି ରାଧାନାଥ ରାୟଙ୍କୁ ପ୍ରେରଣା ଯୋଗାଇ ଥିଲା ତାଙ୍କର 'ଚିଲିକା' କାବ୍ୟ ରଚନା କରିବା ପାଇଁ । ଏହି ଚିଲିକା କାବ୍ୟ ଓଡ଼ିଆ ସାହିତ୍ୟରେ ଭୌଗୋଳିକ ବର୍ଣ୍ଣନାର ଏକ ଅମୂଲ୍ୟ ସମ୍ପଦ । ଉତ୍କଳମଣି ଗୋପବନ୍ଧୁ ଦାସ ତାଙ୍କର 'ବନ୍ଦୀର ଆତ୍ମକଥା'ରେ ଚିଲିକାର ଭୂୟସୀ ପ୍ରଶଂସା କରିଛନ୍ତି ।

ଚିଲିକା ପକ୍ଷୀମାନଙ୍କର ସ୍ୱର୍ଗ । ଶୀତ ଋତୁରେ ୧୫୦ ରୁ ଅଧିକ ପ୍ରକାରର ପକ୍ଷୀ ଭାରତର ବିଭିନ୍ନ କୋଣରୁ ତଥା ବିଦେଶରୁ ଏଠାକୁ ଆସିଥାନ୍ତି । ଏମାନଙ୍କ ମଧ୍ୟରୁ ୯୩ ପ୍ରକାର ପକ୍ଷୀ ହେଉଛନ୍ତି ବିଦେଶାଗତ, ଯେଉଁମାନେ ସୁଦୂର କାସ୍ପିଆନ ଅଞ୍ଚଳ, ସାଇବେରିଆ, କଜାଖ, ଖିରଗିଜ୍, ଉରାଲ, ବୈକାଲ ହ୍ରଦ, ତିବ୍ବତ ଇତ୍ୟାଦି ୟୁରୋସିଆ ଅଞ୍ଚଳରୁ ଅତ୍ୟଧିକ ଶୀତ କବଳରୁ ରକ୍ଷା ପାଇବା ପାଇଁ ହଜାର ହଜାର କିଲୋମିଟର ଅତିକ୍ରମ କରି ଚିଲିକା ଆସିଥାନ୍ତି । ଏମାନେ ସାଧାରଣତଃ ଆନ୍ତଃହିମାଳୟ ପଥ (ଟ୍ରାନସ୍ ହିମାଳୟାନ୍ ରୁଟ୍) ତଥା ପାକିସ୍ଥାନ, ଆଫଗାନିସ୍ଥାନ ପଥଦେଇ ଏଠାକୁ ଆସିଥାନ୍ତି । ଏଠାରେ ସେମାନେ ଖାଦ୍ୟ ସଂଗ୍ରହ ସାଙ୍ଗକୁ ଅଣ୍ଡା ମଧ୍ୟ ଦେଇଥାନ୍ତି । ଚିଲିକା ମଧ୍ୟସ୍ଥ ୧୫ ବର୍ଗ କିଲୋମିଟର ପରିମିତ ଅପର୍ଯ୍ୟାପ୍ତ ନଳଘାସ ପରିପୂର୍ଣ୍ଣ ନିରୋଳା ତଥା ପକ୍ଷୀମାନଙ୍କ ପାଇଁ ପ୍ରଚୁର ଖାଦ୍ୟ ସମ୍ଭାର ଭରପୂର ନଳବଣ-ହେଉଛି ପକ୍ଷୀମାନଙ୍କର ବିହାର ସ୍ଥଳୀ । ପକ୍ଷୀମାନେ ସାଧାରଣତଃ ଏଠାକୁ ଅକ୍ଟୋବର ମାସର ମଧ୍ୟଭାଗରୁ ଜାନୁୟାରୀ ମାସର ଶେଷ ପର୍ଯ୍ୟନ୍ତ ସମୟ ମଧ୍ୟରେ ଆସିଥାନ୍ତି ଏବଂ ଦିନର ଉଷ୍ଣତା ବଢ଼ିଲାପରେ ମାର୍ଚ୍ଚମାସ ବେଳକୁ ସ୍ୱସ୍ଥାନକୁ ପ୍ରତ୍ୟାବର୍ତ୍ତନ କରିଥାନ୍ତି । ସେମାନଙ୍କର ଚିଚିରି ମିଚିରି କଳରବରେ ନିର୍ବାକ ଚିଲିକା ଜୀବନ୍ତ ତଥା ସଙ୍ଗୀତ ମୁଖର ହୋଇଉଠେ । ଏହାକୁ ଓଡ଼ିଶା ସରକାର ପକ୍ଷୀ ଅଭୟାରଣ୍ୟ ରୂପେ ଘୋଷଣା କରିଛନ୍ତି ।

ଚିଲିକା କେବଳ ସୌନ୍ଦର୍ଯ୍ୟମୟୀ ତଥା ରୂପବତୀ ନୁହେଁ ଏହା ବିତ୍ତଶାଳିନୀ ମଧ୍ୟ । କେଉଁ ପ୍ରାକ୍‌ଐତିହାସିକ ଯୁଗରୁ ଏହା ଓଡ଼ିଶାର ଅର୍ଥନୈତିକ ସମୃଦ୍ଧିକୁ ଋଦ୍ଧିମନ୍ତ କରି ଆସିଛି । ବର୍ତ୍ତମାନ ମଧ୍ୟ ଓଡ଼ିଶାର ଅର୍ଥନୈତିକ ସ୍ୱଚ୍ଛଳତାର ଏହା ଏକ ପ୍ରଧାନ ଉତ୍ସ । ଚିଲିକା ହେଉଛି ଏକ ଉତ୍କୃଷ୍ଟ ମତ୍ସ୍ୟ ଉତ୍ପାଦନକାରୀ କେନ୍ଦ୍ର । ମାଛ ମାରିବା ଚିଲିକା ଉପକୂଳ ଅଧିବାସୀମାନଙ୍କର ଏକ ପ୍ରଧାନ ଜୀବିକା । ଚିଲିକା ବିଭିନ୍ନ ପ୍ରକାର ମାଛରେ ଭରପୂର । ଚିଲିକାର ଅଧିକାଂଶ ମାଛ, ପ୍ରାୟ ଏକ ତୃତୀୟାଂଶ ପ୍ରତିଦିନ କଲିକତା ବଜାରକୁ ଯାଇଥାଏ । ଚିଲିକାର ଚିଙ୍ଗୁଡ଼ି ଜାତୀୟ ତଥା ଆନ୍ତର୍ଜାତିକ ବଜାରରେ ଚାହିଦା ହାସଲ କରିପାରିଛି ।

ଏହା ବ୍ୟତୀତ ଚିଲିକା ଏକ ସୁନ୍ଦର ପର୍ଯ୍ୟଟନ କ୍ଷେତ୍ର । ବର୍ଷତମାମ ପର୍ଯ୍ୟଟକମାନେ ଦେଶ ବିଦେଶରୁ ଏଠାକୁ ଆସିଥାନ୍ତି । ଉଦ୍ଭିଦ ବିଜ୍ଞାନ, ପ୍ରାଣୀ ବିଜ୍ଞାନ ତଥା ସାମୁଦ୍ରିକ ବିଜ୍ଞାନ ଗବେଷଣା ପାଇଁ ଚିଲିକା ହ୍ରଦ ଏକ ପ୍ରକୃଷ୍ଟ ସ୍ଥାନ । ଏହା ଏକ ସ୍ୱାସ୍ଥ୍ୟପ୍ରଦ ଅଞ୍ଚଳ । ଏସବୁ ପରିପ୍ରେକ୍ଷୀରେ ବିଚାର କଲେ, ବାସ୍ତବିକ, ଚିଲିକା ଓଡ଼ିଶାର ତଥା ଓଡ଼ିଆମାନଙ୍କର ଗର୍ବ ଓ ଗୌରବ ।

ଇତିହାସ ବିଭାଗ
ଗୋପାଳପୁର ମହାବିଦ୍ୟାଳୟ
ଗୋପାଳପୁର, ସମୁଦ୍ରବେଳା
ଗଞ୍ଜାମ, ଓଡ଼ିଶା

—0—

# ଓଡ଼ିଶାର ପ୍ରାଚୀନ କୀର୍ତ୍ତି : ଭୁବନେଶ୍ୱର

*ଶ୍ରୀ କ୍ଷୀରୋଦ ପ୍ରସାଦ ମହାନ୍ତି*

ଓଡ଼ିଶାର ପ୍ରାଚୀନ ସ୍ଥାନମାନଙ୍କ ମଧ୍ୟରେ ମନ୍ଦିରମାଳିନୀ ଭୁବନେଶ୍ୱର ଅନ୍ୟତମ । ଏହାର ନାମକରଣ ବିଷୟରେ କୌଣସି ପ୍ରତ୍ନତାତ୍ତ୍ୱିକ ପ୍ରମାଣ ଏପର୍ଯ୍ୟନ୍ତ ନ ମିଳିଥିଲେ ସୁଦ୍ଧା ବିଭିନ୍ନ ପୁରାଣ, ଉପପୁରାଣ ଓ ଅଭିଲେଖମାନଙ୍କରେ ଏକାମ୍ର କ୍ଷେତ୍ର ନାମରେ ବର୍ଣ୍ଣିତ ହୋଇଛି । ଏକାମ୍ର ଶବ୍ଦର ବ୍ୟବହାର ବ୍ରହ୍ମେଶ୍ୱର ମନ୍ଦିର ଶିଳାଲେଖ ଓ ଅନନ୍ତ ବାସୁଦେବ ମନ୍ଦିର ଶିଳାଲେଖରୁ ଦେଖିବାକୁ ମିଳିଥାଏ । କାଳକ୍ରମେ କୀର୍ତ୍ତିବାସ ଲିଙ୍ଗରାଜ ତ୍ରିଭୁବନ-ଈଶ୍ୱରଙ୍କ ନାମାନୁସାରେ ଏହି କ୍ଷେତ୍ରର ନାମ ଭୁବନେଶ୍ୱର ହୋଇଛି ।

ସ୍ୱର୍ଣ୍ଣାଦ୍ରି ମହୋଦୟ ପୁସ୍ତକରୁ ଜଣାଯାଏ ଯେ ପ୍ରାଚୀନ ଯୁଗରେ ପଶ୍ଚିମରେ ଖଣ୍ଡାଚଳ (ଖଣ୍ଡଗିରି) ଓ ପୂର୍ବରେ ବହିରଙ୍ଗେଶ୍ୱର (ଧଉଳିଗିରି) ର ମଧ୍ୟବର୍ତ୍ତୀ ଭୂଖଣ୍ଡ ଭୁବନେଶ୍ୱର ନାମରେ ଖ୍ୟାତ ଥିଲା । ସେତେବେଳେ ଏହାର ପରିସୀମା ଅତି ବ୍ୟାପକ ଥିଲା । କିନ୍ତୁ ବର୍ତ୍ତମାନ ଆମେ ଯେଉଁ ମନ୍ଦିରମାନଙ୍କର ସମାହାର ସ୍ଥଳୀ ଦେଖୁଛେ ସେହି ମନ୍ଦିର ମାଳିନୀ ନଗରୀର ସୀମା ପୂର୍ବରେ ବ୍ରହ୍ମେଶ୍ୱରଠାରୁ ପଶ୍ଚିମରେ ଭୀମକୁଣ୍ଡ ପର୍ଯ୍ୟନ୍ତ ଓ ଉତ୍ତରରେ ରାମେଶ୍ୱର ମନ୍ଦିରଠାରୁ ଦକ୍ଷିଣରେ କପିଳେଶ୍ୱର ପର୍ଯ୍ୟନ୍ତ ବ୍ୟାପୀ ରହିଅଛି । ମନ୍ଦିରମାଳିନୀ ଭୁବନେଶ୍ୱରର ପୂର୍ବରେ ପ୍ରାଚୀନ କଳିଙ୍ଗ ନଗରୀର ଧ୍ୱଂସାବଶେଷ ଶିଶୁପାଳଗଡ଼, ପଶ୍ଚିମରେ ଖଣ୍ଡଗିରି ଓ ଉଦୟଗିରି, ଦକ୍ଷିଣରେ ଐତିହାସିକ ଧଉଳିଗିରି ଓ ଉତ୍ତରରେ ନବନିର୍ମିତ ଓଡ଼ିଶାର ରାଜଧାନୀ ଶୋଭା ପାଉଛି । ଐତିହାସିକ ସ୍ଥାନମାନଙ୍କର ଉନ୍ନତ ଗଠନ ପ୍ରଣାଳୀ ଏବଂ ପରିବେଶ ଓ ମନ୍ଦିରମାନଙ୍କର ଅନୁପମ କାରୁକାର୍ଯ୍ୟ ଭାରତ ତଥା ଭାରତ ବାହାରର ଦର୍ଶକମାନଙ୍କୁ ବହୁ ପରିମାଣରେ ଆକୃଷ୍ଟ କରି ପାରୁଛି । ସେଥିପାଇଁ ପର୍ଯ୍ୟଟନ ମାନଚିତ୍ରରେ ଭୁବନେଶ୍ୱରର ସ୍ଥାନ ସ୍ୱତନ୍ତ୍ର ହୋଇ ରହିଛି ।

**ଧଉଳିଗିରି :-** ଭୁବନେଶ୍ୱରର ଅନତି ଦୂରରେ ଦୟାନଦୀର ଦକ୍ଷିଣ କୂଳରେ ଧଉଳିଗିରି ଅବସ୍ଥିତ । ମହାରାଜା ଅଶୋକଙ୍କ ଶିଳାଲିପି ପାଇଁ ଏହା ସୁପ୍ରସିଦ୍ଧ । ଖ୍ରୀଷ୍ଟପୂର୍ବ ୨୬୧ ରେ ଏହି ପାହାଡ଼ ନିକଟରେ ଯେଉଁ କଳିଙ୍ଗ ଯୁଦ୍ଧ ହୋଇଥିଲା, ସେଥିରେ ଅଶୋକଙ୍କର ଜୟ ହୋଇଥିଲେ ହେଁ ଯୁଦ୍ଧର ବିଭୀଷିକା ଦେଖି ତାଙ୍କ ହୃଦୟ ତରଳି ଯାଇଥିଲା । ପ୍ରାୟ ଏକ ଲକ୍ଷ ଲୋକ ନିହତ, ଦେଢ଼ ଲକ୍ଷ ଲୋକ ବନ୍ଦୀ ଓ ତାହାଠାରୁ ଅଧିକ ସଂଖ୍ୟକ ଲୋକଙ୍କର କ୍ଷତବିକ୍ଷତ ତାଙ୍କୁ ଚଣ୍ଡାଶୋକରୁ ଧର୍ମାଶୋକରେ ପରିଣତ କରିବାରେ ସାହାଯ୍ୟ କରିଥିଲା । ଏହି ଯୁଦ୍ଧରୁ ଅଶୋକ ମହାନ ଶିକ୍ଷା ଲାଭ କଲେ - "ହିଂସା ପ୍ରଣୋଦିତ ତରବାରୀର ଜୟ, ଜୟ ନୁହେଁ । ମାନବ ହୃଦୟକୁ ଜୟ କରିବା ହିଁ ପ୍ରକୃତ ଜୟ ।" ଏହିଠାରେ ଅଶୋକ ଅସ୍ତ୍ର ପରିତ୍ୟାଗ କରି ବୌଦ୍ଧ ଧର୍ମ ଗ୍ରହଣ କରିଥିଲେ । ଅଶୋକଙ୍କ ନିର୍ଦ୍ଦେଶରେ ଧଉଳି ପାହାଡ଼ ଉପରେ ଗୋଟିଏ ସ୍ତୂପ ନିର୍ମିତ ହେବା ସଙ୍ଗେ ସଙ୍ଗେ ପାହାଡର ପାଦ ଦେଶରେ ଶାନ୍ତିର ପ୍ରତୀକ ହସ୍ତୀର ମସ୍ତକ ଖୋଦା ଯାଇ ତା' ନିକଟରେ ତାଙ୍କର ବାଣୀ ଖୋଦିତ ହୋଇଥିଲା । ତାଙ୍କ ଶାସନର ଅନୁଶାସନଗୁଡ଼ିକ ଏହିଠାରେ ଦେଖିବାକୁ ମିଳେ । ଧଉଳିର ଉପର ଭାଗରେ ପୂର୍ବେ ଗୋଟିଏ ଶିବମନ୍ଦିର ଥିଲା । ତାହା ଭାଙ୍ଗିଯିବାରୁ ୧୯୭୨ ମସିହାରେ ସେହି ମନ୍ଦିରକୁ ପୁନଃ ନିର୍ମାଣ କରାଯାଇଛି ଏବଂ ଏହା ଧବଳେଶ୍ୱର ମନ୍ଦିର ରୂପେ ପରିଚିତ ହେଉଛି । ପାହାଡର ନିମ୍ନ ଭାଗରେ ବହିରଙ୍ଗେଶ୍ୱର ଶିବମନ୍ଦିର ଅବସ୍ଥିତ । କିଛିବର୍ଷ ପୂର୍ବେ ଏହି ପାହାଡ ଉପରେ ଜାପାନ ନିପନ ବୁଦ୍ଧ ସଂଘ ତରଫରୁ ଏକ ଶାନ୍ତିସ୍ତୂପ ପ୍ରତିଷ୍ଠା କରାଯାଇଛି । ପାହାଡର ସ୍ଥାନେ ସ୍ଥାନେ ଗୁମ୍ଫା ଓ ଗୃହାବଳୀର ଭଗ୍ନାବଶେଷ ଦେଖିବାକୁ ମିଳେ । ସେହି ଗୁମ୍ଫାମାନଙ୍କ ମଧ୍ୟରୁ ପଞ୍ଚପାଣ୍ଡବ ବା ପଞ୍ଚ ଗୋସାଇଁ ଗୁମ୍ଫା ଅନ୍ୟତମ । ଧଉଳିର ପୂର୍ବକୁ ରହିଛି ଏକ ବିସ୍ତୃତ ଜଳାଶୟ କୌଶଲ୍ୟାଗଙ୍ଗ ପୁଷ୍କରିଣୀ । ଏଠାରେ ବର୍ତ୍ତମାନ ମାଛ ଚାଷ କରାଯାଉଛି ଏବଂ ଏହା ନିକଟରେ ଭାରତ ସରକାରଙ୍କ ଏକ ବୃହତ୍ତର ମାଛ ଚାଷ ଓ ଗବେଷଣା କେନ୍ଦ୍ର ପ୍ରତିଷ୍ଠା କରାଯାଇଛି ।

**ଶିଶୁପାଳଗଡ :-** ଭୁବନେଶ୍ୱରର ୩ କି.ମି ପୂର୍ବରେ ଐତିହାସିକ ଶିଶୁପାଳଗଡ ଧ୍ୱଂସାବଶେଷ ଦେଖିବାକୁ ମିଳେ । ୧୯୪୮ ମସିହାରେ ତତ୍କାଳୀନ ଭାରତ ସରକାରଙ୍କ ପ୍ରତ୍ନତତ୍ତ୍ୱ ବିଭାଗର ମହାନିର୍ଦ୍ଦେଶକ ବି.ବି. ଲାଲ୍ ଏହାର ଖନନ କାର୍ଯ୍ୟ ହାତକୁ ନେଇଥିଲେ ଓ ସେଠାରୁ ଉଚ୍ଚକୋଟୀର ନିର୍ମାଣ ଯୋଜନା ଥାଇ ଏକ ବର୍ଗାକାର ଗଡକୁ ମାଟି ତଳୁ ଉଦ୍ଧାର କରିଥିଲେ । ଗଡ ମଧ୍ୟରୁ ବାହାରିଥିବା ଡମ୍ବାର ମାଳି, ହାତଗଢ଼ୁ, କଂସାଖାଡ଼ି ପ୍ରଭୃତି ପ୍ରତ୍ନତାତ୍ତ୍ୱିକ ଅବଶେଷ ଓ ଅନ୍ୟାନ୍ୟ ପାରିପାର୍ଶ୍ୱିକ ତଥ୍ୟକୁ ବିଚାର କରି ସେ ଶିଶୁପାଳଗଡକୁ ଖାରବେଳଙ୍କ ରାଜଧାନୀ 'କଳିଙ୍ଗ ନଗରୀ' ସହିତ ଚିହ୍ନିତ କରାଇଛନ୍ତି । ବର୍ତ୍ତମାନ ଏହି ଗଡର ଚାରିପାଖ ପାଚେରୀ ଓ ତାର ପ୍ରବେଶ ଦ୍ୱାରର ଭଗ୍ନାବଶେଷ ଦେଖିବାକୁ ମିଳିଥାଏ ।

**ଖଣ୍ଡଗିରି ଓ ଉଦୟଗିରି :-** ଭୁବନେଶ୍ୱରର ପଶ୍ଚିମ ପଟରେ ଖଣ୍ଡଗିରି ଓ ଉଦୟଗିରି ପାହାଡ ଅବସ୍ଥିତ । ଏହି ପାହାଡଗୁଡିକ ବିଭିନ୍ନ ଆକୃତିର ଗୁମ୍ଫା ଦ୍ୱାରା ପରିପୂର୍ଣ୍ଣ । ଉଦୟଗିରିରେ ୪୪ଟି ଓ ଖଣ୍ଡଗିରିରେ ୧୪ ଟି ଗୁମ୍ଫା ଦେଖିବାକୁ ମିଳେ । ଦୁଇ ହଜାର ବର୍ଷ ତଳେ କଳିଙ୍ଗ ସମ୍ରାଟ ଖାରବେଳ ଜୈନ ସନ୍ନ୍ୟାସୀମାନଙ୍କ ପାଇଁ ଏହି ଗୁମ୍ଫାସବୁ ନିର୍ମାଣ କରାଇଥିଲେ । ରାଣୀ ଗୁମ୍ଫା ଉଦୟଗିରିର ସବୁଠାରୁ ବଡଗୁମ୍ଫା ଏବଂ ଏହାର ଭାସ୍କର୍ଯ୍ୟ ମଧ୍ୟ ଅତି ସୁନ୍ଦର ଅଟେ । ଏହି ଗୁମ୍ଫାରେ ଶିକାର ଦୃଶ୍ୟ ଓ ଜୈନ ଧର୍ମର ନାନା ଉପାଖ୍ୟାନ ଅତି ସୁନ୍ଦର ଭାବେ ଖୋଦିତ ହୋଇଛି । ଏହା ବ୍ୟତୀତ ଉଦୟଗିରିର ଜୟବିଜୟ ଗୁମ୍ଫା, ପଣସ ଗୁମ୍ଫା, ମଞ୍ଚପୁରୀ ଗୁମ୍ଫା ଓ ହାତୀ ଗୁମ୍ଫା ଆଦି ପ୍ରଧାନ । ହାତୀ ଗୁମ୍ଫା ଭିତରେ ଥିବା ଏକ ପଥର ଖାମ୍ବରେ ସମ୍ରାଟ ଖାରବେଳଙ୍କର ୧୩ ବର୍ଷ ଶାସନର ଇତିବୃତ୍ତି ପାଲି ଭାଷାରେ ଖୋଦିତ ହୋଇଛି । ଉଦୟଗିରି ପରି ଖଣ୍ଡଗିରିରେ ମଧ୍ୟ ଅନେକ ଗୁମ୍ଫା ରହିଛି । ସେମାନଙ୍କ ମଧ୍ୟରେ ତତ୍ତ୍ୱ ଗୁମ୍ଫା, ଖଣ୍ଡଗିରି ଗୁମ୍ଫା, ନବମୁନୀ ଓ ଲଲାଟେନ୍ଦୁ ଗୁମ୍ଫା ଆଦି ପ୍ରଧାନ । ତତ୍ତ୍ୱ ଗୁମ୍ଫାରେ ତତ୍ତ୍ୱ ପକ୍ଷୀର ଚିତ୍ର ଖୋଦିତ ହୋଇଛି । ଉଭୟ ଖଣ୍ଡଗିରି ଓ ଉଦୟଗିରିରେ ପାର୍ଶ୍ୱନାଥଙ୍କୁ ଶ୍ରେଷ୍ଠ ଆସନ ଦିଆଯାଇଛି କାରଣ ପାର୍ଶ୍ୱନାଥ ଜୈନମାନଙ୍କର ଇଷ୍ଟ ବା ମୂଳ ଦେବତା । ସେଥିପାଇଁ ଖଣ୍ଡଗିରିର ସମତଳ ଶୀର୍ଷଭାଗରେ ଇଷ୍ଟଦେବତା ପରେଶନାଥଙ୍କ ଏକ ମନ୍ଦିର ସହ ଅନ୍ୟ ଦୁଇଟି ପାର୍ଶ୍ୱ ମନ୍ଦିର ଅଛି । ଉଭୟ ପାହାଡରେ ଗୁମ୍ଫାଗୁଡିକ ବ୍ୟତୀତ ଜୈନସନ୍ନ୍ୟାସୀମାନଙ୍କ ବ୍ୟବହାର ପାଇଁ ଜଳାଶୟମାନ ଦେଖିବାକୁ ମିଳେ । ସେଥି ମଧ୍ୟରୁ ଉଦୟଗିରିର ଲଳିତା କୁଣ୍ଡ ଓ ଖଣ୍ଡଗିରି ଉପରେଥିବା ଆକାଶ ଗଙ୍ଗା ଓ ଗୁପ୍ତ ଗଙ୍ଗା ଅନ୍ୟତମ । ଏହି ଦୁଇ ପାହାଡର ପାଦଦେଶରେ ଏକ ଯୁବ ଛାତ୍ରାବାସ, ଗୋଟିଏ ଡାକବଙ୍ଗଳା ଓ ଧର୍ମଶାଳା ନିର୍ମାଣ କରାଯାଇଛି । ପ୍ରତିଦିନ ଶହ ଶହ ସଂଖ୍ୟାରେ ଯାତ୍ରୀ ଏଠାରେ ଆସି ଠୁଳ ହେଉଛନ୍ତି ଓ ପ୍ରତିବର୍ଷ ମାଘ ସପ୍ତମୀ ତିଥିରେ ଏକ ବିରାଟ ମେଳା ଅନୁଷ୍ଠିତ ହେଉଛି ।

**ଭୁବନେଶ୍ୱର :-** ଭୁବନେଶ୍ୱର ଏକ ମନ୍ଦିର ନଗରୀ ରୂପେ ପରିଚିତ । କ୍ଷେତ୍ର ଅଧିପତି ତ୍ରିଭୁବନେଶ୍ୱର ମହାପ୍ରଭୁଙ୍କ ନାମାନୁସାରେ ଏହାର ନାମ ଭୁବନେଶ୍ୱର ହୋଇଛି । ପ୍ରଭୁ ତ୍ରିଭୁବନେଶ୍ୱର କୃତ୍ତିବାସ ଅଥବା କାର୍ତ୍ତିବାସ, ଲିଙ୍ଗରାଜ ପ୍ରଭୃତି ନାମରେ ଅଭିହିତ । ଭାରତର ପ୍ରସିଦ୍ଧ ଶୈବକ୍ଷେତ୍ରମାନଙ୍କ ମଧ୍ୟରେ ଏହା ଅନ୍ୟତମ । ଭାରତୀୟ ଧର୍ମଶାସ୍ତ୍ର, ପୁରାଣ, ସଂହିତାମାନଙ୍କରେ ଏହା ଏକାମ୍ର କ୍ଷେତ୍ର ନାମରେ ବର୍ଣ୍ଣିତ । ଏକଦା ଏଠାରେ ଦଶ ସହସ୍ର ସଂଖ୍ୟକ ମନ୍ଦିର ଥିବା କଥା ପୌରାଣିକ ବର୍ଣ୍ଣନାରୁ ଜଣାଯାଏ । ପୁରୁଣା ଭୁବନେଶ୍ୱରର ବିଭିନ୍ନ ସ୍ଥାନରେ ଅସଂଖ୍ୟ ଛୋଟବଡ ମନ୍ଦିର ଏକାଠି ଥିବାର ଲକ୍ଷ୍ୟ କରାଯାଏ । ଅନେକ ମନ୍ଦିର କାଳର ପ୍ରଭାବରେ ଭାଙ୍ଗିରୁଜି ଗଲାଣି ଓ କେତେକ ଭଗ୍ନ ଅବସ୍ଥାରେ ଠିଆ ହୋଇ ରହିଛନ୍ତି । ଆଉ କେତେକ ଭଗ୍ନ ମନ୍ଦିରର ପୁନର୍ନିର୍ମାଣ କାର୍ଯ୍ୟ ଚାଲୁ ରହିଛି । ତଥାପି ଲିଙ୍ଗରାଜ, ରାମେଶ୍ୱର, ମୁକ୍ତେଶ୍ୱର, ରାଜରାଣୀ, ବ୍ରହ୍ମେଶ୍ୱର, ପର୍ଶୁରାମେଶ୍ୱର ଓ କପିଳେଶ୍ୱର ପ୍ରଭୃତି କେତେକ ମନ୍ଦିର ଅକ୍ଷତ ଅବସ୍ଥାରେ ରହି ଉତ୍କଳୀୟ ମନ୍ଦିର କଳାର ଜୟଗାନ କରୁଛନ୍ତି । ବିଭିନ୍ନ ସମୟରେ ବିଭିନ୍ନ ରାଜାଙ୍କ ରାଜତ୍ୱ କାଳରେ ଏହି ମନ୍ଦିରଗୁଡିକୁ ନିର୍ମାଣ କରାଯାଇଥିଲା । ଶୈଳୋଦ୍ଭବ ବଂଶୀୟ ରାଜାଙ୍କ ଶାସନକାଳ (୫୭୫-୭୫୦ଖ୍ରୀ:ଅ) ମଧ୍ୟରେ ଏକାମ୍ର କ୍ଷେତ୍ରରେ ରାମେଶ୍ୱର (ବର୍ତ୍ତମାନର ମାଉସୀ ମା ମନ୍ଦିର), ଭରତେଶ୍ୱର, ଲକ୍ଷ୍ମଣେଶ୍ୱର, ଶତ୍ରୁଘ୍ନେଶ୍ୱର, ପରଶୁରାମେଶ୍ୱର, ସ୍ୱର୍ଣ୍ଣଜାଳେଶ୍ୱର, ମାର୍କଣ୍ଡେଶ୍ୱର, ଭୌମକରମାନଙ୍କ ରାଜତ୍ୱ (୭୩୬-୯୫୦ ଖ୍ରୀ:ଅ) କାଳରେ ଶିଶିରେଶ୍ୱର, ବୈତାଳ, ତାଳେଶ୍ୱର, ମୋହିନୀ, ଉତ୍ତରେଶ୍ୱର ପ୍ରଭୃତି ପ୍ରସିଦ୍ଧ ଶିବ ଓ ଶକ୍ତି ମନ୍ଦିର ଗୁଡିକ ନିର୍ମିତ ହୋଇଥିଲା । ସେହିପରି ସୋମବଂଶୀୟ ରାଜାମାନଙ୍କ ରାଜତ୍ୱ (୯୫୦-୧୧୧୨ ଖ୍ରୀ: ଅ) ମଧ୍ୟରେ ଭୁବନେଶ୍ୱରରେ ମୁକ୍ତେଶ୍ୱର, ସୁରେଶ୍ୱର, ଇନ୍ଦ୍ରେଶ୍ୱର (ରାଜରାଣୀ), ଲିଙ୍ଗରାଜ, ବ୍ରହ୍ମେଶ୍ୱର ମନ୍ଦିରଗୁଡିକୁ ନିର୍ମାଣ କରାଯାଇଥିଲା । ଓଡ଼ିଶାରେ ଗଙ୍ଗ ଓ ଗଜପତି ରାଜତ୍ୱ (୧୦୭୮-୧୫୬୮ ଖ୍ରୀ:ଅ) କାଳରେ ମଧ୍ୟ ଶୈବ ଧର୍ମର ପ୍ରଭାବ ହ୍ରାସ ପାଇ ନଥିଲା । ଗଙ୍ଗ ବଂଶୀୟ ରାଜାମାନେ ପ୍ରଥମେ ଶୈବ ଥିଲେ ଓ ପରେ ସେମାନେ ବୈଷ୍ଣବ ଧର୍ମ ଗ୍ରହଣ କରିଥିଲେ । ଫଳରେ ଶୈବ କ୍ଷେତ୍ର ଭୁବନେଶ୍ୱର ହରିହର କ୍ଷେତ୍ର ନାମରେ ନାମିତ ହେଲା । ଗଙ୍ଗ ବଂଶୀୟ ରାଜା ତୃତୀୟ ଅନଙ୍ଗଭୀମ ଦେବଙ୍କର ବିଧବା କନ୍ୟା ଚନ୍ଦ୍ରିକା ଦେବୀଙ୍କ ଦ୍ୱାରା ବିନ୍ଦୁ ସାଗର କୂଳରେ ଅନନ୍ତ ବାସୁଦେବ ମନ୍ଦିର ନାମରେ ଏକ ବିଷ୍ଣୁ ମନ୍ଦିର ୧୨୭୮ ଖ୍ରୀ:ଅରେ ନିର୍ମିତ ହେଲା । ମନ୍ଦିର ନିର୍ମାଣ କାର୍ଯ୍ୟର ଶେଷ ପର୍ଯ୍ୟାୟରେ ଆଉ ଦୁଇଟି ମନ୍ଦିର ଗଜପତି କପିଳେନ୍ଦ୍ରଦେବଙ୍କ ରାଜତ୍ୱ କାଳରେ ନିର୍ମିତ ହୋଇଥିଲା । ସେ ଦୁଇଟି ହେଲା - କପିଳେଶ୍ୱର ମନ୍ଦିର ଓ ପାପନାଶିନୀ ମନ୍ଦିର । ଏହିପରି ଅନେକ ଛୋଟ ବଡ ମନ୍ଦିର ଭୁବନେଶ୍ୱରରେ ଦେଖିବାକୁ ମିଳେ ।

**ଲିଙ୍ଗରାଜ ମନ୍ଦିର :-** ଭୁବନେଶ୍ୱରର ମନ୍ଦିରମାନଙ୍କ ମଧ୍ୟରେ ଲିଙ୍ଗରାଜ ମନ୍ଦିର ସର୍ବଶ୍ରେଷ୍ଠ । ଏହି ମନ୍ଦିରର ନିର୍ମାଣ କାର୍ଯ୍ୟ ଯଯାତିକେଶରୀ ଆରମ୍ଭ କରିଥିଲେ ଓ ଲଲାଟେନ୍ଦୁ କେଶରୀ ଏକାଦଶ ଶତାବ୍ଦୀରେ ଶେଷ କରିଥିଲେ । ଏହାର ଉଚ୍ଚତା ପ୍ରାୟ ୧୮୦ ଫୁଟ ବା ୧୨୦ ହାତ । ଏଠାରେ ପୂଜା ପାଉଥିବା ଜ୍ୟୋତିର୍ଲିଙ୍ଗଙ୍କୁ ଲିଙ୍ଗରାଜ, ତ୍ରିଭୁବନେଶ୍ୱର, ଏକାମ୍ରେଶ୍ୱର ଓ କୃତ୍ତିବାସ ବୋଲି କୁହାଯାଏ । ଲିଙ୍ଗ ଉପରେ ଥିବା ଏକ ପ୍ରାକୃତିକ ରେଖା ଲିଙ୍ଗଙ୍କୁ ଦୁଇ ଭାଗରେ ସୂଚାଉ ଥିବାରୁ ପଣ୍ଡିତମାନେ ଶିବ ଓ ବିଷ୍ଣୁଙ୍କର ମିଳନ ହୋଇଥିବା କଥା କହନ୍ତି । ତେଣୁ ଲିଙ୍ଗରାଜଙ୍କୁ ହରିହର ମଧ୍ୟ କୁହାଯାଏ । ଉଭୟ ବିଷ୍ଣୁ ଓ ଶିବ ଉପାସକମାନେ ତାଙ୍କୁ ଆରାଧ୍ୟ ଦେବତା ରୂପେ ମାନନ୍ତି । ଲିଙ୍ଗରାଜଙ୍କ ଭୋଗରେ ଉଭୟ ତୁଳସୀ ଓ ବେଲପତ୍ର ଦେଇ ଭୋଗ କରାଯାଏ । ସେହିପରି ମନ୍ଦିର ସମ୍ମୁଖରେ ଥିବା ସ୍ତମ୍ଭ ଉପରେ ବିଷ୍ଣୁ ଓ ଶିବଙ୍କର ବାହନ ଯଥାକ୍ରମେ ଗରୁଡ ଓ ବୃଷଭ ପ୍ରତିଷ୍ଠା କରାଯାଇଛି । ମନ୍ଦିର ଦେହରେ ଥିବା ସୁନ୍ଦର କାରୁକାର୍ଯ୍ୟ, ଗଣେଶ, କାର୍ତ୍ତିକ ଓ ଭଗବତୀଙ୍କର ପଥର ଖୋଦିତ ଜୀବନ୍ତ ମୂର୍ତ୍ତି, ଏହାଛଡା ଗୁରୁ, ସୈନ୍ୟ ସାମନ୍ତ, ନର୍ତ୍ତକ ନର୍ତ୍ତକୀ, ଗାୟକ, ବାଦକ, ହସ୍ତୀ ଓ ଅଶ୍ୱ ପ୍ରଭୃତିର ମୂର୍ତ୍ତି ଓ ନାନାପ୍ରକାର ପୁଷ୍ପଲତା, ଯୁଦ୍ଧାସ୍ତ୍ର ଓ ବାଦ୍ୟଯନ୍ତ୍ର ଦର୍ଶକମାନଙ୍କୁ ବିଶେଷ ଭାବେ ଆକୃଷ୍ଟ କରିଥାଏ ।

ମନ୍ଦିରର ପ୍ରାଙ୍ଗଣରେ ଅନ୍ୟୂନ ପ୍ରାୟ ୭୦ଟି ସାନବଡ ମନ୍ଦିର ରହିଛି । ସେମାନଙ୍କ ମଧ୍ୟରେ ପାର୍ବତୀ ମନ୍ଦିର, ଭୁବନେଶ୍ୱରୀ ମନ୍ଦିର, ନୃସିଂହ ମନ୍ଦିର ଆଦି ଉଲ୍ଲେଖଯୋଗ୍ୟ । ମହାପ୍ରଭୁ ଲିଙ୍ଗରାଜଙ୍କ ପାଖରେ କୋରାଖଇ, ନଡିଆ, କଦଳୀ ଓ ଅନ୍ନଭୋଗ ଲାଗିଯାଏ । ଏହି ଅନ୍ନଭୋଗକୁ ମହାପ୍ରସାଦ ଭାବେ ଭକ୍ତମାନେ ଆଦରରେ ଗ୍ରହଣ କରନ୍ତି । ବର୍ଷକ ମଧ୍ୟରେ ଲିଙ୍ଗରାଜଙ୍କର ଅନେକ ଯାନିଯାତ୍ରା ପାଳିତ ହୁଏ । ସେମାନଙ୍କ ମଧ୍ୟରେ ମାଘ ସପ୍ତମୀ, ଶିବରାତ୍ରି, ଅଶୋକାଷ୍ଟମୀ ଆଦି ପ୍ରଧାନ ।

**ବିନ୍ଦୁ ସାଗର :-** ମନ୍ଦିରମାନଙ୍କ ମଧ୍ୟରେ ଲିଙ୍ଗରାଜ ମନ୍ଦିର ଯେପରି ପ୍ରାଧାନ୍ୟ ଲାଭ କରିଛି ସେହିପରି ତୀର୍ଥମାନଙ୍କ ମଧ୍ୟରେ ବିନ୍ଦୁସାଗର ଶ୍ରେଷ୍ଠ ବୋଲି ବିବେଚିତ ହୁଏ । ପୁରାଣମାନଙ୍କରୁ ଜଣାଯାଏ ଯେ ସକଳ ତୀର୍ଥର ବିନ୍ଦୁ ଜଳରେ ଏହି ବିନ୍ଦୁ ସାଗର ସୃଷ୍ଟି ହୋଇଛି । ଲିଙ୍ଗରାଜ ମନ୍ଦିରର ଉତ୍ତରକୁ ଥିବା ଏହି ପୁଷ୍କରିଣୀର ଦୈର୍ଘ୍ୟ ୧୩୦୦ ଫୁଟ ଓ ପ୍ରସ୍ଥ ୭୦୦ ଫୁଟ ଓ ଏହାର ମଝିରେ ଏକ ଜଗତ ବା ଦୀପଦଣ୍ଡୀ ରହିଛି । ଏହି ପୁଷ୍କରିଣୀରେ ଲିଙ୍ଗରାଜଙ୍କର ଚନ୍ଦନ ଯାତ୍ରା ଅନୁଷ୍ଠିତ ହୁଏ । ଏହି ସାଗରର ପୂର୍ବରେ ଦ୍ୱାର ବାସିନୀ, ଅନନ୍ତ ବାସୁଦେବ ଓ ବ୍ରହ୍ମା ମନ୍ଦିର, ଦକ୍ଷିଣରେ ଭବାନୀ ଶଙ୍କର ଓ ମୋହିନୀ ମନ୍ଦିର, ପଶ୍ଚିମରେ ପଶ୍ଚିମେଶ୍ୱର ଓ ମାର୍କଣ୍ଡେଶ୍ୱର ମନ୍ଦିର ଓ ଉତ୍ତରରେ ଉତ୍ତରେଶ୍ୱର ମନ୍ଦିର ଅବସ୍ଥିତ । ଏହି ସାଗରକୁ ଲାଗି ଘାଟମାନ ରହିଛି । ପୂର୍ବରେ ଥିବା ଘାଟକୁ ବ୍ରହ୍ମାଘାଟ, ଦକ୍ଷିଣରେ ଥିବା ଘାଟକୁ ମଣିକର୍ଣ୍ଣିକା ଘାଟ ଓ ଉତ୍ତରରେ ଥିବା ଘାଟକୁ ଗୋଦାବରୀ ଘାଟ କୁହାଯାଏ । କଥିତ ଅଛି ଏହି ସରୋବରର ଜଳପାନ କଲେ ବା ଏହିରେ ସ୍ନାନ କଲେ ମାନବର ଆଉ ନର୍କ ଭୟ ହୁଏ ନାହିଁ, ଶ୍ରାଦ୍ଧ ତର୍ପଣାଦି କଲେ ଅନେକ ପୁଣ୍ୟ ହୁଏ ଓ ଅମୋକ୍ଷ ଆତ୍ମା ସଦଗତି ଲାଭ କରେ ।

**କେଦାର ଗୌରୀ ମନ୍ଦିର :-** ବିନ୍ଦୁ ସାଗରର ପୂର୍ବ ଭାଗରେ କେଦାରଗୌରୀ ମନ୍ଦିର ଅବସ୍ଥିତ । ଏକ ବେଢ଼ା ଭିତରେ ଦକ୍ଷିଣ ଆଡକୁ ମୁହଁ କରି କେଦାରେଶ୍ୱର ଓ ଏହାର ସମ୍ମୁଖରେ ପୂର୍ବମୁଖୀ ହୋଇ ଗୌରୀ ମନ୍ଦିର ଶୋଭା ପାଉଛି । କେଦାରେଶ୍ୱରଙ୍କ ଡାହାଣକୁ ଏକ ଝରଣା ଦୁଧ କୁଣ୍ଡରୁ ବାହାରି ଶିବଲିଙ୍ଗ ତଳ ଦେଇ ପ୍ରବାହିତ ହେଉଛି । ପ୍ରଥମେ ଏହା ଚାଉଳ ଧୁଆ କୁଣ୍ଡରେ ପଡି ଗୌରୀ ମନ୍ଦିର ସମ୍ମୁଖରେ ଥିବା କେଦାରକୁଣ୍ଡ ଓ ଗୌରୀ କୁଣ୍ଡରେ ପଡିଥାଏ । ଏହି ଝରଣାର ଜଳ ଶରୀର ପାଇଁ ଉପକାରୀ ଥିବାରୁ ଦୁଧ କୁଣ୍ଡର ଜଳକୁ ଲୋକେ ପାନୀୟ ରୂପେ ବ୍ୟବହାର କରନ୍ତି ଓ କେଦାର କୁଣ୍ଡ ଓ ଗୌରୀ କୁଣ୍ଡରେ ସ୍ନାନ କରନ୍ତି । ଏହି ମନ୍ଦିରଗୁଡିକ ଗଙ୍ଗରାଜତ୍ୱ ସମୟରେ ନିର୍ମିତ ହୋଇଛି ବୋଲି ଐତିହାସିକମାନେ ମତ ଦିଅନ୍ତି ।

ଏହିପରି ଅନେକ ଗୌରବମୟ ସ୍ଥାନ ଓ ପ୍ରାଚୀନ କୀର୍ତ୍ତି ଭୁବନେଶ୍ୱରରେ ଦେଖିବାକୁ ମିଳେ । ସେମାନେ ଓଡ଼ିଶାର ଇତିହାସ କହିବା ସଙ୍ଗେ ସଙ୍ଗେ ଦର୍ଶକମାନଙ୍କ ମନକୁ ବିଶେଷ ଭାବେ ଆକୃଷ୍ଟ କରନ୍ତି ।

ହରେକୃଷ୍ଣ ମହତାବ ସଂଗ୍ରହାଳୟ
ଭୁବନେଶ୍ୱର

## ନୂଆଦିଲ୍ଲୀଠାରେ ଉତ୍କଳ ଦିବସ ପାଳିତ

ଆମ ରାଜ୍ୟର ଉନ୍ନତ ସାଂସ୍କୃତିକ ଓ ଐତିହାସିକ ପରମ୍ପରା ଦୃଷ୍ଟିରୁ ପ୍ରବାସୀ ଓଡ଼ିଆମାନେ ନିଜକୁ ଗର୍ବିତ ମନେ କରିବା ଉଚିତ୍ ବୋଲି ରାଜ୍ୟ ସଂସ୍କୃତି ଓ ପର୍ଯ୍ୟଟନ ମନ୍ତ୍ରୀ ଶ୍ରୀ ଭୂପିନ୍ଦର ସିଂହ ପ୍ରକାଶ କରିଛନ୍ତି ।

ଗତ ଅପ୍ରେଲ ପହିଲାରେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ଗଠନର ୬୧ ବର୍ଷ ପୂର୍ତ୍ତି ଉପଲକ୍ଷେ ରାଜଧାନୀ ନୂଆଦିଲ୍ଲୀଠାରେ ଅନୁଷ୍ଠିତ ଉତ୍କଳ ଦିବସ ପାଳନ ଉତ୍ସବରେ ଓଡ଼ିଶାର ବରପୁତ୍ରମାନଙ୍କ ଫଟୋଚିତ୍ରରେ ମାଲ୍ୟାର୍ପଣ କରି ସଂସ୍କୃତି ମନ୍ତ୍ରୀ ଶ୍ରୀ ସିଂହ ମୁଖ୍ୟ ଅତିଥି ଭାବେ ଯୋଗ ଦେଇ କହିଲେ ଯେ ଓଡ଼ିଶାର ସର୍ବାଙ୍ଗୀନ ଉନ୍ନତି ନିମନ୍ତେ ରାଜ୍ୟ ସରକାର ଶିଳ୍ପ, କୃଷିର ବିକାଶ ଉପରେ ଗୁରୁତ୍ୱ ଆରୋପ କରୁଛନ୍ତି । ରାଜ୍ୟର ପର୍ଯ୍ୟଟନ କ୍ଷେତ୍ରରେ ଯଥେଷ୍ଟ ବିକାଶ ଘଟିଛନ୍ତି ବୋଲି ମନ୍ତ୍ରୀ ଶ୍ରୀ ସିଂହ ଦର୍ଶାଇବା ସଙ୍ଗେ ସଙ୍ଗେ ଘରୋଇ ଓ ବିଦେଶୀ ପର୍ଯ୍ୟଟକମାନେ ବହୁସଂଖ୍ୟାରେ ଓଡ଼ିଶା ପରିଦର୍ଶନ କରିବା ଉପରେ ଗୁରୁତ୍ୱ ଆରୋପ କରିଥିଲେ ।

ଏହି ଉତ୍ସବରେ ରାଜ୍ୟ ସରକାରଙ୍କର ପ୍ରମୁଖ ଆବାସିକ କମିଶନର ଶ୍ରୀ ପ୍ରୀତିମାନ ସରକାର ଯୋଗ ଦେଇ ଓଡ଼ିଶାକୁ ଏକ ଅଗ୍ରଣୀ ରାଜ୍ୟରେ ପରିଣତ କରିବା ନିମନ୍ତେ ଓଡ଼ିଶା ସରକାରଙ୍କ ତରଫରୁ ନିଆଯାଇଥିବା ବିଭିନ୍ନ ପଦକ୍ଷେପ ସଂପର୍କରେ ସୂଚନା ଦେଇଥିଲେ ।

ଦିଲ୍ଲୀରେ ଅବସ୍ଥାପିତ ସୂଚନା ଅଧିକାରୀ ଶ୍ରୀ ତପନ ଦାସ ଏହି ଉତ୍ସବକୁ ପରିଚାଳନା କରିଥିଲେ ଏବଂ ଆବାସିକ କମିଶନର ଶ୍ରୀ ପ୍ରସନ୍ନ ହେତା ଧନ୍ୟବାଦ ଅର୍ପଣ କରିଥିଲେ ।

ଓଡ଼ିଶା ଦିବସ ଉପଲକ୍ଷେ ଭୁବନେଶ୍ୱରରୁ ଯାଇଥିବା ସାଂସ୍କୃତିକ ସଂସ୍ଥା 'ଶତାବ୍ଦୀର କଳାକାର' ପକ୍ଷରୁ 'ଜୀବନ୍ୟାସ' ନାଟକ ମଂଚସ୍ଥ ହୋଇଥିଲା ।

ଏହି ଉପଲକ୍ଷେ ଓଡ଼ିଶା ଭବନ ଓ ଓଡ଼ିଶା ନିବାସକୁ ଆଲୋକ ମାଳାରେ ସଜା ଯାଇଥିଲା ।

# ବାନ୍ଧକଳାର ଯାଦୁକର ଚତୁର୍ଭୁଜ ମେହେର

*ଶ୍ରୀ ଗୋରେଖନାଥ ସାହୁ*

ମଣିଷ ବସ୍ତ୍ର ପରିଧାନ କରେ ସୁଖ ଓ ସୌଖୀନ ପାଇଁ । ସୌଖୀନ ରାଜା, ସୁଖୀ ପ୍ରଜା ଓ ତାର ସୂକ୍ଷ୍ମ ବସ୍ତ୍ର କଥା ଆମେ ଜାଣୁ । ମୋଟା ସୂତା ଲୁଗାହିଁ ଶରୀରକୁ ଗରମ ଓ ଥଣ୍ଡା ଉଭୟରୁ ରକ୍ଷା କରିଥାଏ । କୃତ୍ରିମ ସିନ୍ଥେଟିକ ବସ୍ତ୍ର ସବୁ ଋତୁରେ ସବୁଠାରେ ବର୍ଜନୀୟ । କାରଣ ତାହା ଶରୀରରେ ସ୍ଥିର ବିଦ୍ୟୁତ୍ ସୃଷ୍ଟି କରିଥାଏ । ଏତଦ୍ୱାରା ଶରୀରରେ ଚର୍ମରୋଗ, ପେଟରୋଗ ଆଦି ଅନେକ ମାରାତ୍ମକ ରୋଗ ହୁଏ । ବୈଜ୍ଞାନିକମାନେ ଗବେଷଣା କରି ଏହା ମଧ୍ୟ କହିଛନ୍ତି ଯେ ଦୀର୍ଘକାଳ କୃତ୍ରିମ ସୂତାର ଲୁଗା ପରିଧାନ କରିବା ଦ୍ୱାରା ମାନବ ସମାଜ ଧୀରେ ଧୀରେ ସନ୍ତାନ ଉତ୍ପାଦନ ଶକ୍ତି ରହିତ ହୋଇଯିବ । ହୁଏତ ମାନବ ସମାଜ ହୋଇଯିବ ବିକଳାଙ୍ଗ, ନପୁଂସକ । ତେଣୁ ସେମାନେ ନିର୍ଦ୍ଦିଷ୍ଟ ଭାବରେ ଅଧିକରୁ ଅଧିକତର କେବଳ ପ୍ରାକୃତିକ ସୂତାର ଲୁଗା ବ୍ୟବହାର ପାଇଁ ପରାମର୍ଶ ଦେଇଛନ୍ତି । ମାତ୍ର ଆଧୁନିକ ମଣିଷ ଶସ୍ତା, ସୁନ୍ଦର, ମଜଭୁତ ତଥା ଚାକଚକ୍ୟର ଶିକାର ହୋଇ ଅଜାଣତରେ ପ୍ରାକୃତିକ ସୂତାର ବସ୍ତ୍ରକୁ ପରିତ୍ୟାଗ କରି କୃତ୍ରିମ ରାସାୟନିକ ସୂତାର ବସ୍ତ୍ରକୁ ଅଧିକ ଆପଣାଇ କରି ନେଇଛି । ଫଳରେ ଆଧୁନିକ ସମାଜରେ ତାର ଉପାଦେୟ ପରିଣତି ସ୍ୱରୂପ ବିଭିନ୍ନ ମାରାତ୍ମକ ରୋଗ ବଢ଼ି ଚାଲିଛି । ଅଜ୍ଞାନୀ ମଣିଷ କୃତ୍ରିମତାର କୁପ୍ରଭାବ ସଂପର୍କରେ କଳନା କରି ପାରୁ ନାହିଁ ।

କୃତ୍ରିମ ସୂତା ବସ୍ତ୍ରର ବହୁଳ ପ୍ରଚାର ଓ ପ୍ରସାର ହେଲେ ମଧ୍ୟ ଓଡ଼ିଶାର ଜନସାଧାରଣ ଅଧିକ ପ୍ରାକୃତିକ ସୂତାର ବସ୍ତ୍ରହିଁ ପରିଧାନ କରିଥାନ୍ତି । ସୁଖ ଓ ସୌଖୀନ ଦୃଷ୍ଟିକୋଣରୁ ବାନ୍ଧକଳାର ବସ୍ତ୍ର ସର୍ବୋତ୍କୃଷ୍ଟ ବୋଲି ସର୍ବଜନବିଦିତ । ଏହା ଏକ ପାରମ୍ପରିକ କଳା । ଠିକ୍ ଚିତ୍ରକରର ଚିତ୍ର ଆଙ୍କିଲା ଭଳି । ଅନ୍ୟ ପକ୍ଷରେ ଜଣେ ଚିତ୍ରକରର ଚିତ୍ରକଳାଠାରୁ ଏହା ଅଧିକ କଷ୍ଟସାଧ୍ୟ କହିଲେ ଅତ୍ୟୁକ୍ତି ହେବ ନାହିଁ । କାରଣ ଚିତ୍ରଶିଳ୍ପୀ ମାନସ ପଟରେ ଏକ ଚିତ୍ରର କଳ୍ପନା କରି ତାହାକୁ ନିଜ ତୂଳୀ ସାହାଯ୍ୟରେ କେନ୍‌ଭାସରେ ଅବିକଳ ରୂପ ଦିଏ । ମାତ୍ର ଜଣେ ବାନ୍ଧକଳାକାର ଗୋଟିଏ ଚିତ୍ରକୁ ସୂତାଖିଅରେ ରଂଗବୋଳି ବିନ୍ଦୁ ବିନ୍ଦୁ ରଂଗର ସମାହାରରେ ଚିତ୍ରଟିକୁ ଜୀବନ୍ତ ରୂପ ଦିଏ । ରଂଗ ବେରଂଗ ପ୍ରଜାପତିର ଜୀବନ ଚକ୍ର ଭଳି ଏହି ବାନ୍ଧକଳାର ଜୀବନ ବୃତ୍ତାନ୍ତ । ଅନେକ ସଂଘର୍ଷ, ଘାତ ପ୍ରତିଘାତ ଓ କର୍ମକୁଶଳତା ପରେ ବାନ୍ଧ କଳାର ବସ୍ତ୍ରଟିଏ ପୂର୍ଣ୍ଣାଙ୍ଗ ପ୍ରାପ୍ତ ହୁଏ । କଳାକାରର ସ୍ୱେଦ ରକ୍ତ ବୋଳା ବସ୍ତ୍ରଟିଏ ମଣିଷର ନଗ୍ନତା ଓ ଲଜ୍ଜା ନିବାରଣ କରିବାକୁ ପ୍ରସ୍ତୁତ ହୁଏ । ସେହି ସୃଷ୍ଟି ମଧ୍ୟରେ ଭରି ରହିଥାଏ ଚମତ୍କାର ପରିକଳ୍ପନା, ପ୍ରକୃତିର ଚିତ୍ର ବିନ୍ୟାସ, ବୃକ୍ଷଲତା, ପତ୍ର, ପୁଷ୍ପ, ଫଳ, ମାଛ, ନଦୀ, ସମୁଦ୍ର, ହରିଣ, ହାତୀ, ବ୍ୟାଘ୍ର, ସିଂହ, ଅଶ୍ୱ, ପାହାଡ଼, ପର୍ବତ, ଅଗଣିତ ପଶୁପକ୍ଷୀଙ୍କ ସମେତ ମଣିଷ । ମଣିଷର ଅବିକଳ ଛବି ବାନ୍ଧକଳା ସାହାଯ୍ୟରେ ବସ୍ତ୍ର ଉପରେ ଆଙ୍କିବାକୁ ବାନ୍ଧକଳାକାର ସକ୍ଷମ । କେବଳ ସେତିକି ନୁହେଁ, ବସ୍ତ୍ରର ଗୋଟିଏ ପଟରେ ମାଛ ଦେଖାଯାଉଥିଲେ ତାର ବିପରୀତ ପଟରେ ହଂସ ଦେଖାଯିବ । ଗୋଟିଏ ପଟରେ ପଦ୍ମଫୁଲ ଦେଖାଯାଉଥିଲେ, ଅନ୍ୟପଟରେ ହରିଣ ଦେଖାଯାଉଥିବ । କି ବିଚିତ୍ର କଳା ଓ କି ବିଚିତ୍ର କଳାକାର । ସେହିପରି ଜଣେ ବିଚିତ୍ର କଳାକାର ହେଉଛନ୍ତି ସୋନପୁରର ଶ୍ରୀ ଚତୁର୍ଭୁଜ ମେହେର । ତାଙ୍କୁ ସମସ୍ତେ ବାନ୍ଧକଳାର ଯାଦୁକର କହନ୍ତି ।

ଚତୁର୍ଭୁଜ ମେହେର ମହାନଦୀ ଓ ତେଲନଦୀର ସଙ୍ଗମସ୍ଥଳ, ମନ୍ଦିରମାଳିନୀ ପୁଣ୍ୟତୋୟା ସୋନପୁର ସହରର ପବିତ୍ର ପୀଠରେ ଜନ୍ମଲାଭ କରିଥିଲେ ମଧ୍ୟ ଆଜି ସେ ଆଉ କେବଳ ସୋନପୁରର ହୋଇ ନାହାଁନ୍ତି । ସେ ହୋଇଛନ୍ତି ସମଗ୍ର ଓଡ଼ିଶାର, ସମଗ୍ର ଭାରତର ଓ ସମଗ୍ର ବିଶ୍ୱର । ଜଣେ କୁଶଳୀ ବୁଣାକାର ଭାବରେ ସେ ସୁଦୂର କଲିକତା, ଦିଲ୍ଲୀ, ବନାରସ, ବମ୍ବେ, ମାନ୍ଦ୍ରାଜ, ମଣିପୁର, ଇମ୍ଫାଲ, ଅହମଦାବାଦ, ଭୁବନେଶ୍ୱର ଆଦି ନଗରୀରେ ନିଜର କଳାକୃତିର ପରାକାଷ୍ଠା ପ୍ରଦର୍ଶନ କରିଛନ୍ତି । ଭାରତ ବାହାରେ ତାଙ୍କଦ୍ୱାରା ପ୍ରସ୍ତୁତ ବାନ୍ଧକଳାର ସୃଷ୍ଟିବସ୍ତ୍ର ପୃଥିବୀର ବିଭିନ୍ନ ଦେଶକୁ ଯାଇଛି ଓ ସର୍ବତ୍ର ବିଶେଷ ଆଦୃତ ହୋଇଛି । ଠିକ୍ ସେହିପରି ବାନ୍ଧକଳାରେ ଜାତୀୟ ପୁରସ୍କାର ପାଇଁ ଅଗଣିତ କଳାକାର ସୃଷ୍ଟି କରିଛନ୍ତି । ତାଙ୍କ ନିଜସ୍ୱ ଏକ ବିରାଟ ହସ୍ତତନ୍ତ ଫ୍ୟାକ୍‌ଟେରୀ ଅଛି । ତାଙ୍କ ନିଜ ଘର ଏକ ବିରାଟ ବୟନକଳାର ପ୍ରଶିକ୍ଷଣ କେନ୍ଦ୍ର । କେତେସେ ଲୋକ ଏହି କଳା ଚାତୁର୍ଯ୍ୟ ତାଙ୍କଠାରୁ ଶିକ୍ଷା ଲାଭ କରି ନିଜ ଗୋଡ଼ରେ ଠିଆ ହେଲେଣି ତାର ଇୟତ୍ତା ନାହିଁ । ଏଥିରୁ ଚତୁର୍ଭୁଜ ମେହେରଙ୍କ ସୃଜନଶୀଳ ମନ ଓ ଧୈର୍ଯ୍ୟଶୀଳ ଆଚାର୍ଯ୍ୟତାର ପ୍ରମାଣ ମିଳେ ।

୧୯୩୫ ମସିହାରେ ତାଙ୍କର ଜନ୍ମ । ପିତା ସ୍ୱର୍ଗତ ନୀଳମଣି ମେହେର ଓ ମାତା ମାୟାବତୀ । ନଅ ବର୍ଷ ବୟସରୁ ସେ ମା ହେଉଣ । ବାପା ହେଲେ ରୋଗଗ୍ରସ୍ତ ଓ ଶଯ୍ୟାଶାୟୀ । ଛ ଜଣ କୁଟୁମ୍ବର ଭରଣ

ପୋଷଣର ଦାୟିତ୍ୱ ବାଳକ ଚତୁର୍ଭୁଜ ଉପରେ । ନଅ ବର୍ଷ ବେଳୁ ପଡ଼ାପଡ଼ିରେ ଡ଼ୋରି ବାନ୍ଧି ସେ ବୁଣା ବୁଣି ଶିକ୍ଷାରମ୍ଭ କଲେ । ତନ୍ତରେ ପ୍ରଥମେ ବସିଲା ବେଳକୁ ତାଙ୍କ ହାତ ପାଉ ନଥିଲା । ତନ୍ତଟି ଛାତି ଉପରକୁ ହେଉଥିଲା । ତେଣୁ ତା଼ଙ୍କୁ କାଠ ପିଡ଼ା ଓ ତକିଆ ଉପରେ ବସିବାକୁ ହେଉଥିଲା । ପିଲାଟି ବେଳୁ ତନ୍ତର 'ମାକୁ' ଚାଳନାରେ ସେ ମନପ୍ରାଣ ଢ଼ାଳି ଦେଲେ । ସାଧନା ତାଙ୍କର ସିଦ୍ଧିରେ ପରିଣତ ହେଲା ତନ୍ତର 'ମାକୁ' ପରି ଚତୁର୍ଭୁଜ ହେଲେ ଚଳ ଚଞ୍ଚଳ । ବେଗହିଁ ଉନ୍ନତିର ଲକ୍ଷଣ । ତୀବ୍ର ବେଗରେ ଦେଶ ବିଦେଶରେ ବିଭିନ୍ନ ବସ୍ତ୍ରକଳା ସମ୍ପର୍କରେ ସେ ଜ୍ଞାନ ଅର୍ଜନ କଲେ । ସେ ସମସ୍ତକଳାକୁ ନେଇ ବାନ୍ଧ କଳାରେ ପ୍ରୟୋଗ କରି ବୟନ ଶିଳ୍ପରେ ଏବେ ଚମତ୍କାରିତା ସୃଷ୍ଟି କରୁଛନ୍ତି । ତାଙ୍କର ଗୋଟିଏ ଗୋଟିଏ ଶାଢ଼ୀର ଦାମ୍ ଏବେ ଜାତୀୟ ତଥା ଆନ୍ତର୍ଜାତିକ ବଜାରରେ ଲକ୍ଷ୍ୟାଧିକ ଟଙ୍କାରେ ବିକ୍ରି ହେଉଛି । ଚତୁର୍ଭୁଜ ମେହେର ହେଉଛନ୍ତି ଭାରତରେ ବୟନଶିଳ୍ପ କ୍ଷେତ୍ରରେ ଅପ୍ରତିଦ୍ୱନ୍ଦୀ ସମ୍ରାଟ । ଉଭୟ ସରସ୍ୱତୀ ଓ ଲକ୍ଷ୍ମୀଙ୍କ ସେ ବରପୁତ୍ର । ତଥାପି ତାଙ୍କ ମନରେ ରାଗ, ଦ୍ୱେଷ, ଗର୍ବ, ଅହଂକାର ନ ଥାଏ । ସେ ସର୍ବଦା ବୁଣାକାର, ବାନ୍ଧକାରଙ୍କୁ ତାର ଉପଯୁକ୍ତ ପାରିଶ୍ରମିକ ଦିଅନ୍ତି । ସର୍ବଦା ଉତ୍କୃଷ୍ଟମାନର ବୟନ ପାଇଁ ଯତ୍ନଶୀଳ ହୁଅନ୍ତି ।

ତାଙ୍କର ଦୁଇ ପୁଅ ପୋଲଣ୍ଡି ମେହେର ଓ ଶଙ୍କର ମେହେର ତାଙ୍କୁ ବୟନ ଶିଳ୍ପର ପ୍ରଚାର ଓ ପ୍ରସାରରେ ସାହାଯ୍ୟ କରନ୍ତି । ନିଜ ବ୍ୟବସାୟରେ ସେ ଶତାଧିକ ବୁଣାକାରଙ୍କୁ ନିଯୁକ୍ତି ଦେବାକୁ ସକ୍ଷମ ହୋଇଛନ୍ତି । ତାଙ୍କ ଅଧୀନରେ ବର୍ତ୍ତମାନ ପ୍ରାୟ ପନ୍ଦର ଶହରୁ ଦୁଇ ହଜାର ବୁଣାକାର କାମ କରି ନିଜ କୁଟୁମ୍ବ ପୋଷୁଛନ୍ତି । ଚତୁର୍ଭୁଜ ମେହେର ବୟନ ଶିଳ୍ପର ଆଦ୍ୟପର୍ବ ପିତା ନୀଳମଣି ମେହେର, ତାଙ୍କ କକା ସୀତାରାମ ମେହେର, ତାଙ୍କ ବଡ଼ ପୁଅ ଗୋଲଖ ମେହେରଙ୍କଠାରୁ ଶିଖିଥିଲେ ।

୧୯୫୯ ମସିହାରୁ ୧୯୮୪ ମସିହା ପର୍ଯ୍ୟନ୍ତ କେନ୍ଦ୍ର ସରକାରଙ୍କ ବୁଣାକାର ସେବା କେନ୍ଦ୍ରରେ କାମ କରି ସେ ସ୍ୱେଚ୍ଛାକୃତ ଅବସର ଗ୍ରହଣ କରିଥିଲେ । ସେ ସମ୍ବଲପୁରର ସ୍ୱାଧୀନତା ସଂଗ୍ରାମୀ ତଥା ଅନ୍ୟତମ ଯୁଗନ୍ଧର ବାନ୍ଧଶିଳ୍ପୀ ସ୍ୱର୍ଗତ ରାଧାଶ୍ୟାମ ମେହେରଙ୍କ ଅଧୀନରେ କିଛିକାଳ କାମ କରିଥିଲେ । ୧୯୫୫ ରେ ସୋନପୁର ରାମଜୀ ତନ୍ତୁବାୟ ସହଯୋଗ ସମିତିର ସେ ସଭାପତି ଥିଲେ । ତଥାପି ଜଣେ ସାଧାରଣ ବୁଣାକାର ଭାବେ ସେ ଗର୍ବ ଅନୁଭବ କରନ୍ତି । ଚତୁର୍ଭୁଜ ମେହେର ଦେଶ ବିଦେଶରେ ଅନେକ ପ୍ରଦର୍ଶନୀ ମାଧ୍ୟମରେ ନିଜ କଳାକୃତିର ପରିଚୟ ପ୍ରଦାନ କରିଛନ୍ତି । ତାଙ୍କ ନିର୍ମିତ ବାନ୍ଧକଳାର ଶାଢ଼ୀ ସବୁଠାରେ ଆଦୃତ ହେଉଛି । ବାନ୍ଧକଳାର ବସ୍ତ୍ର ହେବାକୁ ଯାଉଛି ଆଗାମୀ ଯୁଗ ପାଇଁ ମଣିଷ ସମାଜର ସୁନ୍ଦର ଅଙ୍ଗବସ୍ତ୍ର । ଏବେ ପୁରୁଷ ସ୍ତ୍ରୀ ବାଳକ ସମସ୍ତେ ବାନ୍ଧକଳାର ବସ୍ତ୍ରକୁ ହିଁ ଅଧିକ ପସନ୍ଦ କରୁଛନ୍ତି ।

ବିଶେଷତଃ ବିଦେଶୀ ପର୍ଯ୍ୟଟକମାନେ, ଯେଉଁମାନେ ଏହାର କଳାତ୍ମକ ମୂଲ୍ୟ ଶୀଘ୍ର ବୁଝିଯାନ୍ତି ସେମାନେ ଅଧିକ ଏହାକୁ ବ୍ୟବହାର କରୁଥିବା ଦେଖାଯାଉଛି । ଆମ ଲୋକେ ବିଶେଷତଃ ଓଡ଼ିଶାର ପୁରପଲ୍ଲୀରେ ଏହି ବାନ୍ଧବସ୍ତ୍ରର ବହୁଳ ବ୍ୟବହାର ଥିଲେ ମଧ୍ୟ କସ୍ତୁରୀମୃଗ ସଦୃଶ କସ୍ତୁରୀର ସନ୍ଧାନ ନ ଜାଣିଲା ଭଳି ଆମ ଲୋକେ ବାନ୍ଧ ବସ୍ତ୍ର ବ୍ୟବହାର କରି ମଧ୍ୟ ତାର ମହାତ୍ମ୍ୟ ଜାଣି ପାରୁ ନାହାନ୍ତି । ଏହାର ପ୍ରଚାର ଓ ପ୍ରସାର ବହୁତ କମ୍ ହେଉଛି । ଓଡ଼ିଶାର ବାନ୍ଧବସ୍ତ୍ର ସାରା ପୃଥିବୀର ବସ୍ତ୍ରକଳା ମଧ୍ୟରେ ସ୍ଥାୟିତ୍ୱ ଓ କଳାତ୍ମକ ଦୃଷ୍ଟିରୁ ସର୍ବୋତ୍କୃଷ୍ଟ । ଶ୍ରୀ ଚତୁର୍ଭୁଜ ମେହେରଙ୍କୁ ସେହି ଅନବଦ୍ୟ କଳାର ଶ୍ରେଷ୍ଠ କଳାକାର କହିଲେ ଅତ୍ୟୁକ୍ତି ହେବ ନାହିଁ ।

'ବର୍ଣ୍ଣାଳୀ' ସୋନପୁର

## ପୁରୀରେ କର୍ମଚାରୀ ରାଜ୍ୟ ବୀମା ଚିକିତ୍ସାଳୟ ଉଦଘାଟିତ

ଗତ ମାର୍ଚ୍ଚ ମାସ ୩୧ ତାରିଖରେ ପୁରୀ ଦଣ୍ଡତୋଟାଠାରେ କର୍ମଚାରୀ ରାଜ୍ୟ ବୀମା ଚିକିତ୍ସାଳୟ ଶ୍ରମ ଓ ନିୟୋଜନ ମନ୍ତ୍ରୀ ଶ୍ରୀ ଦୁର୍ଗାଶଙ୍କର ପଟ୍ଟନାୟକଙ୍କ ଦ୍ୱାରା ଉଦଘାଟିତ ହୋଇଯାଇଛି । ଏହାକୁ ଉଦଘାଟନ କରି ମନ୍ତ୍ରୀ ଶ୍ରୀ ପଟ୍ଟନାୟକ କହିଲେ ଯେ ଶିଳ୍ପ ଶ୍ରମିକମାନଙ୍କ ନିମନ୍ତେ ସାମାଜିକ ନିରାପତ୍ତା ଯୋଜନା ଅନ୍ତର୍ଭୁକ୍ତ ଏହି ପରି ୫୨ ଗୋଟି ଚିକିତ୍ସାଳୟ ଓଡ଼ିଶାରେ କାର୍ଯ୍ୟ କରୁଛି ଓ ଏହି ଚିକିତ୍ସାଳୟ ଗୁଡ଼ିକୁ ଯଥେଷ୍ଟ ପରିମାଣରେ ଔଷଧ ଓ ଅନ୍ୟାନ୍ୟ ସାମଗ୍ରୀ ଯୋଗାଣ ସହ ଆବଶ୍ୟକୀୟ ସଂଖ୍ୟକ ଡାକ୍ତରମାନଙ୍କୁ ନିଯୁକ୍ତି ଦିଆଯାଇଛି । ଚିକିତ୍ସାଳୟଗୁଡ଼ିକର କାର୍ଯ୍ୟକ୍ଷମତା ଉପରେ ସନ୍ତୋଷ ପ୍ରକାଶ କରି ମନ୍ତ୍ରୀ ଶ୍ରୀ ପଟ୍ଟନାୟକ କହିଲେ ଯେ ମହଜୁଦ ନଥିବା ଅତ୍ୟାବଶ୍ୟକୀୟ ଔଷଧ ବାହାରୁ କ୍ରୟ କରିବା ନିମନ୍ତେ ପାଣ୍ଠି କମ ମଧ ଯୋଗାଇ ଦିଆଯାଇଛି । ଭୁବନେଶ୍ୱରରେ ପ୍ରାୟ ୪ କୋଟି ଟଙ୍କା ବ୍ୟୟରେ ଏକ ଅତ୍ୟାଧୁନିକ ଡାକ୍ତରଖାନା ପ୍ରତିଷ୍ଠା କରାଯାଉଛି । ୪୯ ଜଣ ଡାକ୍ତରଙ୍କ ନୂତନ ନିଯୁକ୍ତି ଦିଆଯାଉଥିଲେ ମଧ ମାତ୍ର ୫ଜଣ କାର୍ଯ୍ୟରେ ଯୋଗ ଦେଇଥିବା ପ୍ରକାଶ କରି ମନ୍ତ୍ରୀ ଶ୍ରୀ ପଟ୍ଟନାୟକ ଏଥିନିମନ୍ତେ ଆବଶ୍ୟକୀୟ ବ୍ୟବସ୍ଥା କରାଯାଉଛି ବୋଲି ସୂଚନା ଦେଇଥିଲେ ।

ପୁରୀ ବିଧାୟକ ଶ୍ରୀ ମହେଶ୍ୱର ମହାନ୍ତି ପୁରୀରେ ସ୍ଥାପିତ ଏହି ଚିକିତ୍ସାଳୟ ଦୀର୍ଘ ଦିନର ଆବଶ୍ୟକତା ପୂରଣ କରିବାକୁ ସମର୍ଥ ହେବ ବୋଲି ଆଶା ପ୍ରକାଶ କରି ଏହି ଚିକିତ୍ସାଳୟ ଓ ବାହାରୁ ମିଳୁଥିବା ସୁବିଧା ସୁଯୋଗ ସଂପର୍କରେ ପ୍ରତ୍ୟେକ ବୀମାଭୁକ୍ତ ଶିଳ୍ପଶ୍ରମିକଙ୍କୁ ସଚେତନ କରିବା ପାଇଁ ବ୍ୟବସ୍ଥା କରିବାକୁ ଅନୁରୋଧ କରିଥିଲେ ।

ଶ୍ରମ କମିଶନର ତଥା ଶାସନ ସଚିବ ଶ୍ରୀ ଅଜିତ୍ କୁମାର ତ୍ରିପାଠୀ କର୍ମଚାରୀ ରାଜ୍ୟବୀମା ଚିକିତ୍ସାଳୟର କାର୍ଯ୍ୟକାରିତା ସଂପର୍କିତ ସାଂବିଧାନିକ ଓ ପ୍ରଶାସନିକ ବିଧିବ୍ୟବସ୍ଥାର ଆଲୋଚନା କରି ଶିଳ୍ପ ଶ୍ରମିକଙ୍କୁ ମଙ୍ଗଳ ନିମନ୍ତେ ଏହି ଯୋଜନା ଉଦ୍ଦେଶ୍ୟ ସାଧନ କରି ପାରୁଛି ବୋଲି ମତ ପ୍ରକାଶ କରିଥିଲେ । ପୁରୀର ନିକଟ ହୋଇଥିବା ୩୫୦୦ ଶିଳ୍ପଶ୍ରମିକ ଓ ତାଙ୍କର ପରିବାରର ଲୋକମାନେ ଏହି ସୁବିଧାର ଉପଯୋଗ କରିପାରିବେ । ଚିକିତ୍ସାଳୟଗୁଡ଼ିକର କାର୍ଯ୍ୟର ସମୀକ୍ଷା କରିବାକୁ ବିଭାଗୀୟ ବ୍ୟବସ୍ଥା ହୋଇଛି ଓ ଜିଲ୍ଲାପାଳମାନେ ନିଜର ଖସ ସମୟରେ ଚିକିତ୍ସାଳୟ ପରିଦର୍ଶନ କରିବାକୁ ଅନୁରୋଧ କରାଯାଇଛି ବୋଲି ଶ୍ରୀ ତ୍ରିପାଠୀ ସୂଚନା ଦେଇଥିଲେ । ରାଜ୍ୟ କର୍ମଚାରୀବୀମା ଚିକିତ୍ସାଳୟର ନିର୍ଦ୍ଦେଶକ ଡା ସାରଂଗଧର ଦାସ ଏହି ଯୋଜନାରୁ ଉପଲବ୍ଧ ବିଭିନ୍ନ ସୁବିଧା ସୁଯୋଗର ବର୍ଣ୍ଣନା କରି କହିଲେ ଯେ, ୧୯୫୯ ମସିହାରୁ ଓଡ଼ିଶାରେ କାର୍ଯ୍ୟକାରୀ ହେଉଥିବା ଏହି ଯୋଜନା ଓଡ଼ିଶାର ୨୦ ଟି ଏଯାବତ ପ୍ରସାରିତ ହୋଇଛି ଓ ପର୍ଯ୍ୟାୟକ୍ରମେ ଅନ୍ୟସବୁ ଜିଲ୍ଲାରେ ଏହା କାର୍ଯ୍ୟକାରୀ ହେବ । ରାଜ୍ୟ କର୍ମଚାରୀ ବୀମା ନିଗମର ଆଂଚଳିକ ନିର୍ଦ୍ଦେଶକ ଜିଲ୍ଲା ପ୍ରଶାସନ ଜମି ଯୋଗାଇ ଦେଲେ ୨/୩ କୋଟି ଟଙ୍କା ବ୍ୟୟରେ ପୁରୀରେ ଏକ ଅତ୍ୟାଧୁନିକ ଚିକିତ୍ସାଳୟ ପ୍ରତିଷ୍ଠା କରାଯିବ ବୋଲି ସୂଚନା ଦେଇଥିଲେ ।

# ବିଜ୍ଞାନ ଓ କାରିଗରୀ ବିଭାଗର ସାଫଲ୍ୟ

ବିଜ୍ଞାନ ଓ ବୈଷୟିକ ଜ୍ଞାନର ପ୍ରୟୋଗ ଦ୍ୱାରା ଜୀବନର ମାନ ବୃଦ୍ଧି ବିଜ୍ଞାନ ଓ କାରିଗରୀ ବିଭାଗର ମୂଳ ଲକ୍ଷ୍ୟ । ରାଜ୍ୟବାସୀଙ୍କର ଆବଶ୍ୟକତାକୁ ଦୃଷ୍ଟିରେ ରଖି ବିଭାଗ ଦ୍ୱାରା ଅନେକଗୁଡ଼ିଏ କାର୍ଯ୍ୟକ୍ରମ ପରିଚାଳିତ ହେଉଛି ଯଥା - ଅଣପାରମ୍ପରିକ ଶକ୍ତି ଉତ୍ସର ଉନ୍ନୟନ, ସୁଦୂର ପର୍ଯ୍ୟବେକ୍ଷଣ କାରିଗରୀ ବିଦ୍ୟାର ପ୍ରୟୋଗ ଦ୍ୱାରା ପ୍ରାକୃତିକ ସଂପଦର ଦୀର୍ଘସ୍ଥାୟୀ ବିକାଶ ପାଇଁ ସମନ୍ୱିତ ସର୍ବେକ୍ଷଣ, ଜନସେବା ମାନର ଉନ୍ନତି ପାଇଁ କମ୍ପ୍ୟୁଟର ଶିକ୍ଷା ଏବଂ ସୂଚନା ବିଜ୍ଞାନକୁ ଲୋକପ୍ରିୟ କରିବା, ବୈଜ୍ଞାନିକ ଚିନ୍ତାଧାରାର ବିକାଶ ପାଇଁ ଲୋକପ୍ରିୟ କାର୍ଯ୍ୟକ୍ରମ ଇତ୍ୟାଦି ।

**ବିଜ୍ଞାନ ଓ କାରିଗରୀ ବିଦ୍ୟାର ଉନ୍ନୟନ :**

ରାଜ୍ୟର ଆବଶ୍ୟକତାକୁ ଦୃଷ୍ଟିରେ ରଖି ଏହି ପ୍ରକଳ୍ପ ଅଧୀନରେ ପ୍ରୟୋଗାତ୍ମକ ଗବେଷଣା ପ୍ରକଳ୍ପଗୁଡ଼ିକ ପାଇଁ ଆର୍ଥିକ ଅନୁଦାନ ମଞ୍ଜୁର କରାଯାଇଥାଏ । ୧୯୯୬-୯୭ ଆର୍ଥିକ ବର୍ଷ ମଧ୍ୟରେ ୨୪ ଗୋଟି ଗବେଷଣା ପ୍ରକଳ୍ପ ପାଇଁ ଆର୍ଥିକ ମଞ୍ଜୁରୀ ଦିଆଯାଇଛି ।

**ଜାତୀୟ/ଆନ୍ତର୍ଜାତୀୟ ବୈଜ୍ଞାନିକ ସମ୍ମିଳନୀ/କର୍ମଶାଳାରେ ଯୋଗଦେବା ପାଇଁ ଆର୍ଥିକ ସହାୟତା :**

ଜାତୀୟ/ଆନ୍ତର୍ଜାତୀୟ ସମ୍ମିଳନୀ, କର୍ମଶାଳା ଇତ୍ୟାଦିରେ ଯୋଗଦେଇ ଗବେଷଣାତ୍ମକ ସନ୍ଦର୍ଭ ଉପସ୍ଥାପନ କରିବା ଅଥବା ସମ୍ମିଳନୀରେ ଅଧ୍ୟକ୍ଷତା କରିବା ପାଇଁ ନିମନ୍ତ୍ରିତ ବୈଜ୍ଞାନିକମାନଙ୍କୁ ଯାତାୟାତ ପାଇଁ ଆର୍ଥିକ ସହାୟତା ଏହି କାର୍ଯ୍ୟକ୍ରମ ଅଧୀନରେ ଦିଆଯାଇଥାଏ । ଯୋଗ ଦେଉଥିବା ବୈଜ୍ଞାନିକମାନଙ୍କୁ ସର୍ବାଧିକ ଟ ୨୦,୦୦୦.୦୦ କିମ୍ବା ଯାତାୟାତ ଖର୍ଚ୍ଚର ଶତକଡ଼ା ୫୦ ଭାଗ ଆର୍ଥିକ ସହାୟତା ମିଳିଥାଏ । ଏହି କାର୍ଯ୍ୟକ୍ରମ ଦ୍ୱାରା ଆମ ରାଜ୍ୟର ବୈଜ୍ଞାନିକମାନଙ୍କୁ ଭାବର ଆଦାନ ପ୍ରଦାନ ଏବଂ ସୁବିଧା ସୁଯୋଗ ମିଳିଥାଏ । ୧୯୯୫-୯୬ ଏବଂ ୧୯୯୬-୯୭ ଆର୍ଥିକ ବର୍ଷରେ ଯଥାକ୍ରମେ ୯ ଏବଂ ୨୩ ଜଣ ବୈଜ୍ଞାନିକଙ୍କୁ ଏହି କାର୍ଯ୍ୟକ୍ରମ ଦ୍ୱାରା ଆର୍ଥିକ ସହାୟତା ମିଳି ପାରିଛି ।

**ଲୋକପ୍ରିୟ ବିଜ୍ଞାନ କାର୍ଯ୍ୟକ୍ରମ -**

ବୈଜ୍ଞାନିକ ସମ୍ମିଳନୀ/କର୍ମଶାଳା/ବକ୍ତୃତା/ପ୍ରଦର୍ଶନୀ/ବିଜ୍ଞାନ ପ୍ରତିଯୋଗିତା/ବିଜ୍ଞାନ ମେଳା ଇତ୍ୟାଦି କାର୍ଯ୍ୟକ୍ରମ ଦ୍ୱାରା ବିଜ୍ଞାନକୁ ଲୋକପ୍ରିୟ କରିବା ପାଇଁ ଆର୍ଥିକ ସହାୟତା ଦିଆଯାଇଥାଏ । ଜନସାଧାରଣ ତଥା ଛାତ୍ରଛାତ୍ରୀମାନଙ୍କ ମଧ୍ୟରେ ବୈଜ୍ଞାନିକ ଚିନ୍ତାଧାରା ଓ ଚେତନା ସୃଷ୍ଟିକରିବା ପାଇଁ କାର୍ଯ୍ୟକ୍ରମର ମୂଳ ଲକ୍ଷ୍ୟ । ଓଡ଼ିଶା ବିଜ୍ଞାନ ଏକାଡେମୀ ଦ୍ୱାରା ପରିଚାଳିତ ଏହି କାର୍ଯ୍ୟକ୍ରମ ବିଜ୍ଞାନ ଶିକ୍ଷାନୁଷ୍ଠାନ ଓ ସର୍ବ ସାଧାରଣଙ୍କ ଦ୍ୱାରା ବିପୁଳ ସମର୍ଥନ ଲାଭ କରି ପାରିଛି । ବିଜ୍ଞାନର ବିଭିନ୍ନ କ୍ଷେତ୍ରରେ ଉତ୍କୃଷ୍ଟ ଗବେଷଣା ପାଇଁ ୧୯୯୫-୯୬ ଏବଂ ୧୯୯୬-୯୭ ଆର୍ଥିକ ବର୍ଷରେ ଯଥାକ୍ରମେ ୬ ଓ ୭ ଜଣ ବୈଜ୍ଞାନିକଙ୍କୁ ସାମନ୍ତ ଚନ୍ଦ୍ରଶେଖର ସମ୍ମାନରେ ସମ୍ମାନିତ କରାଯାଇଛି ।

**ବିଜ୍ଞାନ ଓ ବୈଷୟିକ ଉଦ୍ୟୋଗୀକରଣ ବିକାଶ କାର୍ଯ୍ୟକ୍ରମ :**

ବିଜ୍ଞାନ ଓ ବୈଷୟିକ ସ୍ନାତକମାନଙ୍କ ମଧ୍ୟରେ ଉଦ୍ୟୋଗୀ ହେବା ପାଇଁ ସଚେତନତା ସୃଷ୍ଟି କରିବା ଏହି କାର୍ଯ୍ୟକ୍ରମର ଲକ୍ଷ୍ୟ । ୧୯୯୫-୯୬ ଆର୍ଥିକ ବର୍ଷରେ ରାଜ୍ୟର ବେକାର ବିଜ୍ଞାନ ଓ ବୈଷୟିକ ସ୍ନାତକମାନଙ୍କ ପାଇଁ ଓରିଟକୋ(Orissa Industrial Technical Cosultancy organisation) ମାଧ୍ୟମରେ ଉଦ୍ୟୋଗୀ ଉନ୍ନୟନ ତାଲିମ କାର୍ଯ୍ୟକ୍ରମ ପରିଚାଳନା କରାଯାଇଥିଲା । ୧୯୯୬-୯୭ ଆର୍ଥିକ ବର୍ଷରେ ଓଡ଼ିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟ ଏବଂ ବାଲେଶ୍ୱର ସ୍ଥିତ ବିଜ୍ଞାନ ଓ ବୈଷୟିକ ଉଦ୍ୟୋଗୀକରଣ ବିକାଶ ପ୍ରକଳ୍ପକୁ ଏହି ଧରଣର ତାଲିମ କାର୍ଯ୍ୟକ୍ରମ ପାଇଁ ଆର୍ଥିକ ଅନୁଦାନ ଯୋଗାଇ ଦିଆଯାଉଛି । ୨ ବର୍ଷ ମଧ୍ୟରେ ୫୩ ଜଣ ବେକାର ବିଜ୍ଞାନ ଓ ଇଂଜିନିୟରିଂ ସ୍ନାତକଙ୍କୁ ଏହି କାର୍ଯ୍ୟକ୍ରମ ଦ୍ୱାରା ତାଲିମ ଦେବାର ବ୍ୟବସ୍ଥା କରାଯାଇଛି । ଏହା ବ୍ୟତୀତ ଭାରତ ସରକାରଙ୍କ ବିଜ୍ଞାନ ବୈଷୟିକ ବିଭାଗର ଆର୍ଥିକ ସହାୟତାରେ ୧୯୯୫-୯୬ ଏବଂ ୧୯୯୬-୯୭ ଆର୍ଥିକ ବର୍ଷରେ ଯଥାକ୍ରମେ ୩ ଓ ୪ ଗୋଟି ଉଦ୍ୟୋଗୀ ସଚେତନତା ଶିବିର ପରିଚାଳନା କରାଯାଇଥିଲା ।

**ଗ୍ରାମଉପଯୋଗୀ କାରିଗରୀ ବିଦ୍ୟା କାର୍ଯ୍ୟକ୍ରମ :**

ଗ୍ରାମୀଣ କାରିଗରମାନଙ୍କର ଶ୍ରମ ଲାଘବକାରୀ ସହଜ, ସରଳ ଓ ସୁଲଭ ଯନ୍ତ୍ରପାତି ଯୋଗାଣ ଏହି କାର୍ଯ୍ୟକ୍ରମର ଉଦ୍ଦେଶ୍ୟ । ଓରେଡ଼ା ମାଧ୍ୟମରେ ଏହି କାର୍ଯ୍ୟକ୍ରମ କାର୍ଯ୍ୟକାରୀ କରାଯାଉଛି । ୧୯୯୪-୯୫ ମସିହା ସୁଦ୍ଧା ରାଜ୍ୟରେ ୫୮୨ ପତ୍ର ସିଲାଇ ମେସିନ୍, ୩୦୯ ଟି ପତ୍ର ଦନା ଓ ଖଲିଆ ତିଆରି ମେସିନ୍, ୧୮୨୫ଟି ଉନ୍ନତ ଢେଙ୍କି ସୁଲଭ ପମ୍ପ, ୨୧୮ଟି ଉନ୍ନତ ବେଶ୍ୱା ଏବଂ ୨୬୧୭ ଟି ସୁଲଭ ପାଣିଛଣା ଯନ୍ତ୍ରର

ଉପଭୋକ୍ତାମାନଙ୍କୁ ରିହାତି ଦରରେ ଯୋଗାଇ ଦିଆଯାଉଛି । ୧୯୯୫-୯୬ ଏବଂ ୧୯୯୬-୯୭ ବର୍ଷରେ ଯଥାକ୍ରମେ ୭ ଓ ୧ ଟି ପତ୍ର ସିଲାଇ ମେସିନ୍ ୨୧ ଓ ୯ ଟି ପତ୍ର ଦନା ମେସିନ୍ ୨୨ ଓ ୩ ଟି ସୁଲଭ ପମ୍ପ, ୪୭ ଓ ୬ ଟି ଉନ୍ନତ ଢେଣା, ୩୧୮ ଓ ୧ ଟି ପାଣିଛଣା ଯନ୍ତ୍ର ଯୋଗାଇ ଦିଆଯାଇଛି ।

**ଗ୍ରନ୍ଥାଗାର ଏବଂ ତଥ୍ୟ ସଂଗ୍ରହ କେନ୍ଦ୍ର :**

ବିଭାଗରେ ଏକ ସ୍ୱୟଂ ସମ୍ପୂର୍ଣ୍ଣ ଗ୍ରନ୍ଥାଗାର ଅଛି । ଏହି ଗ୍ରନ୍ଥାଗାରରେ ବିଜ୍ଞାନ, କାରିଗରୀ ଓ ପରିବେଶ ସମ୍ବନ୍ଧୀୟ ୨୦୦୦ ରୁ ଅଧିକ ମୂଲ୍ୟବାନ ପୁସ୍ତକ ଗଚ୍ଛିତ ଅଛି । ଦୃଶ୍ୟ ଶ୍ରାବ୍ୟ ସଂଗ୍ରହାଳୟରେ ୭୮ ଗୋଟି ବିଜ୍ଞାନ ଓ କାରିଗରୀ ବିଷୟରେ ଉପାଦେୟ ଚଳଚ୍ଚିତ୍ର ଅଛି । ଏହି କେନ୍ଦ୍ରର ଅତ୍ୟାଧୁନିକ ସମ୍ମିଳନୀ କକ୍ଷରେ ସାଧାରଣ ଭାଷଣ ବ୍ୟବସ୍ଥା, ମେଗା, ମନିଟର ସ୍ଲାଇଡ୍ ପ୍ରୋଜେକ୍ଟର, ଓଭର ହେଡ୍ ତଥା ଚଳଚ୍ଚିତ୍ର ପ୍ରୋଜେକ୍ଟର ଆଦିର ବ୍ୟବସ୍ଥା ଅଛି ।

୧୭-୧୯ ଅକ୍ଟୋବର ୧୯୯୫ ମଧ୍ୟରେ ଭୌଗୋଳିକ ସୂଚନା କାରିଗରୀ ବ୍ୟବସ୍ଥା (GIS) ର ପ୍ରୟୋଗ ଉପରେ ଏକ କର୍ମଶାଳା ଅନୁଷ୍ଠିତ ହୋଇଥିଲା । ବାଙ୍ଗାଲୋରସ୍ଥିତ ଭାରତୀୟ ଓ ମହାକାଶ ଗବେଷଣା ପ୍ରତିଷ୍ଠାନ, ହାଇଦରାବାଦସ୍ଥିତ ଜାତୀୟ ସୁଦୂର ପର୍ଯ୍ୟବେକ୍ଷଣ ସଂସ୍ଥା, ଅହମଦାବାଦର ଅନ୍ତରୀକ୍ଷ ଗବେଷଣା କେନ୍ଦ୍ର ଆଦି କେନ୍ଦ୍ରୀୟ ମହାକାଶ ବିଭାଗର ଅନୁଷ୍ଠାନ ଏବଂ ଓଡ଼ିଶା ସୁଦୂର ପର୍ଯ୍ୟବେକ୍ଷଣ କେନ୍ଦ୍ରର ୨୫ ଜଣ ବିଶେଷଜ୍ଞଙ୍କ ସହାୟତାରେ ରାଜ୍ୟ ବିଜ୍ଞାନ ଓ କାରିଗରୀ ପରିଷଦ ଦ୍ୱାରା ଏହି କର୍ମଶାଳା ଅନୁଷ୍ଠିତ ହୋଇଥିଲା । ରାଜ୍ୟ ସରକାରଙ୍କ ବିଭିନ୍ନ ବିଭାଗର ଉଚ୍ଚ ଓ ମଧ୍ୟମ ବର୍ଗର କର୍ମକର୍ତ୍ତା ଏବଂ ବିଶ୍ୱବିଦ୍ୟାଳୟର ଅଧ୍ୟାପକମାନେ ଏହି କର୍ମଶାଳାର ଯୋଗ ଦେଇଥିଲେ ।

**ବିଜ୍ଞାନ କେନ୍ଦ୍ର :**

ରାଜ୍ୟ ସରକାର ଓ ଜାତୀୟ ବିଜ୍ଞାନ ସଂଗ୍ରହାଳୟ ପରିଷଦର ମିଳିତ ଉଦ୍ୟମରେ ସପ୍ତମ ଯୋଜନା କାଳରେ ଭୁବନେଶ୍ୱରଠାରେ ଆଞ୍ଚଳିକ କେନ୍ଦ୍ର ପ୍ରତିଷ୍ଠା କରାଯାଇଥିଲା । ବିଭିନ୍ନ କାର୍ଯ୍ୟକ୍ରମ ଦ୍ୱାରା ଏହି କେନ୍ଦ୍ର ଜନସାଧାରଣ ତଥା ଛାତ୍ରଛାତ୍ରୀମାନଙ୍କ ମଧ୍ୟରେ ବୈଜ୍ଞାନିକ ଚିନ୍ତାଧାରା ଏବଂ ଅନୁସନ୍ଧିତ୍ସାର ବିକାଶ ଘଟାଇ ଆସୁଛି ।

୧୯୯୫ରେ ଢେଙ୍କାନାଳଠାରେ ଉପଆଞ୍ଚଳିକ ବିଜ୍ଞାନ କେନ୍ଦ୍ର କାର୍ଯ୍ୟାରମ୍ଭ ହୋଇଥିଲା । ଏହାପରେ ମୟୂରଭଞ୍ଜ ଜିଲ୍ଲାର ବାରିପଦାଠାରେ ଦ୍ୱିତୀୟ ଉପଆଞ୍ଚଳିକ ବିଜ୍ଞାନ କେନ୍ଦ୍ର ପ୍ରତିଷ୍ଠା ପାଇଁ ୫ ଏକର ଜମି ଜିଲ୍ଲା ପ୍ରଶାସନ ଦ୍ୱାରା ଯୋଗାଇ ଦିଆଯାଇଛି । ଜାତୀୟ ପରିଷଦର ସମ୍ମତି ଲାଭ ପରେ ରାଜ୍ୟର ଅନୁଦାନ ବାବଦ ୪୦ ଲକ୍ଷ ଟଙ୍କା ଯୋଗାଇ ଦିଆଯିବ । ଏ ସମ୍ବନ୍ଧରେ ଭାରତ ସରକାରଙ୍କ ସଂସ୍କୃତି ମନ୍ତ୍ରଣାଳୟ ସହିତ ଯୋଗାଯୋଗ ସ୍ଥାପନ କରାଯାଇଛି ।

**ପଠାଣି ସାମନ୍ତ ପ୍ଲାନେଟୋରିୟମ**

ରାଜ୍ୟରେ ସାଧାରଣ ଲୋକମାନଙ୍କ ମଧ୍ୟରେ ମହାକାଶ ପରିବେଶ ସଂକ୍ରାନ୍ତୀୟ କୌତୂହଳ, ମହାକାଶ ବିଜ୍ଞାନ ଏବଂ ଗ୍ରହ ନକ୍ଷତ୍ର ଓ ତାରାମାନଙ୍କ ଅବସ୍ଥିତ ତଥା ଗତି ସମ୍ବନ୍ଧରେ ସଚେତନତା ସୃଷ୍ଟି କରିବାର ଆଭିମୁଖ୍ୟ ନେଇ ୧୯୯୦ ମସିହାରେ ଭୁବନେଶ୍ୱରଠାରେ ପଠାଣି ସାମନ୍ତ ପ୍ଲାନେଟୋରିୟମ ପ୍ରତିଷ୍ଠା କରାଯାଇଅଛି । ଓଡ଼ିଶାର ବରପୁତ୍ର ମହାନ୍ ଜ୍ୟୋତିର୍ବିଜ୍ଞାନୀ ମହାମହୋପାଧ୍ୟାୟ ଚନ୍ଦ୍ରଶେଖର ସିଂହ ସାମନ୍ତଙ୍କ ନାମ ଅନୁସାରେ ପ୍ଲାନେଟୋରିୟମକୁ ନାମିତ କରାଯାଇଅଛି ।

ପଞ୍ଚମ ସର୍ବଭାରତୀୟ ଜ୍ୟୋତିର୍ବିଜ୍ଞାନୀ ସମ୍ମିଳନୀ ୧୯୯୫ ମସିହା ଜାନୁୟାରୀ ୧୪-୧୬ ତିନି ଦିନ ଧରି ପଠାଣି ସାମନ୍ତ ପ୍ଲାନେଟୋରିୟମରେ ଆୟୋଜନ କରାଯାଇଥିଲା । ଏଥିରେ ରାଜ୍ୟ ଓ ରାଜ୍ୟ ବାହାରୁ ପ୍ରାୟ ୨୫୦ ଜଣ ଜ୍ୟୋତିର୍ବିଦ୍ ଯୋଗ ଦେଇଥିଲେ ।

୧୯୯୫ ମସିହା ଜୁଲାଇ ମାସରେ ସମ୍ପୂର୍ଣ୍ଣ ସୂର୍ଯ୍ୟପରାଗକୁ ଦୃଷ୍ଟିରେ ରଖି ଏକ ଦୂରବୀକ୍ଷଣ ନିର୍ମାଣ କରାଯାଇ ଗୋଟିଏ କର୍ମଶାଳାର ଆୟୋଜନ କରାଯାଇଥିଲା । ଏଥିରେ ଓଡ଼ିଶା ଓ ବିହାରର ୨୦ ଗୋଟି ବିଦ୍ୟାଳୟର ୬୦ ଜଣ ଶିକ୍ଷକ ଓ ଛାତ୍ରଛାତ୍ରୀ ଭାଗ ନେଇଥିଲେ । ୧୯୯୫ ଅକ୍ଟୋବର ୨୪ ତାରିଖରେ ଭାରତରେ ସଂଘଟିତ ହୋଇଥିବା ସମ୍ପୂର୍ଣ୍ଣ ସୂର୍ଯ୍ୟପରାଗ ଜନସାଧାରଣଙ୍କୁ ନିରାପଦ ଭାବରେ ପ୍ରଦର୍ଶନ କରିବା ପାଇଁ ପ୍ଲାନେଟୋରିୟମରେ ବ୍ୟବସ୍ଥା କରାଯାଇଥିଲା । ଏଥିରେ ପ୍ରାୟ ୧୦୦୦୦ ଦର୍ଶକ ଭାଗ ନେଇଥିଲେ । ପ୍ଲାନେଟୋରିୟମ ପରିସରରୁ ଆକାଶବାଣୀ, କଟକ ତରଫରୁ ପରାଗର ଧାରା ବିବରଣୀ ପ୍ରଦାନ କରାଯାଇଥିଲା । ପ୍ଲାନେଟୋରିୟମ ତରଫରୁ "ଛାୟାପଥ" ନାମକ ଏକ ପ୍ରଚାର ପତ୍ର ପ୍ରକାଶ ପାଉଛି ।

**ଜୀବ ବିଜ୍ଞାନ ପ୍ରତିଷ୍ଠାନ :**

ଏହି ପ୍ରତିଷ୍ଠାନ ୧୯୮୭ ମସିହା ଫେବୃୟାରୀ ୧୧ ତାରିଖରେ ପଞ୍ଜିକୃତ ହୋଇ ୧୯୯୦ ମେ ମାସରେ କାର୍ଯ୍ୟକାରୀ ହୋଇଥିଲା । ଜାନୁୟାରୀ ୧୯୯୧ ରେ ଗବେଷକ ନିଯୁକ୍ତି ପରେ ଗବେଷଣା କାର୍ଯ୍ୟ ଆରମ୍ଭ ହୋଇଥିଲା । ଜୀବ ବିଜ୍ଞାନରେ ତାତ୍ତ୍ୱିକ ଓ ପ୍ରୟୋଗାତ୍ମକ ଗବେଷଣା, ବୈଜ୍ଞାନିକମାନଙ୍କ ମଧ୍ୟରେ ଭାବର ଆଦାନ ପ୍ରଦାନ, ବିଭିନ୍ନ ବିଷୟରେ ସହଯୋଗୀ ଗବେଷଣା, ଅନ୍ୟାନ୍ୟ ଶିକ୍ଷା ଓ ଗବେଷଣା ପ୍ରତିଷ୍ଠାନ ସହିତ ସହଯୋଗ, ସମ୍ମିଳନୀ/କର୍ମଶାଳା ଆଦିର ଆୟୋଜନ ପି.ଏଚ୍.ଡି. ଓ ଏମ୍.ଫିଲ୍ ପାଇଁ ତାଲିମ ଇତ୍ୟାଦି ଏହି ପ୍ରତିଷ୍ଠାନର ଲକ୍ଷ୍ୟ ।

**ଏହି ପ୍ରତିଷ୍ଠାନରେ ଗବେଷଣା ପାଇଁ ନିମ୍ନ ଲିଖିତ କ୍ଷେତ୍ରକୁ ଗୁରୁତ୍ୱ ଦିଆଯାଇଛି ଯଥା :**

(କ) ଅଣୁ ଜୀବ ବିଜ୍ଞାନ - ବଂଶଗ କାରିଗରୀ ବିଦ୍ୟା, ଜୀବ କାରିଗରୀ ବିଦ୍ୟା, କର୍କଟ ରୋଗ, ବାର୍ଦ୍ଧକ୍ୟ, ବଂଶଗତ ସ୍ୱାସ୍ଥ୍ୟ ସମସ୍ୟା ।

(ଖ) ପରିବେଶ ଜୀବନ ବିଜ୍ଞାନ - ଚିଲିକା ହ୍ରଦ ପରିବେଶରେ ଉଦ୍ଭିଦ, ହ୍ରଦର ଲବଣତ୍ୱ, ଜଳରେ ଥିବା ଗୁରୁଧାତୁ, ଅମ୍ଳଜାନ ହ୍ରାସର ଉଦ୍ଭିଦ ଉପରେ ପ୍ରଭାବ ।

୧୯୯୭ ମସିହା ଜାନୁୟାରୀ ମାସରେ ଭାରତୀୟ କର୍କଟରୋଗ ଗବେଷଣା ସଂଘର ବାର୍ଷିକ ସମ୍ମିଳନୀ ଜୀବ ବିଜ୍ଞାନ ପ୍ରତିଷ୍ଠାନ ଆନୁକୂଲ୍ୟରେ ଭୁବନେଶ୍ୱରରେ ଆୟୋଜନ କରାଯାଇଥିଲା । ଏହି

ସମ୍ମିଳନୀରେ ଜାତୀୟ ଓ ଆନ୍ତର୍ଜାତୀୟ ସ୍ତରର ବହୁ ବୈଜ୍ଞାନିକ ସେମାନଙ୍କର ଉପାଦେୟ ସନ୍ଦର୍ଭ ଉପସ୍ଥାପନ କରିଥିଲେ ।

**ଓଡ଼ିଶା ସୁଦୂର ପର୍ଯ୍ୟବେକ୍ଷଣ ପ୍ରୟୋଗ କେନ୍ଦ୍ର :**

ରାଜ୍ୟରେ ସୁଦୂର ପର୍ଯ୍ୟବେକ୍ଷଣ କାରିଗରୀ କୌଶଳର ପ୍ରୟୋଗ ପାଇଁ ଏହି କେନ୍ଦ୍ର ସ୍ଥାପନ କରାଯାଇଛି । ରାଜ୍ୟ ଓ କେନ୍ଦ୍ର ସରକାରଙ୍କ ପାଇଁ ୫୦ଟି ରୁ ଅଧିକ ପ୍ରକଳ୍ପର ସଫଳ ରୂପାୟନ କରି ଏହି କେନ୍ଦ୍ର ପ୍ରଶଂସିତ ହୋଇଛି । ନିମ୍ନଲିଖିତ କ୍ଷେତ୍ରରେ ପ୍ରକଳ୍ପ ଅଧ୍ୟୟନ କରାଯାଉଛି ।

(କ) ସହରାଞ୍ଚଳ ଭୂଉପଯୋଗ (ଖ) ଭୂତଳ ଜଳ ସମ୍ପଦ ଅନୁଧ୍ୟାନ (ଗ) ବନ୍ୟାପ୍ଲାବିତ ଅଞ୍ଚଳର ଆକଳନ (ଘ) ସମୁଦ୍ର ଉପକୂଳ ଓ ଉପକୂଳ ଜଳରାଶିର ପରିବେଶ ଅଧ୍ୟୟନ (ଙ) ମରୁଡ଼ି ଅଧ୍ୟୟନ (ଚ) ଖଣିଜ ସମ୍ପଦ ଅନୁଧ୍ୟାନ (ଛ) କ୍ଷୁଦ୍ର ସେଚ ବ୍ୟବସ୍ଥା ଇତ୍ୟାଦି । ଅଷ୍ଟମ ଯୋଜନାରେ ୪୭ଟି ପ୍ରକଳ୍ପ କାର୍ଯ୍ୟକାରୀ ହୋଇଛି । ପ୍ରାକୃତିକ ସମ୍ପଦ ତଥ୍ୟ ପରିଚାଳନା ବ୍ୟବସ୍ଥା ପ୍ରକଳ୍ପ ଦ୍ୱାରା କୋରାପୁଟ ଜିଲ୍ଲାର ପ୍ରାକୃତିକ ସମ୍ପଦ ଉପରେ ତଥ୍ୟ ସଂଗ୍ରହ କରାଯାଇ କମ୍ପ୍ୟୁଟର ଦ୍ୱାରା ଏହାର ସାମାଜିକ ଓ ଅର୍ଥନୈତିକ ତଥ୍ୟ ସହିତ ସମ୍ପର୍କକୁ ମାନଚିତ୍ର ଆକାରରେ ଉପସ୍ଥାପନା କରାଯାଉଛି ।

**ସୂଚନା ବୈଷୟିକ :**

ଓଡ଼ିଶା କମ୍ପ୍ୟୁଟର ପ୍ରୟୋଗ କେନ୍ଦ୍ର, ଜାତୀୟ ସୂଚନା କେନ୍ଦ୍ର ଓ ସଫଟୱେୟାର ଟେକନୋଲୋଜି ପାର୍କ ନାମକ ତିନୋଟି ଗୁରୁତ୍ୱପୂର୍ଣ୍ଣ ସଂସ୍ଥାର କାର୍ଯ୍ୟକ୍ରମଗୁଡ଼ିକୁ ଏହି ବିଭାଗ ସହଯୋଗ କରେ ।

**(କ) ଓଡ଼ିଶା କମ୍ପ୍ୟୁଟର ପ୍ରୟୋଗ କେନ୍ଦ୍ର (ଓକାକ୍)**

ଭାରତ ସରକାରଙ୍କର ଇଲେକଟ୍ରୋନିକ୍ସ ବିଭାଗର (Department of Electronics) ଦ୍ୱାରା ବିଭିନ୍ନ ସ୍ତରର (ଯଥା - ''O'' ଓ ''C'' ସ୍ତର) କମ୍ପ୍ୟୁଟର ପ୍ରଶିକ୍ଷଣ ବ୍ୟବସ୍ଥା ଓକାକ୍‌ରେ ସଂପାଦିତ ହୁଏ । ଏହି ବିଭାଗର ପ୍ରଶିକ୍ଷଣ ବ୍ୟବସ୍ଥା କାର୍ଯ୍ୟକ୍ରମ କରିବାରେ ଓକାକ୍ ଏକ ମୁଖ୍ୟ ସଂସ୍ଥା ରୂପେ କାର୍ଯ୍ୟ କରୁଛି ।

ଏତଦ୍‌ବ୍ୟତୀତ, ବିଭିନ୍ନ ସରକାରୀ ବିଭାଗ, ବିଭାଗୀୟ ମୁଖ୍ୟ ଦପ୍ତର/ଅନୁଷ୍ଠାନ/ ସରକାରୀ ଉଦ୍ୟୋଗ ସଂସ୍ଥାମାନଙ୍କ ପାଇଁ ସଫ୍‌ଟୱେୟାର ଉନ୍ନୟନ କରିବାରେ ଓକାକ୍ କାର୍ଯ୍ୟକରେ ଏବଂ ଏହି ସଂସ୍ଥାମାନଙ୍କ ପାଇଁ କମ୍ପ୍ୟୁଟର ଯନ୍ତ୍ରପାତି କ୍ରୟ, ସ୍ଥାପନୀକରଣ ଓ ବୈଦ୍ୟୁତିକ ସଂଯୋଗ କାର୍ଯ୍ୟରେ ମଧ୍ୟ ବୈଷୟିକ ପରାମର୍ଶ ପ୍ରଦାନ କରେ । ରାଜ୍ୟରେ ସଫଟୱେୟାର ଶିଳ୍ପ ଉନ୍ନୟନ କରିବାରେ ଏହା ପ୍ରମୁଖ ଭୂମିକା ଗ୍ରହଣ କରିଥାଏ ।

**(ଖ) ଜାତୀୟ ସୂଚନା କେନ୍ଦ୍ର (ଏନ୍.ଆଇ.ସି)**

ସରକାରୀ ବିଭାଗ ଓ ସରକାରୀ ମୁଖ୍ୟ ଦପ୍ତରର କାର୍ଯ୍ୟାଳୟମାନଙ୍କର କମ୍ପ୍ୟୁଟରୀକରଣ କରିବାରେ ଏନ୍.ଆଇ.ସି. ସାହାଯ୍ୟ କରେ । ଏହି ବିବରଣୀ ଅବଧି ମଧ୍ୟରେ ବିଭାଗରେ ଥିବା ସଚିବାଳୟ କେନ୍ଦ୍ରୀୟ ସଂଗଠନ କେନ୍ଦ୍ର (ଏସ୍.ସି.ସି.ଏଫ) ଠାରେ ଏନ୍.ଆଇ.ସିର ଏକ ରାଜ୍ୟ କେନ୍ଦ୍ର ସ୍ଥାପିତ ହୋଇଛି । ଏନ୍.ଆଇ.ସି. ବିଭିନ୍ନ ସ୍ତରର ସରକାରୀ କର୍ମାଧିକାରୀ/ କର୍ମଚାରୀମାନଙ୍କୁ ପ୍ରଶିକ୍ଷଣ ବ୍ୟବସ୍ଥା କରେ । ଏତଦ୍‌ବ୍ୟତୀତ, ଏହା ନିକନେଟ ଜରିଆରେ ଜିଲ୍ଲା ସଦର ମହକୁମା ଗୁଡ଼ିକରେ ଇ-ମେଲ୍ ବ୍ୟବସ୍ଥା ପ୍ରଦାନ କରିବା ଫଳରେ ଏହି ଜିଲ୍ଲା କେନ୍ଦ୍ରଗୁଡ଼ିକ ରାଜ୍ୟ ମୁଖ୍ୟ ଦପ୍ତର/ସରକାରୀ ବିଭାଗ ସହିତ ସଂଯୋଗ ସ୍ଥାପନ କରିପାରିଛି ଏବଂ ଏହା ଫଳରେ ମଧ୍ୟ ଏହି ରାଜ୍ୟ କେନ୍ଦ୍ରଗୁଡ଼ିକ ଭାରତର ଅନ୍ୟାନ୍ୟ ସ୍ଥାନଗୁଡ଼ିକ ସହିତ ଯୋଗାଯୋଗ ସ୍ଥାପନ କରିପାରିଛି ।

୧୭ଟି ନବଗଠିତ ଜିଲ୍ଲାଗୁଡ଼ିକରୁ ଏଯାବତ୍ ୯ଟି ଜିଲ୍ଲାରେ DISNIC କେନ୍ଦ୍ର ସ୍ଥାପିତ ହୋଇ ସାରିଛି । ଅନ୍ୟାନ୍ୟ ତିନୋଟି ଜିଲ୍ଲାରେ ଏହି କେନ୍ଦ୍ର ସ୍ଥାପନ ହେବା ପାଇଁ କାର୍ଯ୍ୟ ହେଉଅଛି । ଭୁବନେଶ୍ୱର ସହିତ ତଥ୍ୟ ସଂଯୋଗ ବ୍ୟବସ୍ଥା କରିବାରେ ଡ଼ିସ୍‌ନିକ୍ କେନ୍ଦ୍ରଗୁଡ଼ିକ ଅତ୍ୟନ୍ତ ଉପାଦେୟ ଏବଂ ଏହି ଡ଼ିସ୍‌ନିକ୍ କେନ୍ଦ୍ରଗୁଡ଼ିକ ରାଜ୍ୟ ସଚିବାଳୟ ସହିତ ନିକ୍‌ନେଟ୍ ଜରିଆରେ ସଂଯୋଗ ସ୍ଥାପନ କରିଛି ।

**(ଗ) ସଫଟୱେୟାର ଟେକ୍ନୋଲୋଜି ପାର୍କ : (ଏସ୍.ଟି.ପି)**

ଇଲେକଟ୍ରୋନିକ୍ସ ବିଭାଗ (Dcpartment of Electronics - DOE) ର ସହାୟତାରେ ସଫଟୱେୟାର ଟେକ୍ନୋଲୋଜି ପାର୍କ, ଭୁବନେଶ୍ୱର ସ୍ଥାପିତ ହୋଇଛି । ଦରିଆପାରି ବଜାରଗୁଡ଼ିକୁ ସଫଟୱେୟାର ରପ୍ତାନୀ କରିବା ପାଇଁ ଘରୋଇ ସଫଟୱେୟାର ସଂସ୍ଥାକୁ ତଥ୍ୟ ପ୍ରବେଶ ଦେବା ନିମିତ୍ତ ଏସ୍.ଟି.ପି. ଇଣ୍ଡିଆ । ଏଠାରେ ଏକ ଭୂମିକେନ୍ଦ୍ର ସ୍ଥାପନ ହୋଇସାରିଛି ଏବଂ ଇନ୍‌ଫୋସିସ୍ ଟେକନୋଲୋଜି, ବାଙ୍ଗାଲୋର ଓ ସତ୍ୟମ କମ୍ପ୍ୟୁଟର୍ସ, ହାଇଦ୍ରାବାଦ ନାମକ ଦୁଇଟି ବୃହତ୍ ସଫ୍‌ଟୱେୟାର ସଂସ୍ଥା ଭୁବନେଶ୍ୱରରୁ ସେମାନଙ୍କ କାର୍ଯ୍ୟକ୍ରମ ଆରମ୍ଭ କରିସାରିଲେଣି ।

**(ଘ) ଇନ୍‌ଟେଲିଜେନ୍ସ ବ୍ୟବସ୍ଥା କେନ୍ଦ୍ର (Centre for Intelligents systems)**

ଆଞ୍ଚଳିକ ଯାନ୍ତ୍ରିକ ମହାବିଦ୍ୟାଳୟ, ରାଉରକେଲା ଠାରେ ଏକ ଇନ୍‌ଟେଲିଜେନ୍ସ ବ୍ୟବସ୍ଥା କେନ୍ଦ୍ର ସ୍ଥାପନ କରିବା ପାଇଁ ନିଷ୍ପତ୍ତି କ୍ରମେ ବିଜ୍ଞାନ ଓ ବୈଷୟିକ ରାଜ୍ୟ ପରିଷଦ ଭାରତ ସରକାରଙ୍କ ସହିତ କଥାବାର୍ତ୍ତା କରୁଛନ୍ତି । ରାଜ୍ୟର ଦ୍ରୁତ ଯୋଗାଯୋଗ ସେବା ପାଇଁ ଆବଶ୍ୟକୀୟ ସୂଚନା ବ୍ୟବସ୍ଥା ପ୍ରଦାନ କରିବା ନିମିତ୍ତ ଏହି କେନ୍ଦ୍ର କାର୍ଯ୍ୟ କରିବ । ଏତଦ୍‌ବ୍ୟତୀତ, ଶିଳ୍ପ କ୍ଷେତ୍ରରେ ଆବଶ୍ୟକୀୟ ସୂଚନା ବ୍ୟବସ୍ଥା ପ୍ରଦାନ କରିବା ନିମିତ୍ତ ମଧ୍ୟ ଏହି କେନ୍ଦ୍ରଟି କାର୍ଯ୍ୟ କରିବ ।

**ଓଡ଼ିଶା ଅକ୍ଷୟ ଶକ୍ତି ବିକାଶ ସଂସ୍ଥା :-**

ରାଜ୍ୟରେ ବିଭିନ୍ନ ପ୍ରକାର ଅଣପାରମ୍ପରିକ ଶକ୍ତି ଉତ୍ସର ଉନ୍ନତି ଓ ପ୍ରସାରଣ କରିବା ପାଇଁ ଓଡ଼ିଶା ଅକ୍ଷୟ ଶକ୍ତି ବିକାଶ ସଂସ୍ଥା (OREDA) ୧୯୮୪-୮୫ ଆର୍ଥିକ ବର୍ଷରେ ଗଠିତ ହୋଇଅଛି । ବିଭିନ୍ନ ପ୍ରକାର ଅଣପାରମ୍ପରିକ ଶକ୍ତି ଉତ୍ସ ଯଥା - ଜୈବ ଶକ୍ତି, ପବନ ଶକ୍ତି ଏବଂ ସୌର ଶକ୍ତି ସମ୍ବନ୍ଧରେ ଗବେଷଣା, ଉନ୍ନତି ତଥା ଲୋକପ୍ରିୟ କରିବା ଏହି ସଂସ୍ଥାର ମୁଖ୍ୟ ଲକ୍ଷ୍ୟ । ଅଧିକନ୍ତୁ ଏହି ସଂସ୍ଥା ଗ୍ରାମ୍ୟୋପଯୋଗୀ

ବୈଷୟିକ ବିଦ୍ୟା ଉଦ୍ଭାବନ ଓ ଏହାର ପ୍ରସାରଣ କରି ମନୁଷ୍ୟ ତଥା ପଶୁମାନଙ୍କର ଶ୍ରମ ଲାଘବ କରିବା ପାଇଁ ମଧ୍ୟ କାର୍ଯ୍ୟ କରୁଅଛି । ଏହି ସଂସ୍ଥାର ମୁଖ୍ୟ କାର୍ଯ୍ୟମାନ ନିମ୍ନରେ ପ୍ରଦତ୍ତ ହେଲା ।

**(କ) ଜାତୀୟ ଜୈବିକ ବାଷ୍ପ ପ୍ଲାଣ୍ଟ ଉନ୍ନୟନ କାର୍ଯ୍ୟକ୍ରମ -**

ଜାତୀୟ ଜୈବିକ ବାଷ୍ପ ପ୍ଲାଣ୍ଟ ଉନ୍ନୟନ କାର୍ଯ୍ୟକ୍ରମ ନବୀକରଣ ଶକ୍ତି କ୍ଷେତ୍ରରେ ଏକ ଅତ୍ୟନ୍ତ ଲୋକପ୍ରିୟ ପରିଯୋଜନା ଏବଂ ଏହା ସଫଳତାର ସହ ରାଜ୍ୟରେ ବିଗତ ୧୧ ବର୍ଷ ଧରି କାର୍ଯ୍ୟକାରୀ ହୋଇ ଆସୁଅଛି । ଜୈବିକ ବାଷ୍ପ ରୋଷେଇ ପାଇଁ ବିଭିନ୍ନ ଇନ୍ଧନ ଏବଂ ଆଲୋକ ଯୋଗାଇଥାଏ । ରାଜ୍ୟରେ ସଫଳତାର ସହ ଏହି କାର୍ଯ୍ୟକ୍ରମକୁ କାର୍ଯ୍ୟକାରୀ କରିବା ପାଇଁ ଭାରତ ସରକାର ରିହାତି, ଉନ୍ନତି ପାଇଁ ପ୍ରୋତ୍ସାହନ, ତାଲିମ ସୁବିଧା, ଟର୍ଣ୍ଣକୀ ଫିସ୍ ଇତ୍ୟାଦି ଯୋଗାଇଥାନ୍ତି । ଭାରତ ସରକାରଙ୍କ ବିଂଶ ସୂତ୍ରୀ କାର୍ଯ୍ୟକ୍ରମରେ ଏହି ପରିଯୋଜନାଟିକୁ ସାମିଲ କରାଯାଇଅଛି । ଏହି କାର୍ଯ୍ୟକ୍ରମଟି ରାଜ୍ୟରେ DRDA ଏବଂ ସ୍ୱେଚ୍ଛାସେବୀ ଅନୁଷ୍ଠାନମାନଙ୍କ ଦ୍ୱାରା କାର୍ଯ୍ୟକାରୀ ହୋଇଥାଏ । କାର୍ଯ୍ୟକ୍ରମଟିର ଆରମ୍ଭଠାରୁ ୧୯୯୪-୯୫ ଆର୍ଥିକ ବର୍ଷ ସୁଦ୍ଧା ରାଜ୍ୟରେ ୧,୦୨,୬୩୭ ଗୋଟି ପରିବାର ଶ୍ରେଣୀୟ ପ୍ଲାଣ୍ଟ ସ୍ଥାପନ କରାଯାଇଅଛି । ୧୯୯୫-୯୬ ଆର୍ଥିକ ବର୍ଷ ୧୨୦୦୦ ଧାର୍ଯ୍ୟ ଲକ୍ଷ୍ୟ ଉପରେ ୧୨୦୨୪ ଗୋଟି ପ୍ଲାଣ୍ଟ ସ୍ଥାପନ କରାଯାଇ ପାରିଛି । ଏ କ୍ଷେତ୍ରରେ ଆମ ରାଜ୍ୟରେ ପ୍ରଗତି ଖୁବ୍ ଭଲ ଏବଂ ରାଜ୍ୟ ଏକ୍ଷେତ୍ରରେ କେତେକ ଜାତୀୟ ପୁରସ୍କାର ମଧ୍ୟ ଲାଭ କରିଛି । ଚଳିତ ଆର୍ଥିକ ବର୍ଷ ୧୯୯୬-୯୭ରେ ୭୦୦୦ ଧାର୍ଯ୍ୟ ଲକ୍ଷ୍ୟ ଉପରେ ଜାନୁୟାରୀ ୯୭ ସୁଦ୍ଧା ୨୫୮୦ ଗୋଟି ପ୍ଲାଣ୍ଟ ସ୍ଥାପନ କରାଯାଇପାରିଛି ।

**(ଖ) ଉନ୍ନତ ଚୁଲା ଉପରେ ଜାତୀୟ କାର୍ଯ୍ୟକ୍ରମ :**

ରାଜ୍ୟରେ ରୋଷେଇ କାର୍ଯ୍ୟ ପାଇଁ କାଠକୁ ଜାଳେଣୀ ରୂପେ ବ୍ୟବହାର କରୁଥିବା ପରିବାର ବର୍ଗଙ୍କ ପାଇଁ ସ୍ୱଳ୍ପ ମୂଲ୍ୟରେ ଧୂମ ବିହୀନ ଉନ୍ନତ ଚୁଲା ଯୋଗାଇ ଦେବା ଉଦ୍ଦେଶ୍ୟରେ ୧୯୮୩-୮୪ ଆର୍ଥିକ ବର୍ଷରୁ ଏହି ପରିଯୋଜନାଟି ରାଜ୍ୟରେ ପ୍ରଚଳନ ହୋଇଆସୁଅଛି । ଏହା ଦ୍ୱାରା ଜାଳେଣି କାଠ ଏବଂ ଜଙ୍ଗଲ ସମ୍ପଦ ବଞ୍ଚାଇବାରେ ସହାୟକ ହୋଇ ପାରିଛି । ଏହି କାର୍ଯ୍ୟକ୍ରମଟି ''ସର୍ବନିମ୍ନ ଚାହିଦା କାର୍ଯ୍ୟକ୍ରମ'' ଭାବରେ ବିଂଶ ସୂତ୍ରୀ କାର୍ଯ୍ୟକ୍ରମର ଅନ୍ତର୍ଭୁକ୍ତ । ଭାରତ ସରକାର ଏବଂ ରାଜ୍ୟ ସରକାର ଏହି ପରିଯୋଜନାର କାର୍ଯ୍ୟକାରିତା ପାଇଁ ଅର୍ଥ ଯୋଗାଇଥାନ୍ତି । ଏହି କାର୍ଯ୍ୟକ୍ରମଟି ରାଜ୍ୟରେ DRDA ମାନଙ୍କ ଦ୍ୱାରା ଜିଲ୍ଲା ସ୍ତରରେ ଏବଂ କେତେକ ନିର୍ଦ୍ଦିଷ୍ଟ ବେସରକାରୀ ସଂସ୍ଥା ଏବଂ ଆତ୍ମନିଯୁକ୍ତି ପାଇଥିବା କର୍ମୀମାନଙ୍କ ଦ୍ୱାରା ବ୍ଲକ ସ୍ତରରେ କାର୍ଯ୍ୟକାରୀ ହେଉଛି । ୧୯୯୪-୯୫ ଆର୍ଥିକ ବର୍ଷ ସୁଦ୍ଧା ୮,୯୧,୯୧୫ ଗୋଟି ଉନ୍ନତ ଚୁଲା (୭,୬୪,୩୯୦ ଗୋଟି ବସା ଚୁଲା ଏବଂ ୧,୨୭,୫୨୫ ଗୋଟି ଉଠାଚୁଲା) ରାଜ୍ୟରେ ସ୍ଥାପନ କରାଯାଇପାରିଛି । ୧୯୯୫-୯୬ ଆର୍ଥିକ ବର୍ଷରେ ୨,୧୨,୪୬୩ ଗୋଟି ଉନ୍ନତ ଚୁଲା ସ୍ଥାପନ/ବିକ୍ରୟ କରାଯାଇଅଛି । ଚଳିତ ଆର୍ଥିକ ବର୍ଷ ୧୯୯୬-୯୭ ରେ ଧାର୍ଯ୍ୟ ହୋଇଥିବା ୧,୦୦,୦୦୦ ଲକ୍ଷ୍ୟ ଉପରେ ଜାନୁୟାରୀ ୧୯୯୭ ସୁଦ୍ଧା ୭୯,୪୪୨ ଗୋଟି ଚୁଲା ସ୍ଥାପନ/ବିକ୍ରୟ କରାଯାଇଅଛି ।

**(ଗ) ସୌର ଫଟୋଭୋଲଟାଇକ୍ ଆଲୋକ ପଦ୍ଧତି :**

ସୌର ଫଟୋଭୋଲଟାଇକ୍ କାର୍ଯ୍ୟକ୍ରମ ଗୁରୁତ୍ୱପୂର୍ଣ୍ଣ ଅଣପାରମ୍ପରିକ ନବୀକରଣ ଶକ୍ତି ଉତ୍ସ କାର୍ଯ୍ୟକ୍ରମମାନଙ୍କ ମଧ୍ୟରୁ ଗୋଟିଏ । ଏହା ପାରମ୍ପରିକ ଶକ୍ତି ପହଞ୍ଚିପାରି ନଥିବା ସୁଦୂର ଗ୍ରାମାଞ୍ଚଳ ଆଲୋକ ଯୋଗାଣର ବ୍ୟବସ୍ଥା କରିଥାଏ । ଏପରି ଯୋଜନାରେ ଅନ୍ତର୍ଭୁକ୍ତ ହୋଇଥିବା ବିଭିନ୍ନ ପ୍ରୟୋଗାତ୍ମକ କାର୍ଯ୍ୟ ହେଲା (୧) ରାସ୍ତା ଆଲୋକବତୀ ପଦ୍ଧତି ଏବଂ ଘରୋଇ ଆଲୋକ ବତୀ ପଦ୍ଧତି, (୨) ସୌର ଶକ୍ତି ଚାଳିତ ଦୂରଦର୍ଶନ ସେଟ୍ (୩) ସ୍ୱତନ୍ତ୍ର ଯନ୍ତ୍ର ଯଥା - ଇ.ଏଚ. ଏଫ. ସେଟ୍ (୪) ଶକ୍ତି ପ୍ରକଳ୍ପ ଏବଂ ସୌର ଶକ୍ତି ଲଣ୍ଠନ ଏବଂ ଅନ୍ୟାନ୍ୟ । ୧୯୮୪-୮୫ ଆର୍ଥିକ ବର୍ଷ ସୁଦ୍ଧା ୧୬୩୧ ଗୋଟି ସୌର ଆଲୋକ ବତୀ ପଦ୍ଧତି, ୫୧ ଗୋଟି ସୌର ଶକ୍ତି ପମ୍ପ, ୫୨ ଗୋଟି ସୌରଶକ୍ତି ଚାଳିତ ଦୂର ଦର୍ଶନ ସେଟ୍, ୧୦୯୪ ଗୋଟି ସୌର ଲଣ୍ଠନ, ୩୩.୫୧ KWP କ୍ଷମତା ସଂପନ୍ନ ଶକ୍ତି ପ୍ରକଳ୍ପ ଏବଂ ୫୦ ଗୋଟି ଇ.ଏଚ. ଏଫ. ସେଟ୍ ରାଜ୍ୟରେ ସ୍ଥାପନ/ପ୍ରଚଳନ କରାଯାଇଅଛି । ଭାରତ ସରକାର ଏବଂ ରାଜ୍ୟ ସରକାର କାର୍ଯ୍ୟକ୍ରମଟି ପାଇଁ ରିହାତି ଯୋଗାଇ ଦେଇଥାଆନ୍ତି । ୧୯୯୫-୯୬ ଆର୍ଥିକ ବର୍ଷରେ ୩୧ ଗୋଟି ଆଲୋକ ବତୀ ପଦ୍ଧତି ୬ ଗୋଟି ସୌର ଶକ୍ତି ଚାଳିତ ଦୂର ଦର୍ଶନ ସେଟ୍ ୬୮୬ ଗୋଟି ସୌର ଶକ୍ତି ଲଣ୍ଠନ ପ୍ରଚଳନ କରାଯାଇଅଛି । ଚଳିତ ଆର୍ଥିକ ବର୍ଷ ୧୯୯୬-୯୭ ରେ ଜାନୁୟାରୀ ୯୭ ସୁଦ୍ଧା ୧୦୦ ଗୋଟି ଧାର୍ଯ୍ୟ ଲକ୍ଷ୍ୟ ଉପରେ ୩୬ ଗୋଟି ଆଲୋକ ବତୀ ପଦ୍ଧତୀ ଏବଂ ୫୦୦ ଗୋଟି ଧାର୍ଯ୍ୟ ଲକ୍ଷ୍ୟ ଉପରେ ୧୮୭ ଗୋଟି ସୌର ଲଣ୍ଠନ ବିକ୍ରୟ କରାଯାଇଅଛି ।

**(ଘ) ସୌର ତାପର କାର୍ଯ୍ୟକ୍ରମ :**

ଏହି କାର୍ଯ୍ୟକ୍ରମ ଅଧୀନରେ କେତେକ ସଂଖ୍ୟକ ସୌର ତାପଜ ପଦ୍ଧତି ଯଥା ସୌର ପରି ଗରମ ଯନ୍ତ୍ର ସୌର ପରିଶ୍ରବଣ ଏବଂ ସୌର ରନ୍ଧନ ଚୁଲା ଅନ୍ତର୍ଭୁକ୍ତ । ଯାହାକି ପାରମ୍ପରିକ ଶକ୍ତି ସଂରକ୍ଷଣରେ ସାହାଯ୍ୟ କରେ । ଉପରୋକ୍ତ ଯନ୍ତ୍ରଗୁଡ଼ିକ ରିହାତି ଦରରେ ଯୋଗାଇ ଦିଆଯାଏ । ୧୯୯୪-୯୫ ଆର୍ଥିକ ବର୍ଷ ସୁଦ୍ଧା ୯୫୭୩୦ LPD (ଦିନକୁ ଲିଟର ହିସାବରେ) ପାଣି ଗରମ ଯନ୍ତ୍ର, ୩୭.୫୦ LPD (ଦିନକୁ ଲିଟର ହିସାବରେ) ସୌର ପରିଶ୍ରବଣ ଯନ୍ତ୍ର ଏବଂ ୩୭୪ ଗୋଟି ସୌର ରନ୍ଧନ ଚୁଲା ପ୍ରଚଳନ କରାଯାଇଅଛି । ଚଳିତ ଆର୍ଥିକ ବର୍ଷ ୧୯୯୬-୯୭ ଜାନୁୟାରୀ ୯୭ ପର୍ଯ୍ୟନ୍ତ ୧୦୦ LPD (ଦିନକୁ ଲିଟର ହିସାବରେ) ପାଣି ଗରମ ଯନ୍ତ୍ର, ୩୭.୫୦ LPD (ଦିନକୁ ଲିଟର ହିସାବରେ) ପରିଶ୍ରମଣ ଯନ୍ତ୍ର ଏବଂ ୪୮ ଗୋଟି ସୌର ରନ୍ଧନ ଚୁଲା ସ୍ଥାପନା/ବିକ୍ରୟ କରାଯାଇଅଛି ।

**(ଙ) ସମନ୍ୱିତ ଗ୍ରାମ୍ୟ ଶକ୍ତି ଯୋଜନା କାର୍ଯ୍ୟକ୍ରମ :**

ବିଗତ ୧୯୮୬-୮୭ ମସିହାଠାରୁ ସମନ୍ୱିତ ଗ୍ରାମ୍ୟ ଶକ୍ତି ଯୋଜନା ଓଡ଼ିଶାରେ କେତେଗୋଟି ନିର୍ଦ୍ଦିଷ୍ଟ ବ୍ଲକରେ କାର୍ଯ୍ୟକାରୀ ହେଉଅଛି । ସିରୀକୃତ ବ୍ଲକରେ ଶକ୍ତି ଆବଶ୍ୟକତା ନିରୂପଣ କରିବା ଏବଂ ସମସ୍ତ ପ୍ରକାର ଶକ୍ତି ମାଧ୍ୟମରେ ଶକ୍ତିର ଚାହିଦା ପୂରଣ କରିବା ଏହି ପରିକଳ୍ପନାର ମୁଖ୍ୟ ଆଭିମୁଖ୍ୟ । ୧୯୯୪-୯୫ ଆର୍ଥିକ ବର୍ଷ ସୁଦ୍ଧା ୧୧

ଗୋଟି ବ୍ଲକ ସମନ୍ୱିତ ଗ୍ରାମ୍ୟ ଶକ୍ତି ଯୋଜନାର ଅନ୍ତର୍ଭୁକ୍ତ ହୋଇଅଛି । ୧୯୯୫-୯୬ ଆର୍ଥିକ ବର୍ଷରେ ୫ ଗୋଟି ଅଧିକ ବ୍ଲକ କାର୍ଯ୍ୟକ୍ରମ ସାମିଲ କରାଯାଇ ମୋଟ ବ୍ଲକ ସଂଖ୍ୟା ୧୬କୁ ବୃଦ୍ଧି କରାଯାଇ ପାରିଛି ।

**କୋଣାର୍କ ଟେଲିଭିଜନ ଲିମିଟେଡ୍ :**

କୋଣାର୍କ ଟେଲିଭିଜନ ଲିଃ ୧୯୮୨ ମସିହାଠାରୁ ରାଜ୍ୟରେ କଳାଧଳା ଏବଂ ରଙ୍ଗୀନ ଟେଲିଭିଜନ ସେଟ୍‌ର ଉତ୍ପାଦନ ଓ ବିକ୍ରୟ କାର୍ଯ୍ୟ ସମ୍ପାଦନ କରି ଆସୁଅଛି । କମ୍ପାନୀ ୧୯୯୫-୯୬ ମସିହାରେ ୩୭,୪୩୦ ଗୋଟି କଳାଧଳା ଓ ରଙ୍ଗୀନ ଟିଭି ବିକ୍ରୟ କରିଅଛି । ତନ୍ମଧ୍ୟରୁ ୧୨୦୦ ଟି ଟିଭି ସେଟ୍ ବିଦେଶକୁ ରପ୍ତାନୀ କରାଯାଇ ୧୨.୫୬ ଲକ୍ଷ ଟଙ୍କାର ବୈଦେଶିକ ମୁଦ୍ରା ଅର୍ଜନ କରାଯାଇଅଛି । ଚଳିତ ବର୍ଷ ୧୯୯୬-୯୭ ଜାନୁଆରୀ ଶେଷ ସୁଦ୍ଧା କମ୍ପାନୀ ୨୩,୭୨୪ ଗୋଟି କଳାଧଳା ଓ ରଙ୍ଗୀନ ଟିଭି ସେଟ୍ ବିକ୍ରୟ କରିଅଛି ।

**ଓଡ଼ିଶା ରାଜ୍ୟ ଇଲେକ୍‌ଟ୍ରୋନିକ୍ସ ଉନ୍ନୟନ ନିଗମ :**

ରାଜ୍ୟରେ ଉଭୟ ହାର୍ଡ଼ଓ୍ୱାର ଏବଂ ସଫ୍‌ଟଓ୍ୱାର ଇଲେକ୍‌ଟ୍ରୋନିକ୍ସ ଶିଳ୍ପର ପ୍ରୋତ୍ସାହନ ପାଇଁ ଓଡ଼ିଶା ରାଜ୍ୟ ଇଲେକ୍‌ଟ୍ରୋନିକ୍ସ ଉନ୍ନୟନ ନିଗମ (OSEDC) ପ୍ରମୁଖ ସଂସ୍ଥା ଅଟେ । ୧୯୮୧ ମସିହାରେ ଏହା ପ୍ରତିଷ୍ଠିତ ହେବାପରଠାରୁ ନିଗମ କ୍ଷୁଦ୍ର, ମଧ୍ୟମ ଓ ବୃହତ କ୍ଷେତ୍ରରେ ୧୪ ଟି ଇଲେକ୍‌ଟ୍ରୋନିକ୍ସ ଶିଳ୍ପ ପ୍ରତିଷ୍ଠା କରିଅଛି । ଏହା ସହିତ ୯ଟି ପ୍ରକଳ୍ପ କାର୍ଯ୍ୟକାରୀ ହେବା ଅବସ୍ଥାରେ ରହିଅଛି । ସେଗୁଡ଼ିକ ନିମ୍ନରେ ପ୍ରଦତ୍ତ ହେଲା : କ୍ରିସ ଇଲେକ୍‌ଟ୍ରୋନିକ୍ସ ଲିଃ, ଏଲକୋ ପାଓ୍ୱାର୍ ପ୍ରାଇଭେଟ ଲି, ଏନ୍.ବି.ସି. ଇଶ୍ୱର (ଇଣ୍ଡିଆ) ପ୍ରାଇଭେଟ୍ ଲିଃ, ଓରେଟ୍ ମୁବିକେସନ୍ ଲିଃ, ଓସନ୍ଦ୍ ଇଲେକଟ୍ରୋନିକ୍ସ ପ୍ରାଇଭେଟ ଲିଃ, କିଶାନ ଇଲେକ୍‌ଟ୍ରୋନିକ୍ସ ପ୍ରାଇଭେଟ ଲିଃ, ଭିଜିୟନ ଇନଫୋଟେକ୍ ଲିଃ, ଇନଫୋସିସ ଟେକୋଲିଜିସ୍ ଲିଃ ଏବଂ ସତ୍ୟମ କମ୍ପୁଟର ସର୍ଭିସେସ୍ ଲିଃ ।

**ପ୍ରୋତ୍ସାହନ ମୁଖ୍ୟଲେଖ୍ୟର ପ୍ରସ୍ତୁତି କରଣ**

ଓଡ଼ିଶା ରାଜ୍ୟ ଇଲେକଟ୍ରୋନିକ୍ସ ଉନ୍ନୟନ ନିଗମ ଲିଃ ମଧ୍ୟ ପ୍ରୋତ୍ସାହନ ମୁଖ୍ୟଲେଖ୍ୟର ପ୍ରସ୍ତୁତି କରଣ ନିମନ୍ତେ ସାହାଯ୍ୟ କରୁଅଛି । ପ୍ରତ୍ୟାଶିତ ପୁଞ୍ଜି ବିନିଯୋଗକାରୀଙ୍କ ସୁବିଧା ପାଇଁ ନିମ୍ନଲିଖିତ ପ୍ରକଳ୍ପ ଗୁଡ଼ିକ ନିମନ୍ତେ ଭିତ୍ତିଭୂମି/ଉତ୍ପନ୍ନ ଦ୍ରବ୍ୟର ମୁଖ୍ୟଲେଖ୍ୟ ପ୍ରସ୍ତୁତ କରିଅଛି । (କ) ରେଡ଼ିଓ ପେଜର୍ସ, (୨) ଇପିଏ ବିଏକ୍ସ, (୩) ଟେଲିକମ୍ୟୁନିକେସନ୍ ଇକ୍ୱିପମେଣ୍ଟ (୪) ୟୁ ପିଏସ୍ (୫) ଇଲୋକ୍‌ଟ୍ରୋ ମେଡ଼ିକାଲ ଇକ୍ୱିପମେଣ୍ଟ (୬) ଓ୍ୱାସିଙ୍ଗ ମେସିନ୍ (୭) କଲର ଟେଲିଭିଜନ (୮) ଲାଇଟ୍ ଏମିଟିଙ୍ଗ ଡାୟୋଡ୍‌ସ୍ (୯) ସୋଲାର ସେଲସ୍ (୧୦) ଆଲୁମିନିୟମ ଇଲୋକ୍‌ଟ୍ରୋଲାଇଟିକ୍ କାପାସିଟର, (୧୧) ପ୍ରିଣ୍ଟେଡ଼ ସର୍କିଟ୍ ବୋର୍ଡ଼ସ (୧୨) ଭିଡ଼ିଓ ବ୍ଲାକସ୍ (୧୩) ସିଡ଼ି ରମ୍, (୧୪) ଜେଲି ଫିଲ୍‌ଡ୍ କେବୁଲ୍ (୧୫) ପ୍ଲାଷ୍ଟିକ ଫିଲ୍ମ କାପାସିଟର (୧୬) ଉଡେନ କଙ୍ଗସ, (୧୭) ସଫ୍‌ଟ ଫେରାଇଟ୍ (୧୮) କପର କ୍ଲାଡ୍ ଲାମିନେଟସ୍ (୧୯) ଗ୍ଲାସ ସେଲ (୨୦) କମ୍ୟୁନିକେସନ ନେଟ୍‌ଓ୍ୱାର୍କ (୨୧) ସଫ୍‌ଟଓ୍ୱାର ଟେକ୍ନୋଲୋଜି ପାର୍କ, (୨୨) ବେଷ୍ଟ ପାର୍କ, (୨୩) ଓଭର ଭିଉ ଅଫ୍ ଇଏଟଟିପି ସ୍କିମ୍ ।

**ଓଡ଼ିଶା ବିଜ୍ଞାନ ଏକାଡ଼େମୀ :**

ବୈଜ୍ଞାନିକମାନଙ୍କୁ ନେଇ ଗଠିତ ଏହି ସଂସ୍ଥାର ମୂଳ ଲକ୍ଷ୍ୟ ହେଲା ରାଜ୍ୟରେ ବିଜ୍ଞାନକୁ ଲୋକପ୍ରିୟ କରିବା ଏବଂ ଗବେଷଣାରତ ବୈଜ୍ଞାନିକମାନଙ୍କୁ ପ୍ରୋତ୍ସାହିତ କରିବା ।

ଚଳିତ ବର୍ଷରେ ଏକାଡ଼େମୀର ଲୋକପ୍ରିୟ ବିଜ୍ଞାନ ପତ୍ରିକା "ବିଜ୍ଞାନ ଦିଗନ୍ତ" ର ୫ ଗୋଟି ଦ୍ୱିମାସିକ ସଂଖ୍ୟା ପ୍ରକାଶିତ ହୋଇଛି । ୧୯୯୩ ବର୍ଷରେ ୪ ଜଣ ବିଶିଷ୍ଟ ବିଜ୍ଞାନ ଲେଖକଙ୍କୁ ସେମାନଙ୍କର ପୁସ୍ତକ ପାଇଁ ପୁରସ୍କୃତ କରିବା ପାଇଁ ମନୋନୀତ କରାଯାଇଛି । ଶିକ୍ଷାନୁଷ୍ଠାନ ଓ ସ୍ୱେଚ୍ଛାସେବୀ ଅନୁଷ୍ଠାନମାନଙ୍କ ସହାୟତାରେ ରାଜ୍ୟରେ ବିଭିନ୍ନ ଅଞ୍ଚଳରେ ବିଜ୍ଞାନ ପ୍ରଦର୍ଶନୀ, ପ୍ରତିଯୋଗିତା ଓ ବକ୍ତୃତାମାଳାର ଆୟୋଜନ କରାଯାଇଛି । ଭାରତ ସରକାରଙ୍କର NCSTC ର ସହଯୋଗରେ ଜାତୀୟ ବିଜ୍ଞାନ ଦିବସ ୧୯୯୬ ଓ ଆଞ୍ଚଳିକ କ୍ୱିଜ୍ ପ୍ରତିଯୋଗିତା ଅନୁଷ୍ଠିତ ହୋଇଛି । ୧୯୯୧, ୧୯୯୨ ଓ ୧୯୯୩ ବର୍ଷ ପାଇଁ ସମ୍ମାନଜନକ ସାମନ୍ତ ଚନ୍ଦ୍ର ଶେଖର ପୁରସ୍କାର ରାଜ୍ୟର ୬ ଜଣ ବୈଜ୍ଞାନିକଙ୍କୁ ଦିଆଯିବା ପାଇଁ ନାମ ତାଲିକା ପ୍ରକାଶ କରାଯାଇଛି । ଫେବ୍ରୁଆରୀ ୧୯୯୬ ରେ ବାରିପଦାଠାରେ ବିଜ୍ଞାନ ଲେଖକ ପାଠଚକ୍ର ଅନୁଷ୍ଠିତ ହୋଇଛି । ୧୯୯୫-୯୬ ବର୍ଷ ପାଇଁ ୬ ଜଣ ୧୯୯୬-୯୭ ବର୍ଷ ପାଇଁ ୭ ଜଣ ବୈଜ୍ଞାନିକଙ୍କୁ ସମ୍ମାନଜନକ ସାମନ୍ତ ଚନ୍ଦ୍ର ଶେଖର ପୁରସ୍କାର ଦିଆଯାଇଛି ।

**ଜୈବ କାରିଗରୀ ବିଦ୍ୟାର ପ୍ରୟୋଗ :**

ଜୈବ କାରିଗରୀ ବିଦ୍ୟା ପ୍ରୟୋଗ ଦ୍ୱାରା କୃଷି ଓ ପଶୁ ସମ୍ପଦ ବିକାଶର ସମ୍ଭାବନାକୁ ଅନୁଭବ କରି ରାଜ୍ୟ ବିଜ୍ଞାନ ଓ କାରିଗରୀ ପରିଷଦ କେନ୍ଦ୍ର ବାୟୋଟେକ୍ନୋଲୋଜି ବିଭାଗ ସହଯୋଗରେ ଗବେଷଣା ଓ ଉନ୍ନୟନ କାର୍ଯ୍ୟ ହାତକୁ ନେଇଛନ୍ତି । ୩ ଗୋଟି ଗବେଷଣା ପ୍ରକଳ୍ପ ଅନୁମୋଦିତ ହୋଇ ବର୍ତ୍ତମାନ ବାୟୋଟେକ୍ନୋଲୋଜି ବିଭାଗର ସହାୟତା ଲାଭ କରିଛି । ଜୀବ ବିଜ୍ଞାନ ପ୍ରତିଷ୍ଠାନରେ ଗବେଷଣାର ସୁଯୋଗକୁ ଦୃଷ୍ଟିରେ ରଖି ଏହି ଅନୁଷ୍ଠାନକୁ ଏକ ଜୈବ କାରିଗରୀ ଗବେଷଣା କେନ୍ଦ୍ରଭାବେ ଗଢ଼ିବା ପାଇଁ ନିଷ୍ପତ୍ତି ନିଆଯାଇଛି । ବର୍ତ୍ତମାନ ପ୍ରତିଷ୍ଠାନରେ ଏକ ଜୈବ କାରିଗରୀ ସୂଚନା କେନ୍ଦ୍ର ସ୍ଥାପନ କରି ଏହି କ୍ଷେତ୍ରରେ ଗବେଷଣାକୁ ତ୍ୱରାନ୍ୱିତ କରିବା ଉଦ୍ଦେଶ୍ୟରେ ବାୟୋଟେକ୍ନୋଲୋଜି ବିଭାଗକୁ ଅନୁରୋଧ କରାଯାଇଛି ।

—0—



OGP—MP—PTS (L & P. R.) 44—5,000—29-12-1997

ଆକାଶ ଆକ୍ରମଣ ଭିତରେ ରହି ସେମାନଙ୍କ କବଳରୁ ମହମ୍ମଦ ହଟ୍ଟା ଓ ଶାହାରିଆର ପ୍ରଭୃତି ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ନେଇ ଆସିଥିଲେ ଜାକର୍ତ୍ତାରୁ ରେଙ୍ଗୁନ ଓ ରେଙ୍ଗୁନରୁ ଦିଲ୍ଲୀ । ବିମାନ ବିଧ୍ୱଂସୀ କମାଣର ଗୁଳିବର୍ଷଣରେ ଉଡ଼ାଜାହାଜ ଦେଣା ସବୁ ଗୁଳି ବିଦ୍ଧ । ଏପରି ସାହସ ଖାଲି ଭାରତ କାହିଁକି ସମଗ୍ର ବିଶ୍ୱରେ ବିରଳ । ତାହା ତାଙ୍କୁ ଆଣି ଦେଇଥିଲା ଆନ୍ତର୍ଜାତିକ ଖ୍ୟାତି । ସେ ହୋଇ ପାରିଥିଲେ ନେହେରୁଙ୍କର ପ୍ରିୟପାତ୍ର । ସେ ଆଜି ଇଣ୍ଡୋନେସିଆର ଭୂମି ପୁତ୍ର । ଯାହା ପାଇଁ ଇଣ୍ଡୋନେସିଆ ସରକାର ତାଙ୍କୁ ୧୯୫୦ ମସିହାରେ ଦେଇଥିଲେ ୫୦୦ କୋଟି ଟଙ୍କା ପୁରସ୍କାର । କିନ୍ତୁ ବିଜୁବାବୁ ସେ ଟଙ୍କାକୁ ଫେରାଇ ଦେଇଥିଲେ ଇଣ୍ଡୋନେସିଆ ସରକାରଙ୍କୁ । ଏଥିରୁ ଜଣାପଡ଼େ କିପରି ନିର୍ଲୋଭ ବାଞ୍ଛିଥିଲେ ।

ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ଚୀନ ବିପ୍ଳବୀମାନଙ୍କୁ ବିମାନ ଉପରୁ ସାହାଯ୍ୟ କରି ଆନ୍ତର୍ଜାତିକ ଖ୍ୟାତି ଆଣିଥିଲେ । ସେହି ବିଶ୍ୱଯୁଦ୍ଧ ସମୟରେ ଜାପାନର ବର୍ମା ଆକ୍ରମଣ ସମୟରେ ଜୀବନକୁ ବିପନ୍ନ କରି ବ୍ରିଟିଶ ପରିବାରମାନଙ୍କୁ ରକ୍ଷା କରି ଥିଲେ । ସେହି ବୀରତ୍ୱ ଓ ସାହସ ତାଙ୍କୁ ବିଶ୍ୱ ବିଖ୍ୟାତ କରିଥିଲା ।

ଜୟ ପ୍ରକାଶ, ଅଚ୍ୟୁତ ପଟ୍ଟବର୍ଦ୍ଧନ, ରାମ ମନୋହର ଲୋହିଆ, ଅରୁଣା ଆସଫ ଅଲ୍ଲୀ ପ୍ରଭୃତି ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ନିଜ ଘରେ ଲୁଚାଇ ରଖି ନିଜ ଜୀବନକୁ ବିପନ୍ନ କରିଥିଲେ ।

୧୯୪୭ ରେ ପାକିସ୍ତାନୀମାନଙ୍କର କାଶ୍ମୀର ଆକ୍ରମଣ ସମୟରେ ଯଦି ନିଜ ଜୀବନକୁ ବିପନ୍ନ କରି ବିମାନ ଦ୍ୱାରା ଯଦି ଭାରତୀୟ ସେନା ବାହିନୀକୁ ସେଠାରେ ପହଞ୍ଚାଇ ନ ଥାନ୍ତେ ତେବେ କାଶ୍ମୀର ଆଉ ଭାରତରେ ନ ଥାନ୍ତା । ତେଣୁ ନେହେରୁ ତାଙ୍କୁ ପ୍ରଶଂସା କରି କହିଥିଲେ, "ବିଜୁ" ଠାରେ ଥିବା ସାହସ ଓ ବୀରତ୍ୱ ବିଶ୍ୱର ଦ୍ୱିତୀୟ ବ୍ୟକ୍ତି ଠାରେ ବିରଳ ।

ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କ ପ୍ରେରଣାରେ ସେ ମଧ୍ୟ ଅନୁପ୍ରାଣିତ ହୋଇଥିଲେ । ବର୍ମାରୁ ଉଡ଼ାଜାହାଜରେ ଫେରିବା ସମୟରେ ଆଜାଦ୍ ହିନ୍ଦ ଫୌଜ ସପକ୍ଷରେ ଆକାଶରୁ ପ୍ରଚାରପତ୍ର ଭୂମି ଉପରକୁ ପକାଇଥିଲେ ।

ବିଜୁ ବାବୁଙ୍କ ସାହାଯ୍ୟ ଓ ପ୍ରେରଣାରେ ଓଡ଼ିଶାର ଅନେକ ଲୋକ ବିଦେଶରେ ପାଠ ପଢ଼ି ବଡ଼ ହୋଇ ପ୍ରତିଷ୍ଠା ଲାଭ କରିଛନ୍ତି । ଆଜି ଯେଉଁ ଓଡ଼ିଆ ଯୁବକମାନେ ଓଡ଼ିଶା ବାହାରେ ତଥା ଓଡ଼ିଶାରେ ଶିଳ୍ପ ପ୍ରତିଷ୍ଠା କରି ସଫଳତା ଲାଭ କରିଛନ୍ତି ସେଥିରୁ ଅଧିକାଂଶଙ୍କ ପଛରେ ବିଜୁ ପଟ୍ଟନାୟକଙ୍କର ପ୍ରେରଣା ଓ ଆଶୀର୍ବାଦ ଅଛି । ସବୁବେଳେ ସେ କହୁଥିଲେ, ମୁଁ ଚାହେଁ ଯେଉଁ କଳିଙ୍ଗର ଶିଳ୍ପୀ ବିଶ୍ୱ ବିଖ୍ୟାତ କୋଣାର୍କ ତୋଳିଥିଲା, ସେହି ରାଜ୍ୟର ସୁଯୋଗ୍ୟ ଶିଳ୍ପୀ, ସ୍ୱନାମଧନ୍ୟ କାରିଗର, ମହାନ ସଙ୍ଗୀତଜ୍ଞ ସୃଷ୍ଟି ହେବା ଉଚିତ୍ ।

ପାରାଦୀପ ବନ୍ଦର ଠାରୁ ଆରମ୍ଭ କରି ରାଉରକେଲା ଇସ୍ପାତ କାରଖାନା, ରେଙ୍ଗାଲୀ ଜଳ ବିଦ୍ୟୁତ ପ୍ରକଳ୍ପ ଠାରୁ ଆରମ୍ଭ କରି ବଡ଼ବିଲ ଫେରୋ କାରଖାନା, ଆଉ ମଧ୍ୟ ମିଗ୍ କାରଖାନା, ନାଲକୋ ଆଲୁମିନିୟମ କାରଖାନା ଯାହା ସବୁ ଦୃଶ୍ୟମାନ ହୁଏ ସେ ସବୁଥିରେ ଆମେ ଦେଖିପାରିବା ବିଜୁଙ୍କର ସ୍ୱାକ୍ଷର ।

ତାଙ୍କର ଆଉ ଗୋଟିଏ ମହତ୍ ପରିକଳ୍ପନା ଥିଲା ପଞ୍ଚାୟତ ଶିଳ୍ପ । ଯାହାଦ୍ୱାରା ଓଡ଼ିଶାର ଆର୍ଥିକ ଅନାଟନ ଦୂର ହୋଇ ପାରି ଥାଆନ୍ତା ଓ ଉତ୍କଳରେ ବେକାରୀ ସମସ୍ୟା ନଥାନ୍ତା । ବେଳେ ବେଳେ ଉଦାହରଣ ଦେଇ କହନ୍ତି, ଓଡ଼ିଶାକୁ ଦ୍ୱିତୀୟ ଜାପାନ କରିବାକୁ ହେବ । ଏହି ପ୍ରଗତିଶୀଳ ଚିନ୍ତାଧାରା ସମ୍ପର୍କରେ ଭାରତରେ ଥିବା ଆମେରିକାର ତତ୍କାଳୀନ ରାଷ୍ଟ୍ରଦୂତ "ଡ଼କ୍ଟର ଚେଷ୍ଟର ବୋଲ୍ସ" ତାଙ୍କ ସଂକଳିତ ପୁସ୍ତକ Making of great Society ରେ ଉଲ୍ଲେଖ କରି କହିଛନ୍ତି ଯଦି ସରକାର ଏହି ଯୋଜନାକୁ ଠିକ୍ ଭାବରେ ନେଇ ଆଣି ଥାଆନ୍ତେ ତେବେ ଓଡ଼ିଶା ଜାପାନ ସମକକ୍ଷ ହୋଇ ସାରନ୍ତାଣି । କାରଣ ଜାପାନର ଘରୋଇ କ୍ଷୁଦ୍ରଶିଳ୍ପ ଓ ଓଡ଼ିଶାର ପଞ୍ଚାୟତ ଶିଳ୍ପର ଆରମ୍ଭ ପ୍ରାୟ ଏକ ସମୟରେ ହୋଇଥିଲା । ଉଭୟ ଦେଶର ଏହି ଦୁଇଟି ଯୋଜନା ପ୍ରାୟ ସମାନ ତାଳରେ ଚାଲିଥିଲା ।

ସେ ଥିଲେ ପ୍ରକୃତରେ ଦାନୀ ଅନ୍ୟକୁ ସାହାଯ୍ୟ କରିବା ତାଙ୍କର ସ୍ୱଭାବଗତ ପ୍ରବୃତ୍ତି । କେତେ ଗରିବ ମେଧାବୀ ଛାତ୍ରକୁ ସେ ଅର୍ଥ ସାହାଯ୍ୟ କରିନାହାନ୍ତି ? କେତେ ଅନାଥଙ୍କୁ ବାସ ଦେଇ ନାହାନ୍ତି ? ଅର୍ଥ ରୋଜଗାର ଯେପରି ବେପରୁଆ ଭାବରେ କରନ୍ତି ସେହିପରି ଖର୍ଚ୍ଚ ମଧ୍ୟ କରିଛନ୍ତି । ନିଜ ପାଇଁ ତଥା କୁଟୁମ୍ବ ପାଇଁ କିଛିକରି ନାହାନ୍ତି । ଉପାର୍ଜିତ ଧନକୁ ପୁଞ୍ଜିରେ ନ ରଖି ସାମାଜିକ କାର୍ଯ୍ୟରେ ଅଜସ୍ର ଖର୍ଚ୍ଚ କରନ୍ତି । ଖର୍ଚ୍ଚ କରିବାର ଆନନ୍ଦ ତାଙ୍କଠାରେ ହିଁ ଥିଲା । ସେ ଖର୍ଚ୍ଚ ଥିଲା ଦୁସ୍ଥ ଦରିଦ୍ର ଓ ନିଃସ୍ୱଙ୍କ ଉନ୍ନତି ସାଧନ ପାଇଁ ।

କଳିଙ୍ଗର ନାମକୁ ଆନ୍ତର୍ଜାତିକ ସ୍ତରରେ ପ୍ରତିଷ୍ଠା କରାଇବାରେ ମୁଖ୍ୟ ଭୂମିକା ଗ୍ରହଣ କରି ସ୍ୱାଭିମାନରେ କହୁଥିଲେ, ମୁଁ ଖାରବେଳ ଜାତିର ଦାୟାଦ୍ । କଳାର ଉତ୍କର୍ଷତା ପାଇଁ ମୋ ରାଜ୍ୟର ନାମ କଳିଙ୍ଗ । ଏହି କଳିଙ୍ଗ "ମୋ ମା" ପାଇଁ ନିଜ ଜୀବନ ବିନିମୟରେ ଯଦି କିଛିଇ କରି ପାରିଲି ତାହା ହିଁ ଜୀବନର ବଡ଼ କର୍ତ୍ତବ୍ୟ । କଳିଙ୍ଗର ନାମ ସମଗ୍ର ବିଶ୍ୱରେ ବିଖ୍ୟାତ କରିବା ପାଇଁ ସେ ଆନ୍ତର୍ଜାତିକ ସ୍ତରରେ ସ୍ଥାପନ କରିଥିଲେ "କଳିଙ୍ଗ ପୁରସ୍କାର" । କଳିଙ୍ଗ ଟ୍ରଷ୍ଟ ପ୍ରତିଷ୍ଠା କରି ଯେପରି ଭାବରେ ମୁକ୍ତ ହସ୍ତରେ ସାହାଯ୍ୟ କରିଛନ୍ତି ତାହା ଅବର୍ଣ୍ଣନୀୟ ।

ବୈଷୟିକ ବିଦ୍ୟାର ଉନ୍ନତି ନିମିତ୍ତ ଭୁବନେଶ୍ୱରରେ କୃଷି ମହାବିଦ୍ୟାଳୟ ଓ ବିଶ୍ୱବିଦ୍ୟାଳୟ, ରାଉରକେଲା ଠାରେ ଆଞ୍ଚଳିକ ଇଞ୍ଜିନିୟରିଂ କଲେଜ, ସୈନିକ ସ୍କୁଲ, Regional College of Education ପ୍ରଭୃତି ସ୍ଥାପନ କରି ଶିକ୍ଷା କ୍ଷେତ୍ରରେ ଦେଶ ବିଦେଶରେ ଓଡ଼ିଶାର ପ୍ରତିଷ୍ଠା ଆଣିଥିଲେ ।

ଦୈତାରୀ ଠାରେ ଦ୍ୱିତୀୟ ଇସ୍ପାତ କାରଖାନା ପାଇଁ କୋରିଆର ପେସ୍କୋ କମ୍ପାନୀ ସହ ସେ ଚୁକ୍ତି କରିଥିଲେ ।

କଳିଙ୍ଗର ବରପୁତ୍ର ଯେଉଁ ସବୁ ଶିଳ୍ପ ପ୍ରତିଷ୍ଠା କରିଥିଲେ, ସେ ସବୁ ଶିଳ୍ପ ନାମ ମୂଳରେ କଳିଙ୍ଗ ଲାଗିଥିଲା ଯଥା -କଳିଙ୍ଗ ଟ୍ୟୁବସ୍, କଳିଙ୍ଗ ଆଇରନ ୱାର୍କ୍ସ, କଳିଙ୍ଗ ରେଫ୍ରିଜରେଟର ଇତ୍ୟାଦି ।

ଏ/୮ ଅଶୋକନଗର
ଭୁବନେଶ୍ୱର

# ବିଜୁବାବୁ ବହୁ ତପସ୍ୟାର ମୂର୍ତ୍ତିମନ୍ତ ବିଗ୍ରହ

ପ୍ରଫେସର ଗୌରୀକୁମାର ବ୍ରହ୍ମା

ସମଗ୍ର ଭାରତର ସ୍ୱନାମଧନ୍ୟ ଜନନାୟକ ପୂଜ୍ୟ ବିଜୟାନନ୍ଦ ପଟ୍ଟନାୟକଙ୍କର ମହାପ୍ରୟାଣ ହୋଇଯାଇଛି, ଏହି ଏପ୍ରିଲ ମାସ ୧୭ ତାରିଖରେ । ତାଙ୍କର ଜୀବନକାଳ ମଧ୍ୟରେ ଓଡ଼ିଶାର ସାମାଜିକ ଜୀବନରେ ଖ୍ୟାତି ଅର୍ଜନ କରିଥିବା ବ୍ୟକ୍ତିବିଶେଷ, କେତେକ କ୍ଷେତ୍ରରେ ନିଜକୁ ମହାମହିମ ବିଜୁବାବୁଙ୍କର ସମକକ୍ଷ ବୋଲି ମନେ କରିଥିବେ । କିନ୍ତୁ ବିଜୁବାବୁଙ୍କ ତିରୋଭାବରେ ଏକଥା ପ୍ରମାଣିତ ହୋଇଗଲା ଯେ, ଓଡ଼ିଶାର ମହାକବି କବିସମ୍ରାଟ ଉପେନ୍ଦ୍ରଭଞ୍ଜଙ୍କର ଜନ୍ମପୀଠରେ ଯଦିଓ ସେ ଜନ୍ମଗ୍ରହଣ କରିଥିଲେ, ତଥାପି ସେ କେବଳ ଜଣେ ଓଡ଼ିଆ ନଥିଲେ, ସେ ଥିଲେ ବିଶ୍ୱଗୌରବିଣୀ ଭାରତ ଜନନୀଙ୍କର ଅସାଧାରଣ ଏବଂ ବିସ୍ମୟକର ପ୍ରତିଭାସଂପନ୍ନ, ଜଣେ ସୁଯୋଗ୍ୟ ସନ୍ତାନ । ଲୋକେ କହନ୍ତି, କୌଣସି ପରିବାରର ବା ଗ୍ରାମର ଜଣେ କରିତକର୍ମା ବ୍ୟକ୍ତି ଇହଧାମ ତ୍ୟାଗ କରାପରେ ମଧ୍ୟ, ତାଙ୍କର ଅସମାହିତ କେତେକ ବିଶିଷ୍ଟ କର୍ମର ପୂର୍ଣ୍ଣତା ନିମନ୍ତେ ସେ ପୁଣି କିଛି କାଳପରେ, ତାଙ୍କ ଜନ୍ମ ସମୟର ହାର୍ଦ୍ଦିକ ଆକାଂକ୍ଷା ପୂରଣ କରିବାପାଇଁ ପୃଥିବୀରେ ସେହି ପରିବାରରେ ବା ଗ୍ରାମରେ ଜନ୍ମଗ୍ରହଣ କରିଥାଆନ୍ତି । ସମ୍ଭବତ ଭଞ୍ଜବଂଶର ଉପେନ୍ଦ୍ରଭଞ୍ଜ ସମସାମୟିକ ଭାରତୀୟ ପଣ୍ଡିତ ସମାଜର ଚିର-ଚାଞ୍ଚଲ୍ୟକର ଚାତୁର୍ଯ୍ୟଭରା ରଚନାକରି, ସମଗ୍ର ସଂସ୍କୃତ ସାହିତ୍ୟକୁ ମଧ୍ୟ ନିଷ୍ପ୍ରଭ କରିଦେବା ପାଇଁ କୌଣସି ଉଦ୍ୟମ କରିଥିଲେ । ହୁଏତ, ମହାକବିଙ୍କର ଜନ୍ମମାଟିରେ ଏବଂ ଗୌରବମୟ ସେହି ଭଞ୍ଜବଂଶ ସଙ୍ଗେ ସଂପୃକ୍ତ, ଦୁର୍ଦ୍ଧର୍ଷ ଏବଂ ସଂଗ୍ରାମଶୀଳ ପରିବାରରେ ବିଜୁବାବୁ- ଅଭିହିତ ସେହି ଉପେନ୍ଦ୍ରଭଞ୍ଜ ପୃଥିବୀରେ ଜନ୍ମ ଗ୍ରହଣ କରି, ତାଙ୍କ ଜନ୍ମଭୂମି ଉତ୍କଳ ପାଇଁ ପ୍ରଗତିର ସୋପାନଗୁଡ଼ିକ ନିର୍ମାଣ କରିବା ସଙ୍ଗେ ସଙ୍ଗେ, ସମଗ୍ର ଭାରତର ଲବ୍ଧପ୍ରତିଷ୍ଠ ଓ ପ୍ରାପ୍ତଯୌବନ ଜନନାୟକମାନଙ୍କୁ ମଧ୍ୟ ବିସ୍ମିତ କରିଦେଇଥିଲେ । ଉତ୍କଳର ଦୁଃସାହସିକ ଓ ପ୍ରଭାବଶାଳୀ ଶାସକଙ୍କ ପରି, ଆମର ପ୍ରିୟ ପୂଜ୍ୟ ଓ ବନ୍ଦନୀୟ ବିଜୁବାବୁ ଦ୍ରୁତଗତିରେ ଏବଂ ସ୍ୱଗୌରବ, ଆଜିର ଓଡ଼ିଆଙ୍କର ପୁନରୁତ୍ଥାନ ପାଇଁ ଯେଉଁ ଅସାଧ୍ୟ ସାଧନ କରିଯାଇଛନ୍ତି, ତାହାର ତୁଳନା ନାହିଁ, କଳନା ନାହିଁ ଏବଂ ପଟାନ୍ତର ନାହିଁ । କୋଟି କୋଟି ଜନ କେଶିତପଣିରେ, ତାଙ୍କ ସ୍ମୃତିରେ ମହାମନ୍ଦିର ପାଇଁ ଶତାଧିକ ଭାସ୍କର ନିର୍ମାଣ ହୋଇଥିବ । ସ୍ୱର୍ଗଦ୍ୱାରର ଦ୍ୱାର ସ୍ୱରୂପ ବିବେଚିତ ହେଉଥିବା ପୁରୀର ସ୍ୱର୍ଗଦ୍ୱାର ଯେତେବେଳେ ଭାରତବନ୍ଦିତ ଏହି ପୁରୁଷରତ୍ନଙ୍କର ଶେଷ ଦର୍ଶନ ପାଇଁ ପୁରୀର ବେଳାଭୂମିକୁ, ବିଶ୍ୱବିଖ୍ୟାତ ରଥଯାତ୍ରାଦିନର ଦ୍ୱିତୀୟ ସଂସ୍କରଣରେ ପରିଣତ କରିଦେଇଥିବାର ଅକଳ୍ପନୀୟ ଦୃଶ୍ୟ ଦେଖି ଆଜି ମଧ୍ୟ ସର୍ବଗ୍ରାସୀ ଯମରାଜଙ୍କୁ ତାତ୍ସମ୍ପର୍କ ଆସ୍ୟ ଦେଖାଇ ସ୍ତବ୍ଧ ଓ ଭ୍ରମିତ କରିଦେଇଛି, ସେତିକିବେଳେ ବିଜୁବାବୁଙ୍କର ବନ୍ଦନାର ଅତର୍କିତ ଦୁଇ ବାକ୍ୟପଦ ମଧ୍ୟରେ ତାଙ୍କର ସ୍ତୁତି ତାରଣ ବ୍ୟତୀତ ଅନ୍ୟ କଥନ ଅବା କରାଯାଇପାରିବ ? ଉତ୍କଳମାତା କେତେ ତପସ୍ୟା କରି ନିଜର ସ୍ଥାନ ଜଳନରେ ଆକାଶର କ୍ଷୀଣରେଖା ପ୍ରତିଭକ୍ତ ପାଇଁ, କେଉଁ ମନ୍ତ୍ରରେ ତପସ୍ୟା କରିଥିଲା, ତାହା ମଧ୍ୟ କହିବାର ବିଷୟ ନୁହେଁ । ଯାହାଙ୍କର ଅସୀମ ଦର୍ଶନପାଇଁ ପବିତ୍ର ଶ୍ରୀକ୍ଷେତ୍ର ଦ୍ୱିତୀୟ ରଥଯାତ୍ରାର ଦୃଶ୍ୟ ସୃଷ୍ଟି କରିଥିଲା ଏବଂ ଭିନ୍ନ ଭିନ୍ନିକଣ ଭାରତର ସ୍ୱନାମଧନ୍ୟ ପ୍ରଧାନମନ୍ତ୍ରୀ ପ୍ରମୁଖ ସହରକୁ ଶୋକ-ସନ୍ତପ୍ତ ପ୍ରାଣରେ ଧାବମାନ ହୋଇଥିଲେ, ତାଙ୍କର କେତେଗୋଟି ଗୁଣ ଅବା ଆଜିର ପରିବେଶ ମଧ୍ୟରେ ବର୍ଣ୍ଣନା କରିହେବ ? ଭାଗବତକାର କହିଛନ୍ତି -

"ପ୍ରାଣୀର ଭଲମନ୍ଦ ବାଣୀ ମରଣକାଳେ ତାହା ଜାଣି ।"

ଗତ ସତର ତାରିଖରେ ପ୍ରିୟ ଓ ପୂଜ୍ୟ ବିଜୁବାବୁଙ୍କର ପ୍ରାଣତ୍ୟାଗ ପରେ, ସମଗ୍ର ବିଶ୍ୱ ତାଙ୍କର "ଭଲମନ୍ଦବାଣୀ" ଯେଉଁଭଳି ଭାବରେ ବୁଝିଯାଇଥିଲା, ସେଉଁଭଳି ବୁଝିବାର ଅବକାଶ ଗତ ଅର୍ଦ୍ଧଶତାବ୍ଦୀ ମଧ୍ୟରେ ଏ ଭାରତଭୂମିରେ କେତେଥର ଅନୁଭୂତ ହୋଇଥିବ, ଏ ଦେଶର ଆଲୋକଦୀପ୍ତ ବ୍ୟକ୍ତିମାନେ ନିଜେ ନିଜେ ଚିନ୍ତାକଲେ, ଅନ୍ୟର ବିନା ସାହାଯ୍ୟରେ ଉତ୍ତର ପାଇଥିବେ ।

ଏ ପ୍ରସଙ୍ଗରେ ବିଶ୍ୱବିଖ୍ୟାତ ମହାକବି କାଳିଦାସଙ୍କର ଏକ କିମ୍ବଦନ୍ତୀ ମୂଳକ ଘଟଣା ମନେ ପଡ଼ିଯାଏ । ଯେଉଁ ମହାକାଳୀ ବା ମହାସରସ୍ୱତୀ, ତାଙ୍କୁ ଅନୁପମ କବିତ୍ୱ ଶକ୍ତି ଦେଇଥିଲେ, ସେ ମଧ୍ୟ କବିଙ୍କର କୌଣସି ବର୍ଣ୍ଣନାରେ ଅସନ୍ତୁଷ୍ଟ ହୋଇ, ଅଭିଶାପ ଦେଇଥିଲେ- "ତୁ ସର୍ବତ୍ର ବିଜୟଲାଭ କରିବୁ, କିନ୍ତୁ ବିଶ୍ୱର ଜ୍ଞାନପୀଠ ବାରାଣସୀରେ ପରାଜିତ ହେବୁ ।" କିଛି ଦିନ ପରେ ଜଣେ ତୀର୍ଥଯାତ୍ରୀ ଭାବରେ କାଳିଦାସ "ବିଶ୍ୱନାଥପୀଠ" ବାରଣସୀରେ ପ୍ରବେଶ କଲେ । ସେତେବେଳକୁ ସୂର୍ଯ୍ୟାସ୍ତ ହେଉଥିଲା । ଘଟଣାକ୍ରମେ ଜଣେ ବୃଦ୍ଧାଙ୍କର ଦେଖାହେଲା । ସାମାନ୍ୟ ଆଳାପ ପରେ ନିଜଘରେ ରାତ୍ରିଯାପନ କରିବା ପାଇଁ ବୃଦ୍ଧା ଜଣକ କବିଙ୍କୁ ଅନୁରୋଧ କଲେ । ନିତ୍ୟକର୍ମ ଶେଷକରି କବି ବିଶ୍ରାମ ନେବାକୁ ଯାଉଛନ୍ତି, ସେତିକିବେଳେ ବାଟରେ ଶୁଣାଗଲା, "ରାମ ନାମ ସତ୍ୟହେ" । ବୃଦ୍ଧାଜଣକ କବିଙ୍କୁ କହିଲେ, ଏଇ ଦେଖ, ଜଣଙ୍କର ମୃତ୍ୟୁ ହୋଇଯାଇଛି । ଶବଯାତ୍ରା ଚାଲିଛି । ତୁମେ ଯାଇ ଦେଖିଆସ, ଯେଉଁ ଲୋକଟି ମରିଯାଇଛି, ସେହି ଲୋକଟି ସ୍ୱର୍ଗକୁ ଯାଉଛି କି ଯମପୁରକୁ ଯାଉଛି । ଦେଖାକରି ଆସି ମତେ କହ ।" କାଳିଦାସ ଅବାକ୍ ହୋଇ ଚାହିଁ ରହିଲେ । ବୃଦ୍ଧା ଭାଳିଯାଇ କହିଲେ, "ହଇରେ ମୂର୍ଖ ! ତୁ ଜଣେ ପଣ୍ଡିତ ବୋଲି ମତେ କହିବାରୁ, ତତେ ମୁଁ ଆଶ୍ରୟ ଦେଲି । ତୁ ଏତିକ ବୁଝିପାରିବୁ ନାହିଁ ।" କାଳିଦାସ ଲଜ୍ଜିତ ହୋଇ ପୁଣି ପ୍ରଶ୍ନ କରିବାରୁ, ବୃଦ୍ଧାଜଣକ କହିଲେ- "ଆରେ, ଦଣ୍ଡବଯାଆ, ଦେଖିଆସିବୁ କେତେଜଣ ଲୋକ ଶବପଛରେ ଚାଲିଛନ୍ତି ଏବଂ ମରା ଲୋକଟାର ସପକ୍ଷରେ ସେମାନେ କହୁଛନ୍ତି ନା ବିପକ୍ଷରେ କହୁଛନ୍ତି । ଯଦି ଲୋକଙ୍କ ମୁଖରେ ତାର ପ୍ରଶଂସା ଫୁଟିଉଠୁଛି, ତେବେ ତ ସେ ସ୍ୱର୍ଗକୁ ଯାଉଥିବ । ଏଇ ଛୋଟକଥାଟା ତୁ ବୁଝିପାରିବୁ ନାହିଁ ।"

କହିବାର କଥା, ଆକାଶବାଣୀ ଏବଂ ଦୂରଦର୍ଶନରେ ପୂଜ୍ୟ ବିଜୁବାବୁଙ୍କ ମୃତ୍ୟୁସମ୍ବାଦ ପ୍ରଚାରିତ ହେବାଠାରୁ ଆଜିପର୍ଯ୍ୟନ୍ତ ଯେଉଁସବୁ କଥା ଆମ କାନ ଶୁଣୁଛି ଏବଂ ତାଙ୍କ ଶବଯାତ୍ରାଠାରୁ ତାଙ୍କ ପର୍ଯ୍ୟନ୍ତ ତଥା ତାଙ୍କର ଦଶାହ ଦିବସ ପର୍ଯ୍ୟନ୍ତ ତାଙ୍କର ସମ୍ମାନସୂଚକ ଯାହାସବୁ ଘଟିଯାଉଛି, ତାହା ବିଚାର କଲେ, ବିଜୁବାବୁ କିଏ ଏବଂ କେଉଁ ସେ ସଂପର୍କରେ ଉତ୍ତର ପାଇବା ପାଇଁ ଅନ୍ୟର ସାହାଯ୍ୟ ଦରକାର ହେବ ନାହିଁ ।

ମାଉସୀ ମା ମନ୍ଦିର ନିକଟ
ଭୁବନେଶ୍ୱର । - ୨

VOL. LIII, No. 10 & 11 UTKAL PRASANGA Regd. No. O—BN—05/90
Licence No. C.R.N.P. 5—Licensed to post without Pre-payment



ରାଜଭବନଠାରେ ମହାମହିମ ରାଜ୍ୟପାଳ ଶ୍ରୀ ଗୋପାଳ ରାମାନୁଜମ୍ ଓ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ପ୍ରଧାନମନ୍ତ୍ରୀ ଶ୍ରୀ ଆଇ. କେ. ଗୁଜରାଲଙ୍କ ସହ ଆଲୋଚନା କରୁଛନ୍ତି




ଖୋର୍ଦ୍ଧା ଜିଲ୍ଲାର ବରୁଆଠାରେ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ରିଷଭ ଇଲେକ୍ଟ୍ରିକାଲ୍ସ ଦ୍ୱାରା ପ୍ରତିଷ୍ଠା ହେବାକୁ ଯାଉଥିବା ଆଲୁମିନିୟମ୍ କାରଖାନାର ଭିତ୍ତିପ୍ରସ୍ତର ସ୍ଥାପନ କରୁଛନ୍ତି

